ପ୍ରଫେସର ବାସୁଦେବ ସାହୁ

# ପ୍ରତିଭା ପ୍ରତୀତି



ପ୍ରଫେସର ବାସୁଦେବ ସାହୁ ସ୍ମୃତି ଓ ଗବେଷଣା ପରିଷଦ, ଭୁବନେଶ୍ୱର

ପ୍ରଫେସର ବାସୁଦେବ ସାହୁ

# ପ୍ରତିଭା ଓ ପ୍ରତୀତି


**ପ୍ରଫେସର ବାସୁଦେବ ସାହୁ ସ୍ମୃତି ଓ ଗବେଷଣା ପରିଷଦ**

ଭୁବନେଶ୍ୱର





**ମୂଲ୍ୟ : ଟ ୭୫**

# ଚିହ୍ନ ସମ୍ମାନର : ସ୍ମୃତି ସ୍ୱୀକୃତିର



ବିଷୁବ ପୁରସ୍କାର ଗ୍ରହଣ ୧୯୭୭ (ଶ୍ରେଷ୍ଠ ପ୍ରାବନ୍ଧିକ)



ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଶ୍ରେଷ୍ଠ ଗବେଷକ ପୁରସ୍କାର-୨୦୦୦

# ଚିହ୍ନ ସମ୍ମାନର : ସ୍ମୃତି ସ୍ୱୀକୃତିର



ଅତିବଡ଼ି ଜଗନ୍ନାଥ ସମ୍ମାନ, ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ, ପୁରୀ-୨୦୦୦



ଧାରଳା ସ୍ମାରକ ସମ୍ମାନ-୨୦୦୨



ଯୌବନ : ତାଙ୍କ ପ୍ରଜ୍ଞାପୂର୍ଣ୍ଣ ମୁଖମଣ୍ଡଳର ଉଜ୍ଜ୍ୱଳ ସମ୍ଭାବନା



ଗୌରବର ଦିନ : ଓଡ଼ିଆ ଏମ୍.ଏ.ରେ ପ୍ରଥମ ଶ୍ରେଣୀରେ ପ୍ରଥମ । ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ୱର୍ଣ୍ଣପଦକ ପାଇବା ଅବସରରେ ।



ପିତା, ମାତା ଓ ଭଗ୍ନୀ ସହ ପ୍ରଫେସର ସାହୁ



ଏକଇ ବୃକ୍ଷେ ପକ୍ଷୀ ଦୁଇ : ପତ୍ନୀ ସତ୍ୟଶାନ୍ତିଙ୍କ ସହ ପ୍ର. ସାହୁ



ଧ୍ୟାନସ୍ଥ ତପସ୍ୱୀ : ତାଙ୍କ ପଢ଼ାଘରର ଦୃଶ୍ୟ



ବାଗ୍ମୀ ବାସୁଦେବ : ସଭାମଞ୍ଚରେ ମଗ୍ନ ମୁହୂର୍ତ୍ତ



ସବୁଠି ଆଗରେ : ଗ୍ରାମବାସୀଙ୍କୁ ନେଇ ନିଜ ଗାଁ ମାଟିରେ
ପୋଖରୀ ଖୋଳା ଅଭିଯାନ



ପ୍ରିୟ ପରିବାର : ମଝିରେ ମଉଡ଼ମଣି



ବରଗଛ ଓହଳ ସବୁ : ନାତିନାତୁଣୀମାନଙ୍କ ଗହଣରେ ଡଃ ସାହୁ



ଅବସର ବାସରେ :
ପ୍ରାତଃ ଭ୍ରମଣର ମଜ୍ଜା



ପତ୍ନୀ, ପୁତ୍ର, ବଧୂ ଓ ନାତି ସାତ୍ତ୍ୱିକ ସହ ଡଃ ସାହୁ



ପ୍ରଲୟିତ ଆତ୍ମା : କୋଳରେ ନାତି ସାତ୍ତ୍ୱିକ ପାର୍ଶ୍ୱରେ ନାତୁଣୀ ସୁପୁନ୍

ପ୍ରଫେସର ବାସୁଦେବ ସାହୁ
ଅଭିନନ୍ଦନ ପରିଷଦ ଦ୍ୱାରା
ପ୍ରକାଶିତ ଗ୍ରନ୍ଥ









କାଳଜୟୀ କାଳୀଚରଣ





ପ୍ରକଳ୍ପ ପ୍ରବନ୍ଧାବଳୀ

(୧)

(ଭାଷା : ଭାଷାତତ୍ତ୍ୱ, ସାହିତ୍ୟ : ସାହିତ୍ୟତତ୍ତ୍ୱ)

ସଂପାଦନା :
ପ୍ରଫେସର ଡକ୍ଟର ବାସୁଦେବ ସାହୁ




ବିଶ୍ୱବିଦ୍ୟାଳୟ ଆୟୋଗ
ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

ଜଗନ୍ନାଥ ଚେତନାର
ଉଦ୍ଭବ ଓ ବିକାଶ





ଡକ୍ଟର ବାସୁଦେବ ସାହୁ

ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ

ଡକ୍ଟର ବାସୁଦେବ ସାହୁ

ଭାଷା ବିଜ୍ଞାନ ଓ ଭାଷା ବିଜ୍ଞାନୀ

ଡକ୍ଟର ବାସୁଦେବ ସାହୁ

ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ଭାଷାବିଜ୍ଞାନର ରୂପରେଖ



ଡକ୍ଟର ବାସୁଦେବ ସାହୁ

ପୃଥିବୀର ଭାଷା ପରିବାର ପରିଚୟ ଓ ପରିସର

ଡକ୍ଟର ବାସୁଦେବ ସାହୁ



# ସଂପାଦକୀୟ....

ସୁଖ ସୌଭାଗ୍ୟର ସୌଦାଗରୀ ବିଳାସରେ ଜୀବନକୁ ହଜାଇ ଦେଉଥିବା ଲୋକ ଯେ କାଳଗର୍ଭରେ ନିଜେ ହଜିଯାଆନ୍ତି, ତାହା ନିଃସନ୍ଦେହ । ଅପର ପକ୍ଷରେ ଦକ୍ଷତା ଓ ପ୍ରତିଭାର ପ୍ରତୁଳ ବିନିଯୋଗ ପୂର୍ବକ ଯେଉଁମାନେ ପୁରୁଷାର୍ଥକୁ ପ୍ରତିଷ୍ଠିତ କରିଥାନ୍ତି, ସେମାନେ କାଳଜୟୀ ପାଲଟି ଯାଆନ୍ତି । ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଶାରୀରିକ ଯାତ୍ରା ଶେଷ ହେଉଥିଲେ ମଧ୍ୟ ସେମାନଙ୍କ ଅଶରୀରୀ କାୟା ଯୁଗପଦ୍ ଜୀବନ୍ତ ହୋଇଥାଏ । ସେହିସବୁ ଯୁଗଜନ୍ମାମାନଙ୍କ ସାଧନାଦୀପ୍ତ ତୋରଣ ଦେଇ ଯାତାୟାତ କଲାବେଳେ ଉତ୍ତରପୀଢ଼ି ବାରମ୍ବାର ସେମାନଙ୍କୁ ସ୍ମରଣ କରି ଅଧିକରୁ ଅଧିକ ଶକ୍ତିଶାଳୀ ହୋଇଥାଏ । ଏଭଳି ଜଣେ ସ୍ମରଣଯୋଗ୍ୟ ଓ ପ୍ରେରଣାପ୍ରଦ ବ୍ୟକ୍ତିତ୍ୱ ହେଉଛନ୍ତି ପ୍ରଫେସର ବାସୁଦେବ ସାହୁ ।

ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାର ଓ ପ୍ରତିଷ୍ଠା ପାଇଁ ଉତ୍ସର୍ଗୀକୃତ ପ୍ରଫେସରମାନଙ୍କ ମଧ୍ୟରେ ବାସୁଦେବ ସାହୁ ଜଣେ ଅନନ୍ୟ ବ୍ୟକ୍ତିତ୍ୱ । ଛାତ୍ରବତ୍ସଳ ଅଧ୍ୟାପକ, ପ୍ରଭାବଶାଳୀ ବାଗ୍ମୀ, ଗରୀୟାନ୍ ଗବେଷକ, ଦକ୍ଷ ଦିଗ୍‌ଦର୍ଶକ, ପ୍ରତିଷ୍ଠିତ ଭାଷାତତ୍ତ୍ୱବିତ୍, ସୁହୃଦ୍ ସମୀକ୍ଷକ, ସଂଗ୍ରହପ୍ରିୟ ସଂକଳକ, ସୁଦକ୍ଷ ସମ୍ପାଦକ, ଜଗନ୍ନାଥ ସଂସ୍କୃତିର ଉପାସକ ସର୍ବୋପରି ଜଣେ ସମ୍ବେଦନଶୀଳ ସ୍ରଷ୍ଟା ଭାବରେ ନିଜକୁ ଅବତୀର୍ଣ୍ଣ କରାଇବାରେ ପ୍ରଫେସର ସାହୁ ଯେଉଁ ବହୁମୁଖିତା ପ୍ରକାଶ କରିଛନ୍ତି, ତାହା ତାଙ୍କ ପରିବ୍ୟାପ୍ତ ସାଧନାର ଫଳଶ୍ରୁତି ମାତ୍ର । ସ୍ୱର୍ଗତ ସାହୁଙ୍କ ପ୍ରଥମ ଶ୍ରାଦ୍ଧୋତ୍ସବ ପାଳନ ଅବସରରେ ପ୍ରକାଶ ପାଉଥିବା ଏହି ସ୍ମରଣିକାଟିରେ ତାଙ୍କ ବୈଚିତ୍ର୍ୟବିମଣ୍ଡିତ ବ୍ୟକ୍ତିତ୍ୱର ବର୍ଣ୍ଣାଳି ଅବଶ୍ୟ ଅବଧାରଣୀୟ ।

ପୂଜ୍ୟପୂଜା ସୂତ୍ରରେ ପ୍ରଫେସର ବାସୁଦେବ ସାହୁଙ୍କ ଉପରେ ଏହା ଚତୁର୍ଥ ଗ୍ରନ୍ଥ । ଗତବର୍ଷ ତାଙ୍କ ତିରୋଧାନରେ ଏକାଦଶାହ ଉପଲକ୍ଷେ 'ବିଦାୟ ବରେଣ୍ୟ' ନାମକ ପୁସ୍ତକ ପ୍ରକାଶ ପାଇଥିଲା । ଏ ଉଭୟ ପୁସ୍ତକ ପ୍ରଫେସର ବାସୁଦେବ ସାହୁ ସ୍ମୃତି ଓ ଗବେଷଣା ପରିଷଦ, ଭୁବନେଶ୍ୱର ଆନୁକୂଲ୍ୟରେ ପ୍ରକାଶିତ । ତତ୍‌ପୂର୍ବରୁ କର୍ମମୟ ଜୀବନରୁ ଅବସର ଗ୍ରହଣ ପରେ ତାଙ୍କ ଷଷ୍ଟିପୂର୍ତ୍ତି ଉପଲକ୍ଷେ ଦୁଇଟି ଗ୍ରନ୍ଥ

'ପ୍ରଜ୍ଞାଲୋକ' ଓ 'ପ୍ରଜ୍ଞାପ୍ରବ୍ରଜ୍ୟା' ପ୍ରଫେସର ବାସୁଦେବ ସାହୁ ଅଭିନନ୍ଦନ ପରିଷଦ କର୍ତ୍ତୃକ ସଂପାଦିତ ହୋଇ ପାଠକୀୟ ପ୍ରୀତି ଲାଭ କରିଛି । ଏଠାରେ ସୂଚାଇଦେବା ଉଚିତ ହେବ, ଅଭିନନ୍ଦନ ପରିଷଦ ପ୍ରଫେସର ସାହୁଙ୍କ ସ୍ୱର୍ଗବାସ ପରେ 'ସ୍ମୃତି ପରିଷଦ' ରୂପେ ନାମିତ ହୋଇ ବାସୁଦେବ-ପ୍ରତିଭା ପୂଜାର ଦାୟିତ୍ୱ ନିର୍ବାହରେ ସଂକଳ୍ପବଦ୍ଧ ।

ସ୍ମରଣିକା ପ୍ରକାଶନ ସହିତ ଏହି ପ୍ରଥମ ବାର୍ଷିକ ଶ୍ରାଦ୍ଧୋତ୍ସବ ପାଳନ ପରିପ୍ରେକ୍ଷୀରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ତାଙ୍କର ତୈଳଚିତ୍ର ଉନ୍ମୋଚିତ ହେଉଅଛି । ଓଡ଼ିଶାର ଜ୍ଞାନୀ, ଗୁଣୀ ଓ ସାରସ୍ୱତ ପ୍ରତିଭାମାନଙ୍କର ସ୍ମୃତିମଞ୍ଚରେ ପ୍ରଫେସର ସାହୁଙ୍କ ତୈଳଚିତ୍ରଟିଏ ପରିଶୋଭିତ ହେବାରେ ଉତ୍କଳ ସାହିତ୍ୟ ସମାଜ ଅକୁଣ୍ଠ ସହଯୋଗ ପ୍ରଦାନ କରିଥିବାରୁ ଏହାର ସମସ୍ତ ସଭ୍ୟ ଓ କର୍ମକର୍ତ୍ତାଙ୍କ ନିକଟରେ ବିଶେଷ କରି ସଭାପତି ଓ ସମ୍ପାଦକ ମହୋଦୟଙ୍କ ନିକଟରେ ସ୍ମୃତି ଓ ଗବେଷଣା ପରିଷଦ ବିଶେଷ ଋଣୀ ।

ଉକ୍ତ ସ୍ମରଣିକାଟି ଯଥା ସମୟରେ ପ୍ରକାଶିତ ହେବାରେ କଟକ ବିଜୟିନୀ ପବ୍ଲିକେଶନ୍ସର ସତ୍ତ୍ୱାଧିକାରୀ ଯଥେଷ୍ଟ ଶ୍ରମ ସ୍ୱୀକାର କରିଥିବାରୁ ପରିଷଦ ତାଙ୍କୁ ଧନ୍ୟବାଦ ଜଣାଉଛି । ପ୍ରଫେସର ସାହୁଙ୍କ ବହୁ ବନ୍ଧୁ, ସୁହୃଦ, ଛାତ୍ର-ଅଧ୍ୟାପକ-ଗବେଷକ, ବିଦ୍ୱାନ ତାଙ୍କ ସମ୍ପର୍କରେ ଏବଂ ତାଙ୍କ ସାରସ୍ୱତ ସୃଷ୍ଟି ସମ୍ପର୍କରେ ସ୍ୱକୀୟ ମତାମତ ଦେଇ ସ୍ମରଣିକାଟିର କଳେବର ମଣ୍ଡନ କରିଥିବାରୁ ସେ ସମସ୍ତେ ପ୍ରଶଂସାର୍ହ ।

ଓଡ଼ିଆ ବାଣୀପୀଠର ଅନ୍ୟତମ ପ୍ରଜ୍ଞାପୁରୁଷ ପ୍ରଫେସର ସାହୁଙ୍କ ବ୍ୟକ୍ତିତ୍ୱ ଆକଳନରେ ଏ ଗ୍ରନ୍ଥ ଅନେକ ମାତ୍ରାରେ ସହାୟକ ହେବ ବୋଲି ଆମର ଆଶା ଓ ବିଶ୍ୱାସ ।

**-ସମ୍ପାଦକ ମଣ୍ଡଳୀ**

# ସୂଚୀ

## ପ୍ରତିଭା

## ପ୍ରତୀତି

# ପ୍ରତିଭା

## ଡଃ ବାସୁଦେବ ସାହୁଙ୍କ ପ୍ରତିଭାର ଇନ୍ଦ୍ରଧନୁ

ଡଃ ରାଧାଶ୍ୟାମ ବେହୁରା

ଓଡ଼ିଆ ଭାଷା ଓ ସାହିତ୍ୟ ଜଗତରେ ଡଃ ବାସୁଦେବ ସାହୁ ଏକ ଶ୍ରଦ୍ଧାସ୍ପଦ ଉଚ୍ଚାରଣ । ତାଙ୍କ ବିରାଟ ବ୍ୟକ୍ତିତ୍ୱର ଝଲକ ତାଙ୍କ କର୍ମତତ୍ପର ଜୀବନ କ୍ଷେତ୍ରକୁ କରିଥିଲା ବହୁ ରଂଗରେ ରଂଗାୟିତ । ତାଙ୍କ ଲେଖନୀ ଥିଲା ବହୁମୁଖୀ ଓ ବହୁଦିଗ ସ୍ପର୍ଶୀ । ଦୁଃଖର ପାହାଡ଼ ଚଢ଼ି ସେ ସୌଭାଗ୍ୟସୂର୍ଯ୍ୟର ସ୍ପର୍ଶ ଅନୁଭବ କରିଥିଲେ । ସେ କେବେହେଲେ ଦୁଃଖରେ ମ୍ରିୟମାଣ ହୋଇ ନାହାନ୍ତି କି ସୁଖରେ ଆତ୍ମହରା ହୋଇନାହାନ୍ତି । ଜୀବନକୁ ମୁକାବିଲା କରି ବଞ୍ଚିବାର ଶୈଳୀ ତାଙ୍କୁ ବେଶ୍ ଜଣା ଥିଲା । ଜୀବନ ଯାତ୍ରପଥରେ ସେ ଥିଲେ ଏକ ନିଃସଂଗ ସୈନିକ । ଏକାଗ୍ର ଚିତ୍ତରେ କର୍ମ କରିବା ଥିଲା ତାଙ୍କ ଜୀବନର ଏକମାତ୍ର ଦେବପୂଜା । ଯେଉଁଥିପାଇଁ ଓଡ଼ିଆ ଅଧ୍ୟାପନା, ଗବେଷଣା ଓ ସଂପାଦନ କ୍ଷେତ୍ରରେ ଅଜସ୍ର ସିଦ୍ଧିର ସେ ହୋଇଛନ୍ତି ଅଧିକାରୀ । ତାଙ୍କର ଅମୃତନିଃସ୍ୟନ୍ଦିନୀବାଗ୍ମିତା, ମହାନ୍ ଆଦର୍ଶ, ବଳିଷ୍ଠ ବ୍ୟକ୍ତିତ୍ୱ, ଅଭୂତପୂର୍ବ କର୍ମନିଷ୍ଠା, ଅସାଧାରଣ ସଂଗଠନଶକ୍ତି, ଏକନିଷ୍ଠ ସାଧନା, ଦାର୍ଶନିକ ଚିନ୍ତାଧାର, ଅମାୟିକ ସ୍ୱଭାବ ଓ ସଦାଚାର ଥିଲା ତାଙ୍କ ବ୍ୟକ୍ତିତ୍ୱର ବଳିଷ୍ଠ ସ୍ୱର । ତାଙ୍କର ଅସାଧାରଣ ପ୍ରତିଭା, ଉଚ୍ଚକୋଟୀର ଭାଷାବିଜ୍ଞାନ-ଶିକ୍ଷାଦାନ ଶୈଳୀ ଓ ଅବୋଧ୍ୟକୁ ବୋଧଗମ୍ୟ କରିବାର ପଟୁତା ତାଙ୍କୁ ଆଣିଦେଇଛି ଚରମ ସଫଳତା'। ଦୀର୍ଘଦିନର ଶିକ୍ଷାଦାନ ଭିତରେ ନିଜକୁ ତିଳତିଳ କରି ଜାଳି ଜ୍ଞାନର ଆଲୋକରେ ଅନ୍ୟମାନଙ୍କୁ ଆଲୋକିତ କରିବାରେ ତାଙ୍କର ସିଦ୍ଧି ଓ ସାଧନା ପ୍ରଣିଧାନ ଯୋଗ୍ୟ ବାସ୍ତବିକ ସେ ଥିଲେ ଓଡ଼ିଆ ଭାଷା ଓ ସାହିତ୍ୟର 'ଶିକ୍ଷା ଓ ଶିକ୍ଷକତା' ପାଇଁ ଏକ ଉତ୍ସର୍ଗୀକୃତ ଜୀବନ । ଆଦର୍ଶ ଓ ମୂଲ୍ୟବୋଧର ଅବକ୍ଷୟ କାଳରେ 'ଶିକ୍ଷା ଓ ଶିକ୍ଷକତା', 'ଗୁରୁ ଓ ଛାତ୍ରାନୁରାଗ' ଉଭୟକୁ ନିଜ ଚରିତ୍ରରେ ଏକୀଭୂତ କରିଥିବା ମହାନ୍ ବିଦ୍ୱାନ ଡଃ ସାହୁଙ୍କର ବ୍ୟକ୍ତିତ୍ୱର ଥିଲା ଏକ ଅପୂର୍ବ ଝଲକ ।

ଡକ୍ଟର ସାହୁ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ନିଜ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । କବିତା, ଏକାଙ୍କିକା, ପ୍ରବଂଧ, କ୍ଷୁଦ୍ରଗଳ୍ପ, ସମାଲୋଚନା ଓ ଭାଷା ବିଜ୍ଞାନ ତାତ୍ତ୍ୱିକ ବିଶ୍ଳେଷଣରେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଛନ୍ତି । କବିତା ଲେଖାରୁ ତାଙ୍କ ସାହିତ୍ୟିକ ଜୀବନର ହୋଇଥିଲା ଅୟମାରମ୍ଭ । ମାଧମିକ ଶିକ୍ଷାଅର୍ଜନ

କାଳରେ ହିଁ ତାଙ୍କ କମନୀୟ କବିତ୍ୱର ସ୍ଫୁରଣ ଘଟିଥିଲା । ବାସ୍ତବିକ୍ ଡକ୍ଟର ସାହୁ ପ୍ରଥମତଃ କବି । ତରୁଣ ଜୀବନରେ କବିତା ପ୍ରତି ଥିଲା ଗଭୀର ଶ୍ରଦ୍ଧା । ତେଣୁ ମାନବୀୟ ଆବେଗରେ ତାଡ଼ିତ ହୋଇ ସେ ରଚନା କରିଛନ୍ତି ଅନେକ କବିତା ଓ ସେଥିମଧ୍ୟରୁ କେତେକ କବିତାକୁ ଏକତ୍ର କରି ସଂକଳନଟିଏ (ସଂବିତ୍) ପ୍ରକାଶ କରିଛନ୍ତି । କବିଙ୍କ ନିଜ ଭାଷାରେ-'ମୋ କବିତା ସୃଷ୍ଟି ବିଭିନ୍ନ କାଳରେ, ବିଭିନ୍ନ ସ୍ଥାନରେ, ବିଭିନ୍ନ ପରିସ୍ଥିତିରେ । ବ୍ୟକ୍ତିଗତ ଜୀବନରେ କେତେ ବେଦନା ଅଥବା ଆନନ୍ଦର ମୁହୂର୍ତ୍ତ ମୋ ପାଇଁ ସ୍ମୃତିମନ୍ତ ହୋଇଉଠିଛି । କେତେ ବେଦନାର କେତେ ଆଶ୍ୱାସନାର ସ୍ୱର ପ୍ରାଣରେ ଧ୍ୱନିତ ହୋଇଛି । ତେଣୁ ମୋର କବିତା ଭିତରୁ କେତେକ ଦୁଃଖବାଦୀ ଓ କେତେକ ରୋମାଣ୍ଟିକ୍ ଓ ଆଦର୍ଶଧର୍ମୀ ।' (ସଂବିତ୍/ ମୋ କବିତା ସୃଷ୍ଟିର ପ୍ରେରଣା ଓ ପୃଷ୍ଠଭୂମି/ପୃ-୨୪)

ପ୍ରାଚୀନ କାଳର ଆର୍ଯ୍ୟଋଷିଙ୍କ ପରି କବି ପ୍ରଥମରୁ ହିଁ ନିଜର ପରିଚୟ ଖୋଜି ସୃଷ୍ଟି ରହିସ୍ୟର ଦୁରୂହ ପୃଷ୍ଠାମାନ ଉନ୍ମୋଚନ କରିବାର ଆନ୍ତରିକ ପ୍ରୟାସ କରିଛନ୍ତି । ସୃଷ୍ଟିର ପ୍ରତ୍ୟେକ ବିମୁଗ୍ଧ ଉପଲବ୍ଧି ମଧ୍ୟରେ କବି ବିଶ୍ୱସ୍ରଷ୍ଟାର ଅନନ୍ୟ ଉପସ୍ଥିତିର ଆବେଗାନ୍ୱିତ ସତ୍ୟ ସନ୍ଦର୍ଶନ କରିଛନ୍ତି ।

'ତୁମେନା ସେ ଛାଇ ପ୍ରଭୁ ! ସେଇ ଧ୍ୱନି ସେଇ ନଈ
ନିଖିଳର ରୂପରୂପାନ୍ତର ?
ନିଜକୁ ବିଦୀର୍ଣ୍ଣ କରି ସିଂଧୁ ତୁମେ ବିନ୍ଦୁତ୍ୱରେ ଦେଇଛ ଅନ୍ୱୟ
('ସଂବିତ'-ଆତ୍ମରତି/ ପୃ୮)

ତାଙ୍କ କବିତାରେ ଆବେଗ ଅଛି, ସେହି ଆବେଗ ମଣିଷକୁ ଭଲ ପାଇବାର ଆବେଗ, ବେଳେବେଳେ ତା' ମଧ୍ୟକୁ ପଶିଆସିଛି ନୀତିନିଷ୍ଠବ୍ୟକ୍ତି ସତ୍ତାଟିଏ ଯାହାର ଅଦୃଶ୍ୟ ନିୟନ୍ତ୍ରଣ ଚାବୁକ ଉଠିଛି । ଏହିଥିରୁ ଡକ୍ଟର ସାହୁଙ୍କର ସମାଲୋଚକର ବ୍ୟକ୍ତିତ୍ୱକୁ ସହଜରେ ଉପଲବ୍ଧି କରିହୁଏ ।

ଡକ୍ଟର ସାହୁଙ୍କ ଲିଖିତ 'ସାହିତ୍ୟିକ ଦିଗ୍‌ଦର୍ଶନ' ଆଲୋଚନା ପୁସ୍ତକଟିଏ ସାଂସ୍କୃତିକ ସମାଲୋଚନାର ଭିତ୍ତିଭୂମି ଉପରେ ଆଧାରିତ। ଏହି ପୁସ୍ତକରେ ସନ୍ନିବେଶିତ ହୋଇଥିବା ବହୁ ଆଲୋଚନା ଓ ପ୍ରବଂଧ ଗୁଡ଼ିକରେ ତାଙ୍କର ତାତ୍ତ୍ୱିକ ଆଲୋଚନା ତାଙ୍କ ମନନଶୀଳତାର ପରିଚୟ ପ୍ରଦାନ କରିଥାଏ । 'ବୌଦ୍ଧିଚର୍ଯ୍ୟାଗୀତି ଏକ ବିହଙ୍ଗମ ଦୃଷ୍ଟି' ପ୍ରବଂଧରେ ଓଡ଼ିଶାର ତଥା ପୂର୍ବ ଭାରତର ବୌଦ୍ଧ ମତକୁ ବିଶ୍ଳେଷଣ କରି ସେ ସିଦ୍ଧାଚାର୍ଯ୍ୟମାନଙ୍କର ଧର୍ମଧାରଣା, ପ୍ରେମ କାରୁଣ୍ୟ ଓ ଆନନ୍ଦ ବିଷାଦକୁ ଦର୍ଶାଇଦେଇଛନ୍ତି । ସେ କୁହନ୍ତି-''ଅବିଦ୍ୟା ଜଡ଼ିତ ସମାଜରୁ ମୁକ୍ତ ହୋଇ ଏକ ପ୍ରଜ୍ଞା ଭାସ୍ୱର ଆଧାତ୍ମିକ ଜଗତରେ ଘୂରିବା ଥିଲା ସିଦ୍ଧାଚାର୍ଯ୍ୟ ମାନଙ୍କ ଜୀବନର ଅଭିଳଷିତ ଲକ୍ଷ୍ୟ । ତଥାପି ସେମାନେ ଅସାମାଜିକ ଜଗତରେ ଘୂରିବୁଲିଥିଲେ

ମଧ୍ୟ ପାଦ ଦୁଇଟି ଥିଲା ଏଇ ଜଗତରେ । (ଡଃ ସାହୁ-ପୃ- ୧୩୬) । ଏହି ଆଲୋଚନାରେ ସେ ବୌଦ୍ଧ ଆଧାତ୍ମିକ ଦର୍ଶନ ଓ ସହଜ-ସୁଖ ଇତ୍ୟାଦିକୁ ବ୍ୟକ୍ତ କରିବା ସହ ସିଦ୍ଧ ମାନଙ୍କ ଜୀବନ ଚର୍ଯ୍ୟା ମଧ୍ୟଦେଇ ଦାମ୍ପତ୍ୟ ଜୀବନ, ବିବାହ, ଖାଦ୍ୟପେୟ, ବେଶଭୂଷା, କାର୍ଯ୍ୟକ୍ରମ, ସାମାଜିକ ରୀତିନୀତି ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ସୃଷ୍ଟି ଘଟିଛି ତାହା ମଧ୍ୟ ଦର୍ଶାଇଛନ୍ତି ।

ଚର୍ଯ୍ୟାଗୀତିକା ପରେ ସେ ଆଲୋଚନା କରିଛନ୍ତି ସାରଳା ମହାଭାରତ ସଂପର୍କରେ । ସାରଳା ମହାଭାରତର ବିଭିନ୍ନ ଶବ୍ଦ ପ୍ରୟୋଗ ଓ ବିଚାରକୁ ନେଇ ସେ କାଳର ଓଡ଼ିଶାର ଓ ଭାରତର ନାମକୁ ଏପରି ବ୍ୟାଖ୍ୟା କରିଛନ୍ତି ତାହା ତାଙ୍କ ଭାଷାତାତ୍ତ୍ୱିକ ସମାଲୋଚନା ଦୃଷ୍ଟିଭଂଗୀର ପରିଚୟ ପ୍ରଦାନ କରେ । ମହାଭାରତ ଆଲୋଚନା ପରେ ପଞ୍ଚସଖାଙ୍କ ସାହିତ୍ୟ କୃତି ସଂପର୍କରେ ଦୃଷ୍ଟିନିବନ୍ଧ କରି ଏକ ଯୁକ୍ତିଯୁକ୍ତ ବଳିଷ୍ଠ ବିଚାର ଧାରାର ଆଶ୍ରୟ ନେଇ ସୃଷ୍ଟି କରିଛନ୍ତି ପଞ୍ଚସଖା ସାହିତ୍ୟ ସମୀକ୍ଷା । ଓଡ଼ିଶାର ଧାର୍ମିକ ଓ ସାଂସ୍କୃତିକ ପ୍ରାଣ ସ୍ପନ୍ଦନ ସହିତ ପଞ୍ଚସଖା ସାହିତ୍ୟର ଗଭୀର ସମ୍ବନ୍ଧକୁ ଦର୍ଶାଇଛନ୍ତି ସେ । ଏଥିସହ ସେହି ସିଦ୍ଧ ସାଧକଙ୍କ ସାଧନାର ଉତ୍କଳରେ ଏକ ସୁଦୃଢ଼ ପରଂପରା ସୃଷ୍ଟି ଘଟିଥିଲା ତାହା ଉପରେ ଆଲୋକପାତ କରିଛନ୍ତି । ପଞ୍ଚସଖା ଏକସମୟର ନୁହନ୍ତି ଓ ସେମାନେ ସଖାହୀନ ବୋଲି ଯେତେ କହାଯାଉଥିଲେ ମଧ୍ୟ ସେମାନଙ୍କୁ ଏକ ଧର୍ମବୃକ୍ଷର ପଞ୍ଚସଖା ଭାବରେ ଗ୍ରହଣ କରି ଆତ୍ମାରେ ସେମାନଙ୍କର ପଞ୍ଚସଖାତ୍ୱକୁ ଉଲ୍ଲେଖ କରିଅଛନ୍ତି । ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ସାହିତ୍ୟ କୃତି ଗୁଡ଼ିକୁ ନିଜସ୍ୱ ଦୃଷ୍ଟିରୁ ସେ ବିଚାର କରିଛନ୍ତି ।

'ଓଡ଼ିଆ କାବ୍ୟକଳାରେ ଭଂଜୀୟ ମୁଦ୍ରାଙ୍କନ' ପ୍ରବଂଧରେ ଭଞ୍ଜଙ୍କ ଅତିନ୍ଦ୍ରୀୟ ଚେତନା ସଂପର୍କରେ ଭଞ୍ଜଙ୍କ କାବ୍ୟ କବିତାର ଦୃଷ୍ଟାନ୍ତ ଦେଇ ତାଙ୍କ ଭିତରେ ଥିବା ଜାତୀୟ ଓ ସାଂସ୍କୃତିକ ପ୍ରାଣ ତାକୁ ଭାସ୍ୱର କରିଥିବା ଜଣାଯାଏ । ତାଙ୍କ ମତରେ-''ଯେଉଁ ଭାବମୂର୍ତ୍ତି ଦେଶକାଳ ଓ ପାତ୍ର ଦ୍ୱାରା କ୍ଷୁର୍ଣ୍ଣ ଖଣ୍ଡିତ ହୁଏ ନାହିଁ, ଯେଉଁ ଭାବମୂର୍ତ୍ତି ସମସ୍ତ ମାନବ ପ୍ରାଣକୁ ସମାନ ଭାବରେ ଆଲୋଡ଼ିତ କରେ, ତାହାକୁ କାବ୍ୟରେ ଉପଜୀବ୍ୟ କରି କବି ଉପେନ୍ଦ୍ର ଭଞ୍ଜ ଅନନ୍ୟ ଅରୁଣିମାରେ ଉର୍ଦ୍ଧ୍ୱସୂଳ ଓ ଅତିନ୍ଦ୍ରୀୟ କରି ତୋଳିଛନ୍ତି । ଅତିନ୍ଦ୍ରୀୟର ଚରମ ଚୂଡ଼ାରେ ପହଞ୍ଚିବା ପାଇଁ ଇନ୍ଦ୍ରୀୟ ହୋଇଛି ମଧ୍ୟବର୍ତ୍ତୀ ସୋପାନ । ମାତ୍ର ଏ ସୋପାନ ତାଙ୍କ ସାହିତ୍ୟର ସର୍ବସ୍ୱ ନୁହେଁ- ତୁରାୟାତୀତ ପରମ ପୁରୁଷାର୍ଥ ଭଞ୍ଜଙ୍କ 'ବ୍ରଜନାଥ ବଡ଼ଜେନାଙ୍କ ସାହିତ୍ୟରେ ହାସ୍ୟରସ', ଗଂଗାଧର ସାହିତ୍ୟରେ 'ପ୍ରାଚ୍ୟ ସାହିତ୍ୟର ପରମ୍ପରା' ଫକୀରମୋହନଙ୍କ ଉପନ୍ୟାସ ଶୈଳୀ, 'ଦିବ୍ୟଦର୍ଶୀ ମଧୁସୂଦନ' ଆଦି ଆଲୋଚନାରେ ଡଃ ସାହୁଙ୍କର ମୌଳିକ ଦୃଷ୍ଟିଭଂଗୀର ପରିଚୟ ଉପଲବ୍ଧ ହୋଇଥାଏ । ଏଥିରେ ଫୁଟିଉଠିଛି ଡଃ ସାହୁଙ୍କ ଅଭିନବ ଦୃଷ୍ଟିଦିଗନ୍ତର ଅନନ୍ୟ ସ୍ୱାକ୍ଷର । ସବୁ ଆଲୋଚନା ଧାରାରେ ପାଠକ ଉପଲବ୍ଧି କରେ ଏକ ବିକାଶମୁଖୀ ପ୍ରତିଭାର ବିମଳ ବର୍ଣ୍ଣ ।

'ଓଡ଼ିଆ ସାହିତ୍ୟର ସୃଷ୍ଟି ସଂପଦ' ତାଙ୍କର ଅନ୍ୟଏକ ସମାଲୋଚନା ଗ୍ରନ୍ଥ । ଏଥିରେ ବତ୍ସା ଦାସଙ୍କ 'କଳସା ଚଉତିଶା'ର କଳା ଓ କାଳର କଳନା କରାଯାଇଅଛି । କଳସା ଚଉତିଶା ଏକ କ୍ଷୁଦ୍ରରଚନା ହେଲେ ମଧ ତାହା ଓଡ଼ିଆ ସାହିତ୍ୟର ଏକ କ୍ଷେପଣୀୟ ଜାତୀୟ ସଂପଦ ବୋଲି ଡଃ ସାହୁ ମତ ଦେଇ ତାଙ୍କ ସାଂସ୍କୃତିକ ଦୃଷ୍ଟିଦିଗନ୍ତକୁ ପ୍ରସାରିତ କରିଦେଇଅଛନ୍ତି । 'ଓଡ଼ିଆ କବିମାନସରେ ବସନ୍ତ' ପ୍ରବଂଧରେ ଡଃ ସାହୁ ବସନ୍ତ କିପରି ଏକ ଚେତନା ଏକ ସଂଜୀବନୀ ଶକ୍ତି ତାହାକୁ ସେ ଖୁବ୍ ଚମତ୍କାର ଭାବେ ଆଲୋଚନା କରିଛନ୍ତି । ସେ କୁହନ୍ତି ଯେ-''ବସନ୍ତ ଅରୂପ କିନ୍ତୁ ଅନନ୍ତରୂପରେ ତାର ରୂପାୟନ, ବସନ୍ତ ଅନଙ୍ଗ କିନ୍ତୁ ଅନଙ୍ଗରେ ତାର ଜୀବନ୍ୟାସ ଓ ଅଙ୍ଗୀକାର । ବହୁରୂପ ଭିତରେ ଏକ ଅରୂପର ଦର୍ଶନ ହେଉଛି ଭୂୟୋଦର୍ଶନ । ବସନ୍ତର ଏହି ବହୁବାହ୍ୟ ସୌନ୍ଦର୍ଯ୍ୟ ଅନ୍ତରାଳରେ ଏକ ଏକକ ଅନ୍ତ ସୌନ୍ଦର୍ଯ୍ୟର ସଂଧାନରେ ହିଁ ପ୍ରକୃତ ବସନ୍ତର ସମ୍ଭୋଗ ସଂଭବ ହେବ ।'' (ଡଃ ସାହୁ ପୃ-୩୭)

ଏପରି ବିଶ୍ଳେଷଣ ଏକାନ୍ତ ହୃଦ୍ୟ, ଏହା ସମାଲୋଚନା ସାହିତ୍ୟରେ ସର୍ଜନଶୀଳ ସ୍ରଷ୍ଟା ହୃଦୟର ରସାଳ ଅଭିବ୍ୟକ୍ତି । ସଚ୍ଚି ରାଉତରାୟଙ୍କ 'ପାଣ୍ଡୁଲିପି' ଗ୍ରନ୍ଥ ଉପରେ ତାଙ୍କ ମନୋଜ୍ଞ ସମୀକ୍ଷା ତାଙ୍କ ସାଂସ୍କୃତିକ ଅଭିପ୍ସାର ଅନ୍ୟଏକ ପରିଚୟ । ଏତଦ୍‌ବ୍ୟତୀତ ଏହି ସମୀକ୍ଷା ଗ୍ରନ୍ଥ 'ଓଡ଼ିଆ ସାହିତ୍ୟର ସୃଷ୍ଟି ସଂପଦରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ଭାଗବତଟୁଙ୍ଗୀରେ ସଂଧ୍ୟା ଏକ ଅଧ୍ୟୟନ', ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଉପନ୍ୟାସ 'କଣାମାମୁଁ', ନୀଳକଣ୍ଠଙ୍କ ଭାଷାତତ୍ତ୍ୱ ସଂପର୍କୀତ ଆଲୋଚନା ସମୂହରେ ତାଙ୍କର ଗଭୀର ଅଧ୍ୟୟନ ଓ ସମୀକ୍ଷାର ମୌଳିକତା ସ୍ପଷ୍ଟ ବାରି ହୋଇପଡ଼େ ।

'ଶ୍ରୀ ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ ଏବଂ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା ପୁସ୍ତକ ଦୁଇଟିରେ ତାଙ୍କ ଜ୍ଞାନର ଗଭୀରତା ଓ ତାଙ୍କ ଗବେଷଣାର ଏକନିଷ୍ଠତାକୁ ପ୍ରକାଶିତ କରିଥାଏ । ଶ୍ରୀଜଗନ୍ନାଥ ଚେତନା ପ୍ରସଙ୍ଗଗୁଡ଼ିକୁ ଐତିହାସିକ ତଥ୍ୟ ଓ ଦାର୍ଶନିକ ତତ୍ତ୍ୱକୁ ସେ ଯେପରି ବିଶ୍ଳେଷଣ କରିଛନ୍ତି ତାହା ତାଙ୍କ ସାଂସ୍କୃତିକ ଅଧ୍ୟୟନର ଗଭୀର ପରିଚୟ ମଧ ମିଳିଥାଏ । ଭାରତୀୟ ସଂସ୍କୃତିରେ ଶ୍ରୀ ଜଗନ୍ନାଥଙ୍କୁ ଶ୍ରେଷ୍ଠ ପ୍ରତୀକରୂପେ ସୂଚାଇ ସେ କୁହନ୍ତି-

''ମନୁଷ୍ୟ ଯେତେବେଳେ ସ୍ୱଶକ୍ତି ସର୍ବସ୍ୱ ହୋଇ ବିଶ୍ୱକୁ ନିୟନ୍ତ୍ରଣ କରୁଥିବା ଶକ୍ତି ଉପରୁ ବିଶ୍ୱାସ ହରାଇଦିଏ, ସେତେବେଳେ ସେ ହୁଏ ଅବିଶ୍ୱାସୀ, ଦୁର୍ବିନୀତ, ଦୁର୍ଦ୍ଧର୍ଷ, ଦୁର୍ଦ୍ଦାନ୍ତ, କାହାରି ପ୍ରତି କାହାର ନଥାଏ ଅନୁରାଗ, ସ୍ନେହ, ଶ୍ରଦ୍ଧା, ଭକ୍ତି, ପ୍ରତି କଥାରେ ତାର କେବଳ ଥାଏ ତର୍କ, ବିତର୍କ ଅଯଥା ଯୁକ୍ତି । କିନ୍ତୁ ଭାରତୀୟ ସଂସ୍କୃତି ଅନୁଭବ କରିଛି ମଣିଷ ସମୀମ, ବିଶ୍ୱକୁ ନିୟନ୍ତ୍ରଣ କରିଥିବା ଶକ୍ତି ହେଉଛି ଅସୀମ । ସେହି ଶକ୍ତିକୁ ସେ ଈଶ୍ୱର ଭାବରେ

କଳ୍ପନା କରିଛି । ବ୍ରହ୍ମ, ନିରଞ୍ଜନ, ସନାତନ ପ୍ରଭୃତି ଭିନ୍ନଭିନ୍ନ ନାମରେ ସେହି ସେହି ଶକ୍ତିକୁ ଅନୂତ କରିଛି । ସେ ବୁଝିଛି ଯୁକ୍ତିତର୍କ ଦ୍ୱାରା ଈଶ୍ୱର-ଚେତନା ସମ୍ଭବ ନୁହେଁ । ସମ୍ଭବ କେବଳ ବିଶ୍ୱାସରେ, ଅନୁରକ୍ତିରେ, ପ୍ରାଣର ଗଭୀର ଅନୁଭୂତିରେ । ସମୀମମଣିଷ ଅସୀମକଥା କଳ୍ପନା କଲାବେଳେ 'ଏକ' ଭିତରେ 'ଅନେକ'ଙ୍କୁ ଓ ଅନେକ ଭିତରେ 'ମୁ'କୁ ଦେଖେ । ବିଶ୍ୱଚେତନାରେ ଉଦ୍‌ବୁଦ୍ଧ ହେଲାବେଳେ ସେ ବିଶ୍ୱ ନିୟନ୍ତାଙ୍କ ପାଖରେ ପହଞ୍ଚିବା ପାଇଁ ବ୍ୟାକୁଳ ହୁଏ । 'ବିଶ୍ୱଭାବ'ରୁ ତାର ଜାତ ହୁଏ 'ଈଶ୍ୱରଭାବ' । ଭାରତୀୟ ସଂସ୍କୃତିରେ ଏହି ବୈଶିଷ୍ଟ୍ୟ ଓଡ଼ିଶାର ଜଗନ୍ନାଥ ସଂସ୍କୃତି ଭିତରେ ପ୍ରତିବିମ୍ବିତ । ଏହି ସଂସ୍କୃତିର ପ୍ରାଣକେନ୍ଦ୍ର ହେଉଛନ୍ତି 'ଜଗନ୍ନାଥ' । ସେ କୌଣସି ନିର୍ଦ୍ଦିଷ୍ଟ ଅଂଚଳର ନାଥ ନୁହନ୍ତି, ନିଖିଳ ଜଗତର ନାଥ । ଜଗନ୍ନାଥ ସଂସ୍କୃତି ହେଉଛି ମହାନ୍ ଆଦର୍ଶର ସଂସ୍କୃତି । ଏହି ସଂସ୍କୃତିର ମୂଳରେ ରହିଛି ନିଜକୁ ଗୌଣ କରି ସମଗ୍ରକୁ ପ୍ରାଧାନ୍ୟ ଦେବା ପାଇଁ ମହତୀ ଆକାଂକ୍ଷା, ବିଶ୍ୱଚେତନାରେ ନିଜକୁ ହଜାଇଦେବାରେ ହିଁ ତାର ଶାନ୍ତି; ସାନ୍ତ୍ୱନା,, ସିଦ୍ଧି ଓ ମୁକ୍ତି । କ୍ଷୁଦ୍ର ଭିତରେ ସେ କ୍ଷୁର୍ଣ୍ଣ ଖଣ୍ଡିତ ନୁହେଁ, ବିଶାଳ, ବ୍ୟାପକ, ଅନନ୍ତ ମଧ୍ୟରେ ସେ ପରିବ୍ୟାପ୍ତ । (ଡଃ ସାହୁ, ପୃ- ୩୦୦/୩୦୧)

ବାସ୍ତବିକ ଡଃ ସାହୁ ଯେପରି ଏକ ବୃହତ୍ତମ ମାନବୀୟ ସାଂସ୍କୃତିକ ପଟ୍ଟଭୂମି ଉପରେ ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱ ଓ ଚେତନାକୁ ଉପଲବ୍‌ଧି କରିଅଛନ୍ତି ତାହାକୁ ତାଙ୍କର ମହାସନ୍ଦର୍ଭ 'ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା' ରେ ଉପସ୍ଥାପନ କରିଅଛନ୍ତି । ଏହି ଆଲୋଚନାରେ ତାଙ୍କର ସାଂସ୍କୃତିକ ଦୃଷ୍ଟିଭଂଗୀଟି ସ୍ୱଷ୍ଟ ହୋଇଉଠିଛି ।

ଡଃ ସାହୁ ଥିଲେ ଜଗନ୍ନାଥ ସମର୍ପିତ ମଣିଷଟିଏ । ଜଗନ୍ନାଥ ଥିଲେ ତାଙ୍କର ଅତି ଆପଣାର ଦେବତା । ଶ୍ରୀ ଜଗନ୍ନାଥ ସମର୍ପିତମଣିଷ ସଦା ଉଦ୍‌ବେଳିତ ଥିଲା ତାଙ୍କ ପ୍ରାଣମନ୍ଦିର । ଶ୍ରୀଜଗନ୍ନାଥ ଚେତନାରେ କାହାଣୀକୁ ଉପଜୀବ୍ୟକରି ସେ ସୃଷ୍ଟି କରିଛନ୍ତି 'ଭାବକୁ ନିକଟ ଅଭାବେ ଅଭେଟ ।' ଗଳ୍ପ ପୁସ୍ତକ, ଯେଉଁଥିରେ ୨୧ଟି କ୍ଷୁଦ୍ରଗଳ୍ପ ରହିଛି । ସବୁ ଗଳ୍ପରେ ଫିଟିପଡ଼ିଛି ଲେଖକଙ୍କ ଭକ୍ତିରସ ଭରା ହୃଦୟର ନିଷ୍କପଟ ସ୍ନେହ ଶ୍ରଦ୍ଧା ଭକ୍ତି ଓ କାର୍ପଣ୍ୟର ବିନମ୍ର ପ୍ରଣତି ପରମ କାରୁଣିକଙ୍କ କରୁଣା ଲାଭରେ ଭକ୍ତର ଭାବମୟତା ଓ ଏକାଗ୍ର ଅଭିନିବେଶ ପୁଣି ଅବିଚଳ ନିଷ୍ଠା କେମିତି ପାଥେୟ ହୋଇଛି ତାହାକୁ ପ୍ରତିପାଦନ କରିବା କଥାକାରଙ୍କ ଆଭିମୁଖ୍ୟ । 'ଭକତି ଭାବେ ସେ ତ ବନ୍ଧା', 'ଭକତ ମଣିଦାସ', 'ଭକ୍ତିର ଭଗବାନ', 'ମୁକତିମାର୍ଗେ ଭକ୍ତି ଚଳେ', 'ସର୍ବ ଭୟକୁ ବଜ୍ର ସେହ୍ୱା' ଏମିତି ସାଇଁ ଜଗତେ କାହିଁ ? ପ୍ରଭୃତି । ଏଥିରେ ଯଥାକ୍ରମେ ବଳରାମ ଦାସ, ମଣିଦାସ, ରଘୁ ବେହେରା, ନୀଳାମ୍ବର ଦାସ, ରଘୁଅରକ୍ଷିତ' ଓ ବଂଧୁ ମହାନ୍ତି ଚରିତ୍ର ଅନ୍ତର୍ଗତ । ଏ ସବୁ ଗଳ୍ପଗୁଡ଼ିକରେ କଥାକାର ଡଃ ସାହୁଙ୍କର ଭାବମୟତା, ଭକ୍ତି ପ୍ରବଣତା, କଥାକତା, ଭାଷା ବିନ୍ୟାସ ଏକ ମହତ୍ତର ମାନ୍ୟତା ପ୍ରଦାନ କରିଛି ।

ଓଡ଼ିଆ ସାହିତ୍ୟର ଜଣେ ସୁନାମଧନ୍ୟ ସାହିତ୍ୟିକ, ସମାଲୋଚକ, ପ୍ରାବଂଧିକ, ଶିକ୍ଷାବିତ୍, କବି, କଥାକାର ଭାବରେ କେବଳ ନୁହେଁ ବରଂ ସେ ଜଣେ ଭାଷାବିତ୍ ଭାବରେ ଅଧିକ ସୁଖ୍ୟାତ । ତାଙ୍କ ଲିଖିତ ଭାଷା ବିଜ୍ଞାନର ରୂପରେଖ, 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ, 'ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ', 'ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା', 'ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ' ଓ 'ପୃଥିବୀର ଭାଷା ପରିବାର ପରିଚୟ ଓ ପରିସର', ଛଅଖଣ୍ଡି ପୁସ୍ତକ ରଚନା କରିଛନ୍ତି । ତାଙ୍କର ପିଏଚ୍.ଡ଼ି ନିବଂଧ । ଓଡ଼ିଆ ଭାଷା ଉପରେ ବୈଦେଶିକ ଭାଷାର ପ୍ରଭାବ' ତାଙ୍କ ଭାଷାଚର୍ଚ୍ଚାର ଆଦ୍ୟ ସୋପାନ । ଉପରୋକ୍ତ ଗ୍ରନ୍ଥଗୁଡ଼ିକରେ ଐତିହାସିକ ଆଲୋଚନା, ଲିପିଭିତ୍ତିକ ଆଲୋଚନା, ପ୍ରଭାବ ଦିଗଗୁଡ଼ିକୁ ସେ ବିସ୍ତାରିତ ଭାବରେ ଆଲୋଚନା କରି ନିଜର ଗବେଷଣାଲବ୍ଧ ଦୃଷ୍ଟିଭଂଗୀର ପରିଚୟ ପ୍ରଦାନ କରିଛନ୍ତି । ଜୀବନକାଳ ଭିତରେ ସେ ତାଙ୍କର ୩୨ ଖଣ୍ଡ ପୁସ୍ତକ ପ୍ରକାଶିତ ଓ ଦେଶଶତରୁ ଅଧିକ ଗବେଷଣାତ୍ମକ ଉଚ୍ଚକୋଟୀର ପ୍ରବଂଧ ଓଡ଼ିଶାର ବହୁ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରକାଶିତ । ତାଙ୍କ ଦିଗ୍‌ଦର୍ଶନରେ ୫୩ ଜଣ ପିଏଚ୍.ଡ଼ି ଓ ୫ଜଣ ଡି.ଲିଟ୍ ଉପାଧି ଲାଭ କରିବାର ସୌଭାଗ୍ୟ ଲାଭ କରିଛନ୍ତି ।

ଡକ୍ଟର ସାହୁଙ୍କର ପ୍ରତିଭା ଥିଲା ବହୁ ରଶ୍ମୀରେ ବିଭାସିତ । ପ୍ରତିଭା ଇନ୍ଦ୍ରଧନୁର ସପ୍ତରଂଗୀ ଆଭା ତାଙ୍କ ସମଗ୍ର ସୃଷ୍ଟି ଚେତନାକୁ କରିଛି ଉଦ୍‌ଭାସିତ । ସେ ଥିଲେ ଓଡ଼ିଆ ଭାଷା ଓ ସାହିତ୍ୟର ବିପୁଳ ଦିଗ୍‌ବଳୟରେ ଏକ ସ୍ୱତନ୍ତ୍ର ମୂଲ୍ୟବୋଧର ଦ୍ୟୋତକ । ପ୍ରକୃତରେ କହିବାକୁ ଗଲେ ଅଧ୍ୟୟନ ଓ ଅଧ୍ୟାପନା ମଧ୍ୟଦେଇ ସେ ଗଢ଼ିଛନ୍ତି ଆପଣାର କାନ୍ତକୋମଳ ବ୍ୟକ୍ତିତ୍ୱ । ସେଠି ପୂରି ରହିଛି ଶେଷହୀନ ସ୍ନେହ, ଅଫୁରନ୍ତ ପ୍ରେମ ଓ ଅନ୍ତହୀନ ମମତା । ସେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ହୋଇଥିଲେ ହେଁ ସେ ଥିଲେ ନମ୍ର, ବିନୟୀ, ସ୍ପଷ୍ଟବାଦୀ, ମିଷ୍ଟଭାଷୀ ଓ ସ୍ନେହ ଶ୍ରଦ୍ଧାର ଉତ୍ସ । ସେହି ମହାନ୍ ପ୍ରଜ୍ଞାପ୍ରାଣ ପ୍ରଜ୍ଞାମୟ ପ୍ରଜ୍ଞାପୁରୁଷଙ୍କୁ ମୁଁ ଜଣାଉଛି କୋଟିକୋଟି ପ୍ରଣାମ ।



# ଭାଷାବିଜ୍ଞାନୀ ପ୍ରଫେସର ବାସୁଦେବ ସାହୁ

ଡଃ ନୃସିଂହ ଚରଣ ସାହୁ

''ଗୁରୁର୍ବ୍ରହ୍ମା ଗରୁର୍ବିଷ୍ଣୁ ଗୁରୁଦେବ ମହେଶ୍ୱରଃ,
ଗୁରୁଃ ସାକ୍ଷାଦ୍ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।।''

ଚାହୁଁ ଚାହୁଁ ପ୍ରାୟ ବର୍ଷଟିଏ ବିତିଗଲାଣି ୟା' ଭିତରେ । ମୁଁ ମାନସିକ ସ୍ତରରେ ଏପର୍ଯ୍ୟନ୍ତ ସୁଦ୍ଧା ବିଶ୍ୱାସ କରିପାରୁ ନାହିଁ ଯେ ମୋର ପ୍ରିୟ ସାର୍ ନାହାନ୍ତି ବୋଲି । ମୋତେ ଲାଗୁଛି ସେ-ହେଇ ଚାଲିଚାଲି ଆସୁଛନ୍ତି ବ୍ୟାଗ୍‌ଟିଏ ଧରି । ପଚାରିଦେବେ କି ଆଉ 'କିରେ ଚଗଲା', କେତେବେଳେ ଆସିଲୁ, ଥେସିସ୍ କାମ ଶୀଘ୍ର ସାର । ମୁଁ ରିଟାୟାର୍ଡ଼ କରିଯିବି । ମୁଁ କାହାକାମ ବାକି ରଖିବି ନାହିଁ । ଶାନ୍ତ, ସୌମ୍ୟ, ଗମ୍ଭୀର ସ୍ୱଭାବର ସ୍ନେହୀ ସାର୍ ଯେ ଏତେଶୀଘ୍ର ଆମକୁ ଛାଡ଼ି ଚାଲିଯିବେ, ମୁଁ ଭାବିନଥିଲି । ମାତ୍ର ''ମର୍ତ୍ତ୍ୟମଣ୍ଡଳେ ଦେହବହି, ଦେବତା ହୋଇଲେ ମରଇ'' ଏ ଚିରନ୍ତନ ସୂକ୍ତି ମନେପଡ଼ିଗଲେ ବିଶ୍ୱନିୟନ୍ତା ନିକଟରେ ଆତ୍ମସମର୍ପଣ କରିବାକୁ ହୁଏ । ଧୈର୍ଯ୍ୟ ଧରିବାକୁ ପଡ଼େ । ପ୍ରକୃତରେ ସଂସାରରେ ଭଲ ଲୋକଙ୍କୁ ଈଶ୍ୱର ଭଲପାଇ ଶୀଘ୍ର ନିଜ ରାଜ୍ୟକୁ ନେଇଯାଆନ୍ତି ।

୧୯୭୪ ସାଲରେ ବି.ଜେ.ବି କଲେଜ ଭୁବନେଶ୍ୱରରୁ ବି.ଏ. ଅନର୍ସ ପାଶ୍ କରି ମୁଁ ବାଣୀବିହାର ଓଡ଼ିଆ ବିଭାଗରେ ନାମ ଲେଖାଇଥିଲି ଏମ୍.ଏ. ପଢ଼ିବା ପାଇଁ । ଆମ ଗ୍ରାମର ଅଧ୍ୟାପକ ପ୍ରମୋଦ କୁମାର ମହାନ୍ତି (ବାଣୀବିହାର ଓଡ଼ିଆ ବିଭାଗର ପ୍ରଥମ ବ୍ୟାଚ୍‌ର ଛାତ୍ର) ମୋତେ ପ୍ରଥମେ ବାସୁ ସାର୍‌ଙ୍କ ବିଷୟ ସୂଚନା ଦେଇଥିଲେ ଏବଂ ପରେ ମୋର ସାର୍ କଟକ ତୁଳସୀପୁରର ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କଠାରୁ ବାସୁସାର୍‌ଙ୍କ ସଂପର୍କରେ ବିସ୍ତୃତ ସୂଚନା ପାଇଥିଲି । ଉଭୟ କହିଥିଲେ ଯେ 'ବାସୁସାର୍' ଜଣେ ଛାତ୍ରବତ୍ସଳ ଆଦର୍ଶ ଶିକ୍ଷକ ।' ପରେ ତାଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସି ତାଙ୍କର ବିଶାଳ ବ୍ୟକ୍ତିତ୍ୱ ଓ ଦୂରଦୃଷ୍ଟି ସଂପର୍କରେ ଅବହିତ ହୋଇଥିଲି । ମୋର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା । ମୁଁ ଟିଉସନ୍ କରି ପଢୁଥାଏ । ସେ ଏକଥା ଜାଣି ମୋତେ କହନ୍ତି-'କଠୋର ପରିଶ୍ରମ ହିଁ ସଫଳତାର ଚାବିକାଠି' । ଏହା ମୋତେ ପ୍ରେରଣା ଯୋଗାଏ । ଅନେକ ସମୟରେ ସାର୍ ପଚାରନ୍ତି-'ଚଗଲା, ଖାଇଛୁକି ନାହିଁ । ପଇସାପତ୍ର ଅଛି କି ନାହିଁ । ସେ ମୋତେ ବାଟଖର୍ଚ୍ଚ ମଧ୍ୟ ଦିଅନ୍ତି ଗାଁକୁ ଗଲାବେଳେ ।

କେବଳ ମୁଁ ଏକମାତ୍ର ନୁହେଁ, ଅନେକ ଛାତ୍ରଛାତ୍ରୀଙ୍କୁ ସେ ବହୁ ଭାବରେ ସାହାଯ୍ୟ କରନ୍ତି । ସମସ୍ତଙ୍କର ନାମ ଥିଲେ ମଧ୍ୟ ସେ ଗୋଟିଏ ନୂଆ ନାମ ସ୍ନେହରେ ସବୁ ପୁଅ ଝିଅଙ୍କୁ ଦିଅନ୍ତି ଏବଂ ସେହି ନାମରେ ସର୍ବଦା ସମ୍ବୋଧନ କରନ୍ତି । ସେ ସମସ୍ତଙ୍କ ଠିକଣା ମଧ୍ୟ ମନେ ରଖିପାରନ୍ତି । ଅଦ୍ଭୁତ ତାଙ୍କର ସ୍ମରଣ ଶକ୍ତି । କର୍ମ, ଜ୍ଞାନର ସେ ଉପାସକ । ଛାତ୍ରଛାତ୍ରୀମାନଙ୍କୁ ପୁତ୍ର-କନ୍ୟା ପରି ଦେଖନ୍ତି । ଥରେ ମୋ ପାଖକୁ ଚିଠିଟିଏ ଗାଁ ଠିକଣାରେ ଦେଇଥିଲେ, ଯେଉଁଥିରେ ସେ ମୋତେ ଲେଖିଥିଲେ-''ପ୍ରାଣପ୍ରତିମ ବାପା ହାତୀ ମୋର ଚଗଲା, ମୋର ଅଶେଷ ଆଶିଷ'' ଇତ୍ୟାଦି । ଏସବୁ ଆଜି ମନେପଡ଼ିଲେ ଆଖିରେ ଲୁହ ଆସିଯାଉଛି ।

ବାସୁ ସାର୍‌ଙ୍କ ଅଧ୍ୟାପନା ଶୈଳୀ ସ୍ୱତନ୍ତ୍ର ଓ ଖୁବ୍ ଉଚ୍ଚକୋଟୀର । ଭାଷାବିଜ୍ଞାନ ପରି କ୍ଲିଷ୍ଟ ବିଷୟକୁ ସେ ଏପରି ସରଳ ଓ ବୋଧଗମ୍ୟ ଭାବରେ ବିଭିନ୍ନ ଉଦାହରଣ ଦେଇ ବୁଝାନ୍ତି ଯେ ଆମର ଆଉ ସନ୍ଦେହ କିଛି ରହେ ନାହିଁ । ଏତଦ୍ ବ୍ୟତୀତ ସେ ପ୍ରାଚୀନ, ମଧ୍ୟ ଓ ଆଧୁନିକ ସାହିତ୍ୟର କାବ୍ୟ, କବିତା, ନାଟକ, ଗଳ୍ପ, ପ୍ରବନ୍ଧ, ସମାଲୋଚନା ତଥା ଉପନ୍ୟାସ ଉପରେ ମଧ୍ୟ ପ୍ରାଞ୍ଜଳ ଭାବରେ ବୁଝାଇଦିଅନ୍ତି । କ୍ଲାସ୍ ସାର୍ ନେବାବେଳେ ଆମେ ସମସ୍ତେ ତଲ୍ଲୀନ ହୋଇ ତାଙ୍କ ମୁଖମଣ୍ଡଳକୁ ନିର୍ନିମେଷ ନୟନରେ ଚାହିଁ ରହିଥାଉ । ଓଡ଼ିଆ ଶବ୍ଦର ସ୍ପଷ୍ଟ ଉଚ୍ଚାରଣ ତାଙ୍କ ମୁଖରୁ ଶୁଣି ଆବେ ଅବାକ୍ ହୋଇଯାଉ । ସେ ବାଗ୍ମୀ, ଅନର୍ଗଳ ଭାଷଣ ଦେଇ ଚାଲନ୍ତି ଆଳଙ୍କାରିକ ଶବ୍ଦ ସଂଯୋଜନା ମାଧ୍ୟମରେ । ପୁନଶ୍ଚ ପରାମର୍ଶ ଦିଅନ୍ତି ପ୍ରତି ପେପର ପାଇଁ ସ୍ୱତନ୍ତ୍ର ଫାଇଲଟିଏ କରିବା ପାଇଁ । ପାଠପଢ଼ା ଯେପରି ଶୃଙ୍ଖଳିତ ହେବ ସେ ବତାଇ ଦିଅନ୍ତି ସମସ୍ତଙ୍କୁ । ତାଗିଦ୍ କରି ଗର୍ଜି କରି କହନ୍ତି ପାଠପଢ଼ାରେ ଅବହେଳା ନକରିବା ପାଇଁ । ଆମେ ତାଙ୍କୁ ଭୟ କରୁ । ପୁନଶ୍ଚ ତତ୍‌କ୍ଷଣାତ୍ କହନ୍ତି ହସିହସି 'ମନଦୁଃଖ ହେଲାକିରେ' । ଶିକ୍ଷା ସମାପ୍ତ ପରେ ସେ ମୋତେ ଗବେଷଣା କରିବା ପାଇଁ ନିରନ୍ତର ପରାମର୍ଶ ଦେଇଛନ୍ତି ଏବଂ ତାଙ୍କ ଅଧୀନରେ ମୁଁ ଗବେଷଣା କରି ପିଏଚ୍.ଡ଼ି ଡିଗ୍ରୀ ମଧ୍ୟ ପାଇଛି ତାଙ୍କର ତାଗିଦ୍ ଯୋଗୁ । ସେ ତେଣୁ ମୋତେ ଗଢ଼ିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ପାଠପଢ଼ା ବ୍ୟତୀତ ଭାଷଣ ପ୍ରତିଯୋଗିତାରେ ତଥା ମୌଳିକ ସୃଷ୍ଟିରେ ରୁଚି ରଖିବା ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ମୋ ପତ୍ନୀଙ୍କୁ ସେ ସବୁବେଳେ ବୋହୂପିଲା ବୋଲି ସମ୍ବୋଧନ କରନ୍ତି । ମୋର ଚାକିରୀ ପୁରୀରେ । ସେ ପୁରୀ ଗଲେ ସାକ୍ଷାତ ହୁଏ । ସେ ଥିଲେ ଶ୍ରୀଜଗନ୍ନାଥଙ୍କର ଭକ୍ତ । 'ଜଗନ୍ନାଥ' ଶବ୍ଦ ଶୁଣିଲେ ସେ ପାଗଳ ପ୍ରାୟ ହୋଇ ଉଲ୍ଲସିତ ହୋଇଉଠନ୍ତି । ମୁଁ ବେଳେବେଳେ ଜଗନ୍ନାଥଙ୍କୁ ତାଙ୍କରି ମାଧ୍ୟମରେ ହିଁ ଦେଖେ । ମୋତେ କହନ୍ତି, 'ଚଗଲା, ତୁ ଭାଗ୍ୟବାନ୍ ସବୁଦିନ ପୁରୀରେ ଚାକିରୀ, ପୁରୀରେ ନିବାସ । ଜଗନ୍ନାଥ ତୋର ମଙ୍ଗଳ କରିବେ ।

ଜୀବନ ସାରା ଗବେଷଣାରେ ରତ ଥିଲେ । ଲେଖାପଢ଼ାରେ ସେ ବହୁସମୟ ଅତିବାହିତ କରିଥିବାରୁ ଶରୀର ପ୍ରତି ଧ୍ୟାନ ଦେଇପାରି ନଥିଲେ । ଫଳରେ ଶରୀରରେ ପୀଡ଼ା ଅନୁଭବ

କଲେ ଏବଂ ସବୁ ଶେଷ ହୋଇଗଲା-ମୁଁ ଅନାଥ ହୋଇଗଲି । ସାର୍‌ଙ୍କ ସୃଜନଶୀଳ ପ୍ରତିଭା ଦିବ୍ୟ ଚେତନାର ସ୍ମାରକୀ ସଦୃଶ । 'ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା' ଦୁଇଖଣ୍ଡରେ ପ୍ରକାଶିତ ଯେଉଁଥିରେ ସେ ଜଗନ୍ନାଥଙ୍କର ପ୍ରାଚୀନତା ସଂପର୍କରେ ଏକ ବୈଜ୍ଞାନିକ ଅଧ୍ୟୟନ କରିଛନ୍ତି । ସଂସ୍କୃତ, ପାଲି, ପ୍ରାକୃତ, ଅପଭ୍ରଂଶ, ଆଧୁନିକ ଭାଷାରେ ରଚିତ ସହସ୍ର ଗ୍ରନ୍ଥରାଜିରୁ ସଂଗ୍ରହ କରି ତାକୁ ଏପରି ଭାବରେ ଗୁମ୍ଫିତ କରିଛନ୍ତି ଯେ ତାହା ପାଠକଲାବେଳେ ତାଙ୍କ ପ୍ରଚଣ୍ଡ ପ୍ରତିଭା ଓ ବହୁଶାସ୍ତ୍ର ଦର୍ଶୀତାର ପ୍ରମାଣ ମିଳିଥାଏ । ତାଙ୍କର 'ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ' (ପ୍ର.ପ୍ର. ୧୯୮୧) ଓ ଓଡ଼ିଆ ସାହିତ୍ୟରେ ଧର୍ମୀୟ ପରମ୍ପରା', 'ଚଣ୍ଡୀପୁରାଣ' ସଂପାଦନା ଭକ୍ତଚରଣ ଓ ମଥୁରାମଙ୍ଗଳ' ପ୍ରଭୃତି ପୁସ୍ତକ ପାଠକଲେ ଭାବ ସାନ୍ଦ୍ରତାର ତୀବ୍ରତା ଏତେ ବଢ଼ିଯାଏ ଯେ ପାଠକ ଅନ୍ୟମନସ୍କ ହୋଇପାରେ ନାହିଁ ।

ଭାଷା ବିଜ୍ଞାନ ସଂପର୍କରେ ସେ ଅନେକ ପୁସ୍ତକ ରଚନା କରିଛନ୍ତି ଖୁବ୍ ବୈଜ୍ଞାନିକ ବିଶ୍ଳେଷଣ ଶୈଳୀରେ । ତାଙ୍କର 'ଓଡ଼ିଆ ଶବ୍ଦ-ବ୍ୟୁତ୍ପତ୍ତି ବିଜ୍ଞାନ' (୧୯୮୨)ରେ ଓଡ଼ିଆ ଧ୍ୱନୀର ବିବର୍ତ୍ତନ, ଓଡ଼ିଆ ଶବ୍ଦ ଭଣ୍ଡାରର ବିଭାଗୀକରଣ, ତତ୍ସମଶବ୍ଦାବଳୀ ଉପରେ ଭାଷାତାତ୍ତ୍ୱିକ ଟିପ୍ପଣୀ, ତଦ୍ଭବଶବ୍ଦାବଳୀର ବ୍ୟୁତ୍ପତ୍ତିକ୍ରମ, ଅର୍ଦ୍ଧତତ୍ସମଶବ୍ଦାବଳୀର ବ୍ୟୁତ୍ପତ୍ତିକ୍ରମ, ଓଡ଼ିଆ ଭାଷାରେ ପ୍ରଚଳିତ ଆଦିବାସୀ ଓ ଦ୍ରାବିଡ଼ ଶବ୍ଦ, ବୈଦେଶିକ, ଦେଶଜ ଶବ୍ଦର ବିଶ୍ଳେଷଣ; 'ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା (ପ୍ର.ପ୍ର.୧୯୮୧)ରେ ଭାଷାବିଭାଗୀକରଣରେ ଆମେରିକା ଚକ୍ର, ଆଫ୍ରିକୀୟ ଚକ୍ର, ପ୍ରଶାନ୍ତମହାସାଗରୀୟ ଚକ୍ର, ୟୁରେସିଆ ଚକ୍ର, ଇଣ୍ଡୋ ୟୁରୋପୀୟ ଭାଷା ପରିବାର (କେନ୍ଟୁମ୍‌ବର୍ଗ, ସତମ୍‌ବର୍ଗ), ଭାରତୀୟ-ଇରାନୀୟ ଭାଷା ମଧ୍ୟରେ ସାମଞ୍ଜସ୍ୟ, ପାଲି, ପ୍ରାକୃତ, ଅପଭ୍ରଂଶ, ଅବହଟ୍‌ଠ, ଆଧୁନିକ ଭାରତୀୟ ଆର୍ଯ୍ୟଭାଷା ପରିବାର; 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ' (୧୯୮୨) ରେ ଓଡ଼ିଆ ଭାଷାର ଉତ୍ପତ୍ତି ଓ କ୍ରମବିକାଶ, ପ୍ରାଚୀନ ଓଡ଼ିଆ ଅଭିଲେଖର ଐତିହାସିକ ଓ ଭାଷାତାତ୍ତ୍ୱିକ ଆଲୋଚନା, ଓ ଭାଷାରେ ଆଦିବାସୀ, ଦ୍ରାବିଡ଼, ଯାବନିକ, ଇଂରେଜୀ ଭାଷାର ପ୍ରଭାବ; ଆଧୁନି ଓଡ଼ିଆ ସାହିତ୍ୟର ମୂଲ୍ୟାୟନ (ପ୍ର.ପ୍ର. ୧୯୭୫)ରେ 'ବାବାଜୀ' ନାଟକ, 'ସତୀ' ନାଟକ, ଓଡ଼ିଆ ଗଦ୍ୟକବିତା, ଗୀତି କବିତା, 'ଓଡ଼ିଆ ସାହିତ୍ୟର ସୃଷ୍ଟି ସଂପଦ'ରେ କଳସା ଚଉତିଶା, ଉପେନ୍ଦ୍ରଭଞ୍ଜଙ୍କ ରସଲେଖା, ବଡ଼ଜେନାଙ୍କ ସାହିତ୍ୟ, ପାଣ୍ଡୁଲିପି, ଭାଗବତ ଟୁଙ୍ଗୀରେ ସଂଧ୍ୟା', କଣାମାମୁ, 'ଆଧୁନିକ ସାହିତ୍ୟ ଭାଷ୍ୟ (୧୯୮୪) ରେ କବିତାରେ ଚିତ୍ରକଳା, ପ୍ରତୀକ, ଉପନ୍ୟାସରେ ଚେତନାପ୍ରବାହ, କ୍ଷୁଦ୍ରଗଳ୍ପରେ ଯୁଗଯନ୍ତ୍ରଣା, ପ୍ରବନ୍ଧତତ୍ତ୍ୱ ଓ ପାଠ୍ୟପୁସ୍ତକ ଆନ୍ଦୋଳନ ଇତିହାସ ଓଡ଼ିଆ ଚରିତ ସାହିତ୍ୟ;ସାହିତ୍ୟିକ ଦିଗ୍‌ଦର୍ଶନ' ରେ ବୌଦ୍ଧ ଚର୍ଯ୍ୟାଗୀତି ଏକ ବିହଙ୍ଗମ ଦୃଷ୍ଟି । ସାରଳା ମହାଭାରତରେ ଓଡ଼ିଆ ଚିତ୍ର । ପଞ୍ଚସଖା ଧର୍ମ ଓ ଧର୍ମୀୟ ସାହିତ୍ୟ ଏକ ଅଧ୍ୟୟନ, ଓଡ଼ିଆ କାବ୍ୟକବିତାରେ ଭଞ୍ଜୀୟ ମୁଦ୍ରାଙ୍କନ,

ବଡ଼ଜେନା ସାହିତ୍ୟରେ ହାସ୍ୟରସ, ଗଙ୍ଗାଧର ସାହିତ୍ୟରେ ପ୍ରାଚ୍ୟ ସାହିତ୍ୟର ପରମ୍ପରା, ଫକୀରମୋହନଙ୍କ ଔପନ୍ୟାସିକ ଶୈଳୀ, ଦିବ୍ୟଦର୍ଶୀ ମଧୁସୂଦନ ପ୍ରଭୃତିର ବିଶ୍ଳେଷଣ ଶୈଳୀ ତାଙ୍କର ସୂକ୍ଷ୍ମ ବିଚାରବୋଧ ଉପରେ ପର୍ଯ୍ୟବେଷିତ ।

'ଭାଷାବିଜ୍ଞାନର ରୂପରେଖ', 'ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ', ଅଳଙ୍କାରତତ୍ତ୍ୱ','Descriptive Catalogue of Oriya Manuscripts, Vol.I ଏବଂ Vol.II' 'ପ୍ରବନ୍ଧ ସମାରୋହ', 'ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଓ ଘରସଂସାର', 'ପ୍ରଦୀପଶିଖା', 'ପାରିଜାତକ', 'ମୋ ସାହିତ୍ୟ', ତଥା 'ସଂବିତ୍ (କବିତାଗ୍ରନ୍ଥ) ପ୍ରଭୃତି ତାଙ୍କର ଅନେକ ଗ୍ରନ୍ଥ ପ୍ରକାଶିତ । କବିତା, ଗଳ୍ପ, ବ୍ୟାକରଣ ଉପରେ ତାଙ୍କର ଅନେକ ରଚନା ମଧ୍ୟ ରହିଛି । ସେ ଜଣେ ନିରନ୍ତର ସାହିତ୍ୟ ସାଧକ ଥିଲେ ଏଥିରେ ସନ୍ଦେହ ନାହିଁ ।

ଶେଷରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ସେ ଅମରଧାମରେ ଥାଇ ତାଙ୍କର ହଜାର ହଜାର ଛାତ୍ରଛାତ୍ରୀଙ୍କୁ ଆଶୀର୍ବାଦ କରନ୍ତୁ ଏବଂ ଈଶ୍ୱର ତାଙ୍କ ଆତ୍ମାର ସଦ୍‌ଗତି କରାନ୍ତୁ । ଶାସ୍ତ୍ରରେ ଅଛି-

''ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ
ନ ଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।''
ଓଁ ଶ୍ରୀ ଶ୍ରୀ ଗୁରୁଚରଣ ଶରଣମ୍ ।



ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ରାଷ୍ଟ୍ରୀୟ ସଂସ୍କୃତ ସଂସ୍ଥାନ (ଡିମ୍‌ଡ଼ି ୟୁନିଭରସିଟି)
ଶ୍ରୀ ସଦାଶିବ ପରିସର, ପୁରୀ-୭୫୨୦୦୧

# ଶବ୍ଦ ବ୍ୟୁତ୍ପତ୍ତି ତତ୍ତ୍ୱବିତ୍ ଡଃ ବାସୁଦେବ ସାହୁ

ଡଃ ଖଗେଶ୍ୱର ମହାପାତ୍ର

୧. ଗ୍ରୀକ୍ ପ୍ରକୃତିବାଦୀ, ବିଶେଷତଃ ଷ୍ଟଇକ ଦାର୍ଶନିକମାନେ ମତପୋଷଣ କରୁଥିଲେ ଯେ ପ୍ରାକୃତିକ ଧ୍ୱନି ଅନୁକରଣ ଦ୍ୱାରା ଉତ୍ପାଦିତ ଶବ୍ଦ ସମୂହ ଭାଷାର ମୌଳିକ ଉପାଦାନ ଏବଂ ଏହି ପ୍ରକ୍ରିୟାରେ ଭାଷାର ଉନ୍ମେଷ ଓ ବିକାଶ ଘଟିଥାଏ । ସୁତରାଂ, ଏହି ମତବାଦ ଅନୁସାରେ ଧ୍ୱନ୍ୟାନୁକାରୀ ଶବ୍ଦଗୁଡ଼ିକ ହିଁ ଭାଷାର ଶବ୍ଦ ସମ୍ପତ୍ତିର ମୂଳ ପୁଞ୍ଜି । 'ମୌଳିକ ଭାଷା' (Basic Language) ଅବଧାରଣାର ଭିତ୍ତି ହେଉଛି ଯାହାର ଶବ୍ଦ ଭଣ୍ଡାର ବସ୍ତୁର ନାମ, କ୍ରିୟାକଳାପ, ଭାବନା ଓ ଅନୁଭବ ଇତ୍ୟାଦି ଧ୍ୱନ୍ୟାନୁକାରୀ ଶବ୍ଦ ସମୂହ ଦ୍ୱାରା ସମୃଦ୍ଧ । ଏହି ଶବ୍ଦଗୁଡ଼ିକର ଅର୍ଥ ସୁସ୍ପଷ୍ଟ ଓ ଚିତ୍ରଧର୍ମୀ । ଏଗୁଡ଼ିକ ଯଥାର୍ଥରେ 'ଧ୍ୱନି ପ୍ରତୀକ' ।

୨. ସମସ୍ତ ଭାଷା ବାସ୍ତବତଃ ପ୍ରତୀକ ମୂଳକ । ଭାଷାରେ ଦ୍ୱିବିଧ ପ୍ରତୀକ ଦେଖାଯାଏ-(କ) ଅଭିଭାଚକ/ବସ୍ତୁପରକ, (ଖ) ଅସମ୍ବନ୍ଧିତ/ମାନସପ୍ରସୂତ । ପ୍ରଥମ ବର୍ଗର ଶବ୍ଦଗୁଡ଼ିକ ଧ୍ୱନ୍ୟାନୁକୃତ ବା ପ୍ରତିଧ୍ୱନ୍ୟାତ୍ମକ (Onomoto Echo) ଦ୍ୱିତୀୟ ବର୍ଗର ଶବ୍ଦଗୁଡ଼ିକର ଧ୍ୱନ୍ୟାତ୍ମକ ରୂପର ସୂଚିତ ବସ୍ତୁ ବା ଭାବ ସହିତ କୌଣସି ସହସମ୍ବନ୍ଧ ନଥାଏ । ଦୃଷ୍ଟାନ୍ତ ସ୍ୱରୂପ, 'କାକ' ପ୍ରଥମ ବର୍ଗୀୟ ଓ 'କୁକୁର' ଦ୍ୱିତୀୟ ବର୍ଗୀୟ । ଏ କ୍ଷେତ୍ରରେ ନାମ ଓ ରୂପ ମଧ୍ୟରେ କିଛି ସମ୍ବନ୍ଧ ପ୍ରତ୍ୟକ୍ଷ ନୁହେଁ, କିନ୍ତୁ 'କା-କା' ରାବ ଓ 'କାକ' ସମ୍ବନ୍ଧାନ୍ୱିତ ।

୩. ଗୋଟିଏ ନିର୍ଦ୍ଦିଷ୍ଟ ଭାଷା-ଗୋଷ୍ଠିର ରୁଚି, ଅଭ୍ୟାସ, ଅନୁକରଣ ଶକ୍ତି ଇତ୍ୟାଦି ଦ୍ୱାରା ମୂଳ ଶବ୍ଦ ସମୂହ ଗଠିତ ହୋଇଥାଏ । ଏଣୁ ଗୋଷ୍ଠିଭେଦରେ ଅନୁକୃତ ଶବ୍ଦରେ ତାରତମ୍ୟ ଦେଖାଯାଏ । ଏକ ଏକ ଗୋଷ୍ଠିର ଏପରି ଭାଷିକ ବ୍ୟବହାର ସେହି ଗୋଷ୍ଠିର ଧ୍ୱନିସୌନ୍ଦର୍ଯ୍ୟବୋଧ (Phonoaestheticism) ଓ ଧ୍ୱନ୍ୟାତ୍ମକ ପ୍ରତୀକବାଦ (Sound Symbolism) ପ୍ରତିପାଦନ କରେ ।

୪. ଧ୍ୱନ୍ୟାନୁକାରୀ ଶବ୍ଦ ବ୍ୟୁତ୍ପାଦନର ନିୟମ ହେଉଛି ପ୍ରକୃତ ଧ୍ୱନିର ଦ୍ୱିରାବୃତ୍ତି । ଏହା ଦୁଇଟି ପଦ୍ଧତିରେ କରାଯାଏ-ଧ୍ୱନିର ସଂପୂର୍ଣ୍ଣ କିମ୍ବା ଆଂଶିକ ପୁନରୁଚ୍ଚାରଣ । ଉଦାହରଣ : ଖଟ୍- ଖଟ୍‌ଖଟ୍-ଖଟ୍‌ଖାଟ୍ । ଶେଷ ଦୃଷ୍ଟାନ୍ତଟି ପ୍ରତିଧ୍ୱନ୍ୟାତ୍ମକ ଶବ୍ଦ । ଏଥିରେ ମୂଳ ଧ୍ୱନିର ଦ୍ୱିରାବୃତ୍ତିରେ ଦ୍ୱିତୀୟ ପଦର ଆଦ୍ୟଧ୍ୱନିରେ ପରିବର୍ତ୍ତନ ଘଟେ । କୌଣସି ମୂଳ ପ୍ରାକୃତିକ

ଧ୍ୱନିରୁ ଚାରି ପ୍ରକାରର ଶବ୍ଦ ସଂଜାତ ହୋଇପାରେ : ଧ୍ୱନ୍ୟାନୁକୃତ(Ono), ପ୍ରତିଧ୍ୱନ୍ୟାତ୍ମକ(Echo), ପୁନରୁଚ୍ଚାରିତ (Resuplicative) ଓ ସହଚର ସଂଯୁକ୍ତ (Tag) । ଏହି ପ୍ରକାର ଚତୁର୍ବିଧ ଶବ୍ଦର ଉଦାହରଣ : ଝର୍, ଝର୍ଝର, ଝର୍‌ଝାର୍, ଝର-ଫର । ଅର୍ଥତତ୍ତ୍ୱ ଦୃଷ୍ଟିରୁ ପ୍ରତ୍ୟେକ ଧରଣର ଶବ୍ଦ କିଛି ନା କିଛି ସ୍ୱତନ୍ତ୍ର ଅର୍ଥ ସୂକ୍ଷ୍ମଭାବେ ସୂଚିତ କରେ । ଏଥିପାଇଁ ମୁଁ କହେ- "The natural sounds signal meanings which from the base of a language, the speech of a community of autchthonous people." (Basic sounds : A study in sound symbolism of santals, () Gandhi National Centre for the Arts, 2001)

୫. ଶବ୍ଦ ବ୍ୟୁତ୍ପତ୍ତି ତତ୍ତ୍ୱ (Etymology) ର ଲକ୍ଷ୍ୟ ଓ ପ୍ରକାର୍ଯ୍ୟ ହେଉଛି-କୌଣସି ସମକାଳିକ ଶବ୍ଦର ଐତିହାସିକ ଉତ୍ସ ଅନୁସନ୍ଧାନ ଏବଂ ସେହି ସମ୍ଭାବିତ ମୂଳରୂପ(Proto form) ର କାଳକ୍ରମିକ ବିକାଶଧାରା ନିରୂପଣ । ଭାରତୀୟ ଭାଷା କ୍ଷେତ୍ରରେ ଏହି ଧରଣର ଆଦର୍ଶାତ୍ମକ କାମ ହେଉଛି-ବରୋ ଏବଂ ଇମେନ୍ୟୁ କୃତ Dravidian Etymological Dictionary, 1961, Supplement 1968: ଟର୍ଣ୍ଣର କୃତ Comparative Dictionary of Indo-Aryan Language 1962/1966, ଏବଂ ସୁକୁମାର ସେନ୍ କୃତ An Etymological Dictionary of Bengali, 1971 . ଏହି ପ୍ରସଙ୍ଗରେ ଏକ ସଂଯୋଜନୀରେ ସହାୟକ ଗ୍ରନ୍ଥ ଭାବରେ ଉଲ୍ଲେଖଯୋଗ୍ୟ Calvert Waticins କୃତ The American Heritage Dictionary of Indo-European Roots, 2000. ଏହି ଗ୍ରନ୍ଥର ଉପୋଦ୍‌ଘାତରେ ନିମ୍ନୋକ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ବକ୍ତବ୍ୟ ପ୍ରଣିଧେୟ ।

Language is intimately linked to culture in a complex fashion... Especially the lexicon of a language its dictionary-is a face turned towards cuture. The laxicon of a language remains the single most effective way of approaching and understanding the culture of its speakers... The reconstruction of vocabulary can offer a fuller, more interesting view of the culture of a prehistoric people than archaeology.

୬. ଓଡ଼ିଆରେ ମୂଳତଃ ପଣ୍ଡିତ ଗୋପୀନାଥ ନନ୍ଦ ଶବ୍ଦତତ୍ତ୍ୱ ପ୍ରସଙ୍ଗ ବିଚାର କରିଛନ୍ତି (୧୯୧୬) । ଭାଷାକୋଷରେ ପ୍ରହରାଜ ମଧ୍ୟ ଯଥାସମ୍ଭବ ତତ୍ସମ, ତଦ୍ଭବ, ଦେଶଜ, ବୈଦେଶିକ, ଯାବନିକ ଭେଦରେ ଶବ୍ଦଗୁଡ଼ିକ ଚିହ୍ନଟ କରି ସେଗୁଡ଼ିକର ଆହରଣ ସୂତ୍ର ଉଲ୍ଲେଖ କରିଛନ୍ତି । ତାଙ୍କ ସମୟକୁ ଯେତିକି ତଥ୍ୟ ଉପଲବ୍ଧ ହୋଇଥିଲା, ତାହାରି ଉପରେ ହିଁ ନିର୍ଭର କରି ସେ ଶବ୍ଦ ବ୍ୟୁତ୍ପତ୍ତି ନିରୂପଣ କରିବାର ପ୍ରୟାସ କରିଛନ୍ତି । କିନ୍ତୁ ବର୍ତ୍ତମାନ ବହୁତ ବହୁତ ନୂଆ ତଥ୍ୟ, ଉପାଦାନ ଓ ସୂଚନା ମିଳିଗଲାଣି । ଆଉ ଲୋକ ନିରୁକ୍ତି ଉପରେ କେବଳ ନିର୍ଭର କରାଯାଉ ନାହିଁ । ଏଣୁ, ଓଡ଼ିଆ ଶବ୍ଦବ୍ୟୁତ୍ପତ୍ତି ତତ୍ତ୍ୱରେ କିଛି ପରିବର୍ତ୍ତନ/





ପରିମାର୍ଜନ ଅନୁଭୂତ ହେଉଛି । ଏହି କ୍ଷେତ୍ରରେ ଉପାଦେୟ କାମ ହେଲା, ଅର୍ଦ୍ଧତତ୍ସମ, ତଦ୍ଭବ, ଦଦ୍ଭବ ଶବ୍ଦ କହିଲେ ସଂସ୍କୃତ ବ୍ୟତିରେକେ ଦ୍ରାବିଡ଼, ମୁଣ୍ଡା, ଆରବୀ, ପାର୍ଶୀ, ୟୁରୋପୀୟ ଭାଷାଗୁଡ଼ିକରୁ ଆହୃତ ବା ଗୃହୀତ ଶବ୍ଦଗୁଡ଼ିକର ବିକାଶକ୍ରମ ନିର୍ଣ୍ଣୟ କରିବା, ତା' ଛଡ଼ା ଭାରତୀୟ ଆର୍ଯ୍ୟ ଭାଷା ପରିବାର ଅନ୍ତର୍ଗତ ଓଡ଼ିଆର ସଜାତ ଭାଷା (ହିନ୍ଦୀ, ବଙ୍ଗଳା, ମରାଠୀ ଇତ୍ୟାଦି) ସୂତ୍ରରୁ ମଧ୍ୟ ଆମଦାନୀ କରାଯାଉଥିବା ଅନୁଭୂତ ହେଉଛି । ଏସବୁ ତଥ୍ୟ ଅନୁକ୍ରମେ ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ତତ୍ତ୍ୱ ପୁର୍ନବିଚାର୍ଯ୍ୟ ।

୭. ଡଃ ବାସୁଦେବ ସାହୁ ଓଡ଼ିଆ ଭାଷାତତ୍ତ୍ୱ ଚର୍ଚ୍ଚାରେ ଜଣେ ବିଶିଷ୍ଟ ପ୍ରତିଭାଗୀ । ତାଙ୍କର ଶବ୍ଦବ୍ୟୁତ୍ପତ୍ତି ସମ୍ବନ୍ଧୀୟ ରଚନାବଳୀ ମଧ୍ୟରେ ଅଗ୍ରଗଣ୍ୟ ଗ୍ରନ୍ଥ ''ଓଡ଼ିଆ ଭାଷା ଉପରେ ବୈଦେଶିକ ପ୍ରଭାବ'' (୧୯୭୩), ଯାହା ତାଙ୍କର ପିଏଚ୍.ଡ଼ି ନିମନ୍ତେ ପ୍ରସ୍ତୁତ ଥିସିସ୍ । ତା' ପରେ ରହିଛି ତାଙ୍କର 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ' ଏବଂ 'ଓଡ଼ିଆ ଶବ୍ଦବ୍ୟୁତ୍ପତ୍ତି ବିଜ୍ଞାନ । ଏହି ଗ୍ରନ୍ଥତ୍ରୟ ଏବଂ କତିପୟ ପ୍ରବନ୍ଧରେ ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ତତ୍ତ୍ୱ ସମ୍ବନ୍ଧେ ସେ ବ୍ୟାପକ ଓ ଗଭୀର ଚର୍ଚ୍ଚା କରିଛନ୍ତି । ତଥାକଥିତ 'ଦେଶଜ' ଶବ୍ଦ ବର୍ଗରେ ସେ ଏକ ନୂଆ ଉପବର୍ଗ 'ଅବ୍ୟୁତ୍ପନ୍ନ' ଶବ୍ଦ ଅବଧାରଣା କରିଛନ୍ତି । ଡଃ ସାହୁଙ୍କ ଅନୁସନ୍ଧାନ ଫଳରେ ବହୁ ଓଡ଼ିଆ ଶବ୍ଦର ମୂଳ ନିର୍ଣ୍ଣୟ ବିଷୟରେ ଭ୍ରାନ୍ତି ଅପସାରିତ ହୋଇପାରିଛି ଏବଂ ଆର୍ଯ୍ୟେତର ଭାଷାରୁ ଆହୃତ ଉପାଦାନ ଗୁଡ଼ିକର ପ୍ରକୃତ ପରିଚୟ ମିଳିଛି । ତାଙ୍କର ଥିସିସ୍ ସଂପୂର୍ଣ୍ଣ ଭାବେ ଯଦି ପ୍ରକାଶ ସମ୍ଭବ ହେଉ ନଥିବ, ତହିଁରେ ପ୍ରଦତ୍ତ ତଥ୍ୟ, ଉପାଦାନ ଓ ଟିପ୍ପଣୀ ସଂକ୍ଷେପରେ ପ୍ରକାଶ ହେବା ବାଞ୍ଛନୀୟ । ଅଧୁନା ପ୍ରଚଳିତ କୌଣସି ଶବ୍ଦର ସମ୍ଭାବ୍ୟ ମୂଳ ନିରୂପଣ ପାଇଁ ବିକାଶ କ୍ରମିକ ଶବ୍ଦକୋଷର ପ୍ରଣୟନ ଭାଷାରେ ଐତିହ୍ୟ ମର୍ଯ୍ୟାଦା ରକ୍ଷା ପାଇଁ ଆବଶ୍ୟକ । ଏପରି ସ୍ଥିତିରେ ଡଃ ବାସୁଦେବ ସାହୁଙ୍କ ଅବର୍ତ୍ତମାନତା ଆମର ଦୁର୍ଭାଗ୍ୟ । ତାଙ୍କଠାରୁ ପ୍ରଶିକ୍ଷିତ ଛାତ୍ର ଓ ଗବେଷକଗଣ ତାଙ୍କ ପ୍ରବର୍ତ୍ତିତ ଧାରାରେ ସକ୍ରିୟ ପ୍ରତିଭାଗୀ ହେବା କାମ୍ୟ ।



# ପ୍ରଫେସର ବାସୁଦେବ ସାହୁଙ୍କ ଭାଷାନୁଶୀଳନ ଓ ଭାଷାତାତ୍ତ୍ୱିକ ଆଲୋଚନାର ବୈଶିଷ୍ଟ୍ୟ

ପ୍ରଫେସର ବିଜୟ କୁମାର ଶତପଥୀ

ପ୍ରଫେସର ବାସୁଦେବ ସାହୁ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଓ ବିଭବ ଉପରେ ଆଲୋଚନାମାନ କରିଯାଇଛନ୍ତି । ଧର୍ମ, ସଂସ୍କୃତି, ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ପୁଣି ଆଧୁନିକ ସାହିତ୍ୟର ବିଚାର, ବିଶ୍ଳେଷଣ କଲାବେଳେ ସେ ସେହିସବୁ ନିର୍ଦ୍ଦିଷ୍ଟ ଯୁଗର ତଥା ଯୁଗାନୁସାରୀ ସାମାଜିକ ଓ ସାଂସ୍କୃତିକ ପ୍ରବୃତ୍ତି ମାନଙ୍କର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ କରିବାକୁ ଚାହିଁଛନ୍ତି । ବ୍ୟାପକ ତାଙ୍କ ଅଧ୍ୟୟନର ସୀମା ସରହଦ । ଜଗନ୍ନାଥଚେତନାଠାରୁ ଭାଷାର ରୂପତତ୍ତ୍ୱ ଯାଏ । କଳସା ଚଉତିଶାଠାରୁ ଆରମ୍ଭ ଓଡ଼ିଆ କବିତାରେ ପ୍ରତୀକ ପର୍ଯ୍ୟନ୍ତ ପୁଣି ଉପନ୍ୟାସରେ ଚେତନା ପ୍ରବାହର ଧାରାକୁ ପ୍ରତିପାଦନ କରିବା ପର୍ଯ୍ୟନ୍ତ ପରିବ୍ୟାପ୍ତ ତାଙ୍କର ଅନୁଶୀଳନ ଓ ବିଶ୍ଳେଷଣ । ତାଙ୍କର ସମୀକ୍ଷା କର୍ମକୁ ଦର୍ଶାଇବା ଏହି ପ୍ରବଂଧର ଉଦ୍ଦେଶ୍ୟ ନୁହେଁ । ଜଣେ ଅଗ୍ରଣୀ ଭାଷାତତ୍ତ୍ୱବିଦ୍ ଭାବରେ ଯେଉଁ ଦୃଷ୍ଟିକୋଣ ସେ ପ୍ରକଟ କରିଛନ୍ତି ସେ ସଂପର୍କରେ ସଂଧାନ ଦେବା ହେଉଛନ୍ତି ଏ ଲେଖାର ଉଦ୍ଦେଶ୍ୟ ।

ପ୍ରଫେସର ସାହୁଙ୍କୁ ଜଣେ କୃତବିଦ୍ୟ ଶିକ୍ଷକ ଭାବରେ ମୁଁ ଜାଣେ । ଭାଷା ଓ ଭାଷାତତ୍ତ୍ୱର ଶିକ୍ଷକ ଭାବରେ ପରିଚିତଥିଲେ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ମହଲରେ ନିଜର କଠୋର ପରିଶ୍ରମ ଓ ନିଷ୍ଠାଯୋଗୁ ସେ ଓଡ଼ିଆଭାଷା ସମେତ ଇଂରାଜୀ, ସଂସ୍କୃତ, ବଂଗଳା, ଆସାମୀ ଓ ଭୋଜପୁରୀ ପ୍ରଭୃତିରେ ପାରଦର୍ଶିତା ଲାଭ କରିଥିଲେ । ମୁଁ ରେଭେନ୍ସା କଲେଜରେ ପାଠ ପଢ଼ିଲାବେଳେ ମୋର ଯେଉଁ ବଂଧୁମାନେ ବାଣୀବିହାରରେ ପାଠପଢୁଥିଲେ ସେମାନଙ୍କଠାରୁ ଡକ୍ଟର ସାହୁଙ୍କର ଶିକ୍ଷାଦାନ ପଦ୍ଧତି ସଂପର୍କରେ ମୁଁ ଶୁଣିଥିଲି ଓ ତାଙ୍କ ସଂପର୍କରେ ଆସିଥିଲି । ପରେ ୧୯୯୯ ମସିହାବେଳକୁ ବାଣୀବିହାରରେ ଅଧ୍ୟାପକ ଭାବରେ ଯୋଗଦେଲା ପରେ ତାଙ୍କ ସହ ଅଳ୍ପ କିଛିକାଳ କାମ କରିବାର ସୁଯୋଗ ମତେ ମିଳିଥିଲା । ତାଙ୍କର ଗୋଟିଏ ଖୁବ୍ ଭଲ ଗୁଣ ମତେ ପ୍ରଭାବିତ କରିଥିଲା ସେତେବେଳେ, ତାହା ହେଲା ଛାତ୍ରଛାତ୍ରୀମାନଙ୍କୁ କ୍ଲାସରୁମ୍‌ରେ ଶିକ୍ଷା ଦେଲାବେଳେ ବିଷୟବସ୍ତୁ ସହ ନିମଜ୍ଜିତ ହେବା ଓ ପଠିତ ବିଷୟକୁ ପ୍ରଭାବଶାଳୀ ଢଂଗରେ ପହଂଚିବା ପାଇଁ ଉଦ୍ୟମ କରିବା । ଡକ୍ଟର ସାହୁଙ୍କର ନିଷ୍ଠାପର ଭାଷାତତ୍ତ୍ୱ ଅଧ୍ୟୟନ ଓ ଅଧ୍ୟାପନାର ଫଳଶ୍ରୁତି ହେଉଛି ତାଙ୍କର ପାଞ୍ଚଖଣ୍ଡି ପ୍ରକାଶିତ

ଭାଷାବିଜ୍ଞାନ ଆଧାରିତ ଗ୍ରନ୍ଥ । ସେଗୁଡ଼ିକ ହେଲା 'ଭାଷାବିଜ୍ଞାନୀର ରୂପରେଖ', 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ', 'ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା', 'ଭାଷା ବିଜ୍ଞାନ ଓ ଭାଷାବିଜ୍ଞାନୀ ଓ ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ ।' ଭାଷାନୁଶୀଳନ ସଂପର୍କୀୟ ଏହି ପାଞ୍ଚଖଣ୍ଡ ଗ୍ରନ୍ଥକୁ ଯଦି ଆଲୋଚନା କରାଯିବ ତା'ହେଲେ ଜଣାପଡ଼ିବ ଯେ ଭାଷାତତ୍ତ୍ୱବିଦ୍ ଡଃ ସାହୁ ଏଗୁଡ଼ିକରେ ନିଜକୁ ଜଣେ ଐତିହାସିକ ଭାଷାବିଜ୍ଞାନୀ ଭାବରେ ପରିଚିତ କରାଇଛନ୍ତି ।

ଐତିହାସିକ ଭାଷାବିଜ୍ଞାନୀର କାର୍ଯ୍ୟ ପ୍ରକୃତରେ ଖୁବ୍ ମହତ୍ତ୍ୱପୂର୍ଣ୍ଣ । ଐତିହାସିକ ଭାଷାବିଜ୍ଞାନୀ ଯେଉଁ ତଥ୍ୟ ଓ ଉପାଦାନର ତଥା ଭାଷା ସଂଗଠନର (Language Structure) ନକ୍ସା ତିଆରି କରେ ତା' ଉପରେ ଗଢ଼ିଉଠେ ତୁଳନାତ୍ମକ ଭାଷାବିଜ୍ଞାନୀ ବା Comparative Linguistics ଓ generative Linguistics ।

'ଭାଷାବିଜ୍ଞାନର ରୂପରେଖ' ଗ୍ରନ୍ଥଟିରେ ପ୍ରଫେସର ସାହୁ ଭାଷାର ଶ୍ରେଣୀ ବିଭାଜନ, ଲିପିର ବିକାଶଧାରା, ଧ୍ୱନି ପରିବହନର ରୂପ ପୁଣି ଭାଷାର ପାଞ୍ଚଗୋଟି ଉପାଦାନ ଯଥା- ଧ୍ୱନି, ଶବ୍ଦ, ଅର୍ଥ, ବାକ୍ୟ ଓ ରୂପକୁ ବିଶ୍ଳେଷଣ କରିଛନ୍ତି । ସମଗ୍ର ଭାଷାବିଜ୍ଞାନୀର ଗ୍ରନ୍ଥଟିରେ ହିଁ ପ୍ରତିଭାତ ହୋଇଛି ଐତିହାସିକ ଭାଷାବିଜ୍ଞାନୀର ଅନୁଶୀଳନ ।

'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ' ପୁସ୍ତକରେ ସେ ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି । ଇଣ୍ଡୋୟୁରୋପୀୟ ଭାଷା ପରିବାର ଅନ୍ତର୍ଗତ ଭାରତୀୟ ଆର୍ଯ୍ୟଭାଷାର ତିନିଗୋଟି ସ୍ତର ସଂପର୍କରେ ଉକ୍ତ ଗ୍ରନ୍ଥରେ ପ୍ରଫେସ ସାହୁ ସୂଚନା ଦେବା ସଂଗେ ସଂଗେ ଏହି ତିନିଗୋଟି ସ୍ତର ଅର୍ଥାତ୍ ପ୍ରାଚୀନ ଭାରତୀୟ ଆର୍ଯ୍ୟ ଭାଷା, ମଧ୍ୟ ଭାରତୀୟ ଆର୍ଯ୍ୟ ଭାଷା ଓ ନବୀନ ଭାରତୀୟ ଆର୍ଯ୍ୟ ଭାଷାର ସ୍ତର ଦେଇ ଓଡ଼ିଆ ଭାଷାର ବିକାଶ କିପରି ସାଧିତ ହୋଇଛି ତାହା ଏଥିରେ ପ୍ରତିପାଦିତ ହୋଇଛି । ଏହା ଫଳରେ ଇଣ୍ଡୋୟୁରୋପୀୟ ପରିବାରଭୁକ୍ତ ଶତମ୍ ବର୍ଗ ଅନ୍ତର୍ଗତ ଏହି ଭାରତୀୟ ଆର୍ଯ୍ୟଭାଷାର ବାହ୍ୟସ୍ତର ଓ ଅନ୍ତର୍ନିହିତ ସ୍ତରର ପର୍ଯ୍ୟାଲୋଚନା ଲମ୍ବି ଆସିଛି ସଂସ୍କୃତ, ପାଲି, ପ୍ରାକୃତ, ଅପଭ୍ରଂଶ, ପ୍ରାଚୀନକାଳ, ମଧ୍ୟକାଳ ଦେଇ ଆଧୁନିକ କାଳ ପର୍ଯ୍ୟନ୍ତ । ଓଡ଼ିଆ ଭାଷାର ଐତିହାସିକ ଅଧ୍ୟୟନ ବିଜ୍ଞାନୀ ସମ୍ମତ ଦୃଷ୍ଟିକୋଣରୁ ଏଥିରେ ଯେପରି ହୋଇଛି ତାହା ଲକ୍ଷ୍ୟ କରିବାର କଥା । ଏହି ଗ୍ରନ୍ଥରେ ଓଡ଼ିଆ ଭାଷାର ବାହ୍ୟଗଢ଼ଣ ଲିପି ସଂପର୍କରେ ତଥା ତାର ଐତିହାସିକ ବିବର୍ତ୍ତନ ସଂପର୍କରେ ମଧ୍ୟ ଅନୁଶୀଳନମାନ ରହିଛି । ଓଡ଼ିଆ ଭାଷା ସହିତ ସଂସ୍କୃତ, ପାଲି, ପ୍ରାକୃତ, ଅପଭ୍ରଂଶ ପୁଣି ଯାବନିକ, ଦ୍ରାବିଡ଼, ପର୍ତ୍ତୁଗୀଜ, ଇଂରାଜୀ ଓ ଆଦିବାସୀ ଭାଷାର ସଂପର୍କ ଆଦିକୁ ଏଥିରେ ମଧ୍ୟ କଳନା କରାଯାଇଛି । ମୋଟ ଉପରେ (Lingusitic Palacontology) ଦୃଷ୍ଟିରୁ ଏ ଗ୍ରନ୍ଥର ଚର୍ଚ୍ଚା ଆମର ଭାଷାତାତ୍ତ୍ୱିକ ପରଂପରା ହେବା ଉଚିତ୍ ।

ଓଡ଼ିଆ ଶବ୍ଦମାନଙ୍କର ଅଧ୍ୟୟନ ଦୃଷ୍ଟିରୁ ପ୍ରଫେସର ସାହୁଙ୍କର 'ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ' ଗୋଟିଏ ଉପାଦେୟଗ୍ରନ୍ଥ । ଏହି ଗ୍ରନ୍ଥର ପ୍ରଥମ ପରିଚ୍ଛେଦରେ ସେ ଓଡ଼ିଆ ଧ୍ୱନିର ବିବର୍ତ୍ତନ ସଂପର୍କରେ ଚର୍ଚ୍ଚା କରିବା ସଂଗେସଂଗେ ଦ୍ୱିତୀୟ ପରିଚ୍ଛେଦରେ ସେ ଓଡ଼ିଆ ଶବ୍ଦ ଭଣ୍ଡାରର ପରିଚୟ ଓ ବିଭାଗୀକରଣ ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି । ପରବର୍ତ୍ତୀ ସାତଗୋଟି ଅଧ୍ୟାୟରେ ସେ ଓଡ଼ିଆ ତତ୍ସମ ଶବ୍ଦ, ତଦ୍‌ଭବ ଶବ୍ଦ, ଅର୍ଦ୍ଧତତ୍ସମ ଶବ୍ଦ, ବୈଦେଶିକ ଶବ୍ଦ ଓ ଦେଶଜ ତଥା ଅବ୍ୟୁତ୍ପନ୍ନ ଶବ୍ଦଗୁଡ଼ିକ ସଂପର୍କରେ ବ୍ୟାପକ ଆଲୋଚନା ପ୍ରସ୍ତୁତ କରିଛନ୍ତି । ଓଡ଼ିଆ ଭାଷା ଉପରେ ବୈଦେଶିକ ଭାଷାର ପ୍ରଭାବ ଥିଲା ପ୍ରଫେସର ସାହୁଙ୍କ ଗବେଷଣା ନିବଂଧ । ଗ୍ରନ୍ଥଟି ଏଯାବତ୍ ଅପ୍ରକାଶିତ ହେଲେ ମଧ୍ୟ ଜଣାପଡୁଛି ଯେ ଆଲୋଚ୍ୟଗ୍ରନ୍ଥରେ ଶବ୍ଦ ଅଧ୍ୟୟନର ପ୍ରାସଂଗିକତା ଓ ଐତିହାସିକ ବିଚାର ପଦ୍ଧତି ଯେପରି ଅନୁସୃତ ହୋଇଛି ସେଥିରେ ସେହିପରି ଦୃଷ୍ଟିକୋଣ ଡଃ ସାହୁ ପ୍ରକଟ କରିଥିବେ । ଭାଷାର ଶବ୍ଦାବଳୀର ଅଧ୍ୟୟନ ବେଶ୍ କୌତୁହଳୋଦ୍ଦୀପକ । ଶବ୍ଦଗୁଡ଼ିକର ବାହ୍ୟ ଗଢ଼ଣରେ ପରିବର୍ତ୍ତନ ପୁଣି ତାର ପ୍ରଚଳନରେ ଯେଉଁ ପରିବର୍ତ୍ତନମାନ ସଂଘଟିତ ହେଉଛି ତାକୁ ଖିଅ ରୂପେ ଧରି ଭାଷାର ବିଶ୍ଳେଷଣ କରାଗଲେ କୌଣସି ଜାତିର ସାମାଜିକ ଓ ସାଂସ୍କୃତିକ ଇତିହାସ ନିର୍ମାଣ ସହଜ ହୋଇପାରିବ । ଆମ ଭାଷାର ଶବ୍ଦାବଳୀ ଗୁଡ଼ିକର ଅନୁଧ୍ୟାନ ଓ ଅନୁଶୀଳନ ପାଇଁ ଡକ୍ଟର ସାହୁ ଯେଉଁ ନିଷ୍ଠା ଦେଖାଇଛନ୍ତି ସେଥିପାଇଁ ସେ ଆମ ଭାଷାଲୋଚନାର ପରଂପରାରେ ନିଜର ସ୍ୱାତନ୍ତ୍ର୍ୟ ବାଛି ନେଇଛନ୍ତି ।

'ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ'ର ଶେଷ ଅଧ୍ୟାୟରେ ଓଡ଼ିଆ ଦେଶଜ ଶବ୍ଦଗୁଡ଼ିକ ସଂପର୍କରେ ପ୍ରଫେସର ସାହୁ ଯେଉଁ ବିବରଣୀ ଦେଇଛନ୍ତି- ତାହା ତାଙ୍କର ଭାଷା ସଂପର୍କୀୟ କୌତୁହଳ ଓ ଅନୁସଂଧନାର ସୂଚନା ଦିଏ । ଉକ୍ତ ଗ୍ରନ୍ଥର ଉପସଂହାରରେ ସେ କହିଛନ୍ତି- ''ଦିଆଯାଇଥିବା ଶବ୍ଦ ଗୁଡ଼ିକ ମଧ୍ୟରୁ କେତେକ ଅଷ୍ଟ୍ରିକ୍ ଓ ଦ୍ରାବିଡ଼ ଗୋଷ୍ଠୀର ଭାଷାରୁ ଆହୃତ ହୋଇଥାଇପାରେ । ଏ ସଂପର୍କରେ ନିରବଚ୍ଛିନ୍ନ ଗବେଷଣା ଆବଶ୍ୟକ । କେତେକ ବିଦେଶୀ ଶବ୍ଦ ମଧ୍ୟ ଅପରିଚିତ ରହି ଓଡ଼ିଆରେ ଦେଶଜ ଶବ୍ଦ ଭାବରେ ବିବେଚିତ ହେଉଥିବେ । ଏପରି ଅନେକ ଶବ୍ଦ ପୂର୍ଣ୍ଣଚନ୍ଦ୍ର ଭାଷା ଶେଷରେ ଦେଶଜ ଭାବରେ ନିର୍ଦ୍ଦେଶିତ ହୋଇଛି । ଏହି ଦେଶଜ ବା ଅବ୍ୟୁତ୍ପନ୍ନ ଭାବରେ ସଂପ୍ରତି ଅଭିହିତ ଶବ୍ଦଗୁଡ଼ିକ ଭାରତୀୟ ଅନ୍ୟ ଭାଷାମାନଙ୍କରେ ପ୍ରଚଳିତ ହେଉଛି କି ନାହିଁ ଅନୁସଂଧାନ କରିବାକୁ ହେବ । ଓଡ଼ିଆ ଭାଷା ତତ୍ସମ, ତଦ୍‌ଭବ, ଅର୍ଦ୍ଧ ତତ୍ସମ ବୈଦେଶିକ ଓ ଅବ୍ୟୁତ୍ପନ୍ନ (ଦେଶଜ) ଶବ୍ଦ ସମ୍ଭାରରେ ସମୃଦ୍ଧ ହୋଇଅଛି । ଭାଷା ଏକ ଚିରସ୍ରୋତା ସ୍ରୋତସ୍ୱିନୀ । ଓଡ଼ିଆ ଭାଷା ସେହିପରି ବହୁ ଧାରାର ସମନ୍ୱୟ ଓ ସମୀକରଣରେ ଆଜି ଏକ ସମୃଦ୍ଧ ଭାଷାରେ ପରିଣତ ହୋଇଅଛି ।''

'ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟ' ଭାଷା ଗ୍ରନ୍ଥରେ ଭାଷାତତ୍ତ୍ୱବିଦ୍

ପ୍ରଫେସର ସାହୁ ପୃଥିବୀର ଭାଷାଗୋଷ୍ଠୀକୁ ଆକୃତିଗତ ଓ ପାରିବାରିକ ଦୃଷ୍ଟିକୋଣରୁ ବିଭାଜନ କରି ସେଗୁଡ଼ିକର ବୈଶିଷ୍ଟ୍ୟ ନିରୂପଣ କରିଛନ୍ତି । ଏ ପ୍ରସଂଗରେ ସେ A.R.Rudlof Hoernle ଓ Grienson ଙ୍କର ଅନ୍ତରଂଗ ବହିଃରଂଗ ଓ କେନ୍ଦ୍ରୀୟ ବିଭାଜନର ସ୍ୱରୂପକୁ ମଧ୍ୟ ଆଲୋଚନା କରିଛନ୍ତି ।

'ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ' ଗ୍ରନ୍ଥରେ ଭାଷା ଓ ଉପଭାଷାର ପରିଚୟ ସଂଗକୁ ଏହାର ଶ୍ରେଣୀ ବିଭାଗ, ଭାଷା ଓ ଅର୍ଥ ପରିବର୍ତ୍ତନ ସଂପର୍କରେ ଆଲୋଚନାମାନ ସନ୍ନିବେଶିତ । ଏହାର ଉପାଦେୟ ଅଂଶଟି ହେଲା ଚତୁର୍ଥ ପରିଚ୍ଛେଦରେ ସ୍ଥାନ ପାଇଥିବା କେତେଜଣ ବିଶିଷ୍ଟ ଭାଷାବିଜ୍ଞାନୀଙ୍କ ସଂପର୍କରେ ଆଲୋଚନା । ପ୍ରଫେସର ସାହୁ ଏହି ଅଧ୍ୟାୟଟିରେ ପ୍ରାଚୀନ ଭାରତ ବର୍ଷର ଭାଷାବିଜ୍ଞାନୀ ପାଣିନି, ପତଞ୍ଜଳି ଓ କାତ୍ୟାୟନଙ୍କ ସଂପର୍କରେ ଚର୍ଚ୍ଚା କରିବା ସହିତ ଆଧୁନିକ କାଳର ଜନ୍ ବୀମସ୍, ଗ୍ରୀୟରସନ୍, ପଣ୍ଡିତ ଗୋପୀନାଥ ନନ୍ଦ ଓ ପଣ୍ଡିତ ନୀଳକଣ୍ଠଙ୍କ ସଂପର୍କରେ ଆଲୋଚନାମାନ କରିଛନ୍ତି । ସେମାନଙ୍କର ଅବଦାନ ଓଡ଼ିଆ ଭାଷା ଚର୍ଚ୍ଚାର ପରଂପରାକୁ କିପରି ସମୃଦ୍ଧ କରିଛି ତାହା ଦର୍ଶାଇବା ଲାଗି ସେ ନିଷ୍ଠାପର ଉଦ୍ୟମ ଏଥିରେ କରିଛନ୍ତି ।

ସାରସ୍ୱତ ସାଧକ ପ୍ରଫେସର ସାହୁ ଓଡ଼ିଆ ଭାଷା ଓ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛନ୍ତି । ଭାଷାବିଜ୍ଞାନ ଓ ଭାଷାଶାସ୍ତ୍ର ସଂପର୍କୀୟ ଆହୁରି ଅଧିକ ଆଲୋଚନା ତାଙ୍କଠାରୁ ଆଶାକରାଯାଉଥିବାବେଳେ ତାଙ୍କର ଦେହାନ୍ତ ଘଟିଲା । ଏହା ଆମର ଭାଷା ଓ ସାହିତ୍ୟ ପାଇଁ ଅପୂରଣୀୟ କ୍ଷତି ନିଶ୍ଚୟ । ଓଡ଼ିଆ ଭାଷା ଚର୍ଚ୍ଚାର ପରଂପରାରେ ତାଙ୍କର ଅବଦାନ ଯେ ଚିର ସ୍ମରଣୀୟ ହୋଇ ରହିବ ଏଥିରେ ସନ୍ଦେହ ନାହିଁ ।



# ପ୍ରଫେସର ବାସୁଦେବ ସାହୁଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ

ଡଃ ସୁରେନ୍ଦ୍ର ନାଥ ଦାଶ

ବିଂଶ ଶତକର ଷାଠିଏ ଉତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଯେଉଁ କେତେଜଣ ଯୋଗଜନ୍ମା ସାରସ୍ୱତ ସାଧକ ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ସେମାନଙ୍କ ମଧ୍ୟରେ ପ୍ରଫେସର ବାସୁଦେବ ସାହୁ ଅନ୍ୟତମ ।

ପିଲାଟି ଦିନରୁ ଶ୍ରୀଜଗନ୍ନାଥଙ୍କ ପ୍ରତି ପ୍ରଫେସର ସାହୁଙ୍କର ଥିଲା ଅଗାଧ ଭକ୍ତି । ବାଲ୍ୟାବସ୍ଥାରେ କୌଣସି ଏକ ଦୁରାରୋଗ୍ୟ ବ୍ୟାଧିର ପୀଡ଼ିତ ହୋଇ ମୃତ୍ୟୁବତ୍ ଯନ୍ତ୍ରଣା ଭୋଗୁଥିଲାବେଳେ ପିତାମାତା ତାଙ୍କୁ ଶ୍ରୀଜଗନ୍ନାଥଙ୍କ ନିକଟରେ ସମର୍ପି ଦେଇଥିଲେ । ମହାପ୍ରଭୁଙ୍କ କୃପାରୁ ସେ ଆରୋଗ୍ୟଲାଭ କଲାପରେ ସଂପୂର୍ଣ୍ଣ ପରିବାର ଶ୍ରୀଜଗନ୍ନାଥଙ୍କ ପ୍ରତି ଆକୃଷ୍ଟ ହୋଇଯାଇଥିଲେ ।

ଶ୍ରୀଜଗନ୍ନାଥ ଚେତନା ସର୍ବ ପୁରାତନ ଓ ପ୍ରାଚୀନ । ଶ୍ରୀଜଗନ୍ନାଥଙ୍କୁ ସମଗ୍ର ବିଶ୍ୱର ବିଭିନ୍ନ ଧର୍ମାବଲମ୍ବୀମାନେ ନିଜନିଜର ଦେବତା ବୋଲି ଗ୍ରହଣ କରିନେଇଛନ୍ତି । ବହୁ କବି, ଲେଖକ, ପ୍ରାବନ୍ଧିକ, କଥାଶିଳ୍ପୀ ଯୁଗ ଯୁଗ ଧରି ଶ୍ରୀଜଗନ୍ନାଥଙ୍କ ମହିମା ପ୍ରଖ୍ୟାପନ କରିବାରେ ନିଜକୁ ନିୟୋଜିତ କରି ଆସିଛନ୍ତି । ପ୍ରଫେସର ସାହୁ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଅଧ୍ୟାପକ ଥିବାବେଳେ ଶ୍ରୀ ଜଗନ୍ନାଥଙ୍କ ପ୍ରତି ବିଶେଷ ଆକୃଷ୍ଟ ହୋଇପଡ଼ିଥିଲେ । ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଓ ତାଙ୍କ ନାମ ସ୍ମରଣରେ ତାଙ୍କର ବହୁ ଅସୁବିଧା ମେଣ୍ଟିଯାଇଛି ।

ଶ୍ରୀଜଗନ୍ନାଥଙ୍କ ପ୍ରତି ଥିବା ଅତୁଟ ଭକ୍ତି ଓ ବିଶ୍ୱାସବୋଧର ଫଳସ୍ୱରୂପ ସେ ଉଚ୍ଚତର ଗବେଷଣା ପାଇଁ ବିଷୟ ଚୟନ କରିଥିଲେ-''ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା'' ଓ ''ଶ୍ରୀଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ'' । ଶ୍ରୀ ଜଗନ୍ନାଥ ଚେତନାର ପ୍ରଚାର ଓ ପ୍ରସାର ତଥା ତାତ୍ତ୍ୱିକ ଓ ତଥ୍ୟଭିତ୍ତିକ ଆଲୋଚନା ଲାଗି ଏହା ଏକ ଅମୂଲ୍ୟ ଓ ଉପାଦେୟ ପୁସ୍ତକ ।

ପ୍ରଫେସର ସାହୁ ଶ୍ରୀଜଗନ୍ନାଥଙ୍କ ପ୍ରାଚୀନ ଐତିହ୍ୟ, ବେଦ, ଉପନିଷଦ ପୁରାଣ ପ୍ରଭୃତି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଶ୍ରୀ ଜଗନ୍ନାଥଙ୍କ ସଂପର୍କରେ ସୂଚନା ଦେଇ ଓଡ଼ିଶାରେ ମାଧବ, ନୀଳମାଧବ ଓ ଶ୍ରୀଜଗନ୍ନାଥ, ନାରାୟଣ, ଶବରୀନାରାୟଣ, ସ୍ତମ୍ଭେଶ୍ୱରୀ ଉପାସନା ସଂପର୍କରେ ମୌଳିକ ତଥ୍ୟ ଉପସ୍ଥାପନା କରିଛନ୍ତି ।

ପ୍ରଫେସର ସାହୁ ସେହି ଗ୍ରନ୍ଥରେ ଶ୍ରୀଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ଦର୍ଶାଇବାକୁ ଯାଇ ଆଦିବାସୀ, ଜୈନ, ବୌଦ୍ଧ, ବ୍ରାହ୍ମଣ୍ୟ ସଂସ୍କୃତିର ପ୍ରାଧାନ୍ୟ ଦର୍ଶାଇବା ସଂଗେସଂଗେ ଶ୍ରୀଜଗନ୍ନାଥଙ୍କ ସହିତ ମାଧବ, ନୀଳମାଧବ, କୃଷ୍ଣ, ନାରାୟଣ, ନୃସିଂହ, ଶ୍ରୀରାମ, ଶିବ, ଶକ୍ତି, ସୂର୍ଯ୍ୟ ଏବଂ ଗଣେଶ ପ୍ରଭୃତିଙ୍କର ସଂପୃକ୍ତିକୁ ବିଶ୍ଳେଷଣ କରିଛନ୍ତି ।

କିମ୍ବଦନ୍ତୀ ଅନୁଯାୟୀ ବିଶ୍ୱାବସୁ ଶବର ଏକ ମୂର୍ତ୍ତି ପୂଜା କରୁଥିଲେ । ଅଷ୍ଟମ ଶତାବ୍ଦୀରେ 'ଜ୍ଞାନସିଦ୍ଧି' ଓ 'ପ୍ରଜ୍ଞୋପ୍ରାୟ ବିନିଶ୍ଚୟ ସିଦ୍ଧି'' ପ୍ରଭୃତି ଗ୍ରନ୍ଥରେ କେବଳ ଜଗନ୍ନାଥଙ୍କୁ ସ୍ତୁତି କରାଯାଇଛି । ନବମ ଶତାବ୍ଦୀର 'ଅନର୍ଘ ରାଘବ' ନାଟକ, ଦଶମ ଶତାବ୍ଦୀରେ ମଧ୍ୟପ୍ରଦେଶର ସତ୍ନା ଜିଲ୍ଲାରୁ ପ୍ରାପ୍ତ ଶିଳାଲେଖ ଓ 'ପ୍ରବୋଧ ଚନ୍ଦ୍ରୋଦୟ ନାଟକ' ଓ ୧୧୩୭ ଖ୍ରୀଷ୍ଟାବ୍ଦର ଗୋବିନ୍ଦପୁର ଦାନପତ୍ର ପ୍ରଭୃତିରେ କେବଳ ପୁରୁଷୋତ୍ତମଙ୍କର ନାମ ଉଲ୍ଲେଖ ଅଛି । ମାତ୍ର ବଳଭଦ୍ର ବା ଦେବୀ ସୁଭଦ୍ରାଙ୍କ ଉଲ୍ଲେଖ ନାହିଁ । ତେଣୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ତ୍ରିମୂର୍ତ୍ତିଙ୍କର ଅସ୍ତିତ୍ୱ ସଂପର୍କରେ କୌଣସି ବଳିଷ୍ଠ ଐତିହାସିକ ପ୍ରମାଣ ନାହିଁ ।

ବିଶିଷ୍ଟ ଗବେଷକ ପ୍ରଭାତ ମୁଖାର୍ଜୀଙ୍କ ମତରେ ସହମତ ହୋଇ ପ୍ରଫେସର ସାହୁ ମତ ଦେଇଛନ୍ତି ଯେ-ତ୍ରୟୋଦଶ ଶତାବ୍ଦୀରେ ଶ୍ରୀ ସଂପ୍ରଦାୟର ପ୍ରାଧାନ୍ୟ ହ୍ରାସ ପାଇଲା ପରେ ବୌଦ୍ଧ ଓ ବୈଷ୍ଣବ ସଂପ୍ରଦାୟ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ପରେ ରମାଇ ପଣ୍ଡିତଙ୍କ ଦ୍ୱାରା ଧର୍ମପୂଜା ବିଧାନ ସୃଷ୍ଟି ହେଲା ଓ ବୌଦ୍ଧ ବ୍ରାହ୍ମଣ୍ୟଧର୍ମ ମଧ୍ୟରେ ସମନ୍ୱୟ ସଂଘଟିତ ହେଲା । ସେତିକିବେଳେ ଶ୍ରୀଜଗନ୍ନାଥ ବୁଦ୍ଧ ରୂପରେ ସ୍ଥାନ ପାଇଲେ ଏବଂ ତାଙ୍କ ସହିତ ବଳଭଦ୍ର ଏବଂ ସୁଭଦ୍ରା ଦେବୀଙ୍କୁ ସଂଯୋଗ କରାଗଲା । ଏହି ଶତାବ୍ଦୀରେ ଏହି ତ୍ରୟୀଭାବନା ଭାଗବତ ସଂପ୍ରଦାୟ ଦ୍ୱାରା ମୁଣ୍ଡ ଟେକିଲା, ଫଳରେ ଅନନ୍ତ ବାସୁଦେବ ମନ୍ଦିରରେ ପ୍ରତିଷ୍ଠିତ ହେଲେ ଅନନ୍ତ, ବାସୁଦେବ ଏବଂ ସୁଭଦ୍ରା । କୋଣାର୍କରେ ପ୍ରତିଷ୍ଠିତ ହେଲେ କୃଷ୍ଣବାସୁଦେବ, ଶିବ ଏବଂ ଦେବୀ ଦୁର୍ଗା । ଯଦିଓ ଆଗରୁ ସୃଷ୍ଟି, ସ୍ଥିତି ଓ ପ୍ରଳୟର ଦେବତା ରୂପରେ ବ୍ରହ୍ମା, ବିଷ୍ଣୁ ଏବଂ ମହେଶ୍ୱରଙ୍କର କଳ୍ପନା କରାଯାଇଛି । ଓଡ଼ିଶାରେ ବୈଷ୍ଣବଧର୍ମର ଦୀର୍ଘ ପରଂପରା ଓ ବଳିଷ୍ଠ ପ୍ରଭାବ ଜୈନ ତ୍ରିରତ୍ନକୁ ବୈଷ୍ଣବଧର୍ମର ତ୍ରିଦେବତାରେ ପରିଣତ କରିଦେଇଛି । ବିଭିନ୍ନ ଧର୍ମର ସମନ୍ୱୟ ଫଳରେ ଭାରତରେ ବିଭିନ୍ନ ଅଞ୍ଚଳର ଧର୍ମପ୍ରଚାରକମାନେ ଏହି ଧର୍ମକୁ ଆକୃଷ୍ଟ ହୋଇ ଆସିଛନ୍ତି । ସକଳ ସମନ୍ୱୟ ସତ୍ତ୍ୱେ ବୈଷ୍ଣବଧର୍ମର ପ୍ରାଧାନ୍ୟ ଫଳରେ ଏହି ଧାମ-ପୁରୁଷୋତ୍ତମ କ୍ଷେତ୍ର ଭାବରେ ଏବଂ ଦେବତା ପୁରୁଷୋତ୍ତମ ଭାବରେ ମଧ୍ୟ ଅଭିହିତ ହୋଇଛନ୍ତି । ଓଡ଼ିଶାରେ ପ୍ରଚଳିତ ମହାଯାନ ଓ ବଜ୍ରଯାନ, ବୌଦ୍ଧଧର୍ମର ଦର୍ଶନ ଏବଂ ତନ୍ତ୍ର ସଙ୍ଗରେ ଶଙ୍କରଙ୍କର ଅଦ୍ୱୈତ, ରାମାନୁଜଙ୍କର ବିଶିଷ୍ଟାଦ୍ୱୈତ, ନିମ୍ବାର୍କଙ୍କର ଦ୍ୱୈତ, ମାଧ୍ୱାଚର୍ଯ୍ୟଙ୍କର ଦ୍ୱୈତାଦ୍ୱୈତ ଓ ଶ୍ରୀଚୈତନ୍ୟଙ୍କର ଅଚିନ୍ତ୍ୟ ଭେଦାଭେଦ ବା ଅଚିନ୍ତ୍ୟ ଦ୍ୱୈତାଦ୍ୱୈତ ଦର୍ଶନର ବିଚିତ୍ର ମିଶ୍ରଣରେ ଗଢ଼ିଉଠିଛି ଅନନ୍ୟ ଏବଂ ସ୍ୱତନ୍ତ୍ର ଶ୍ରୀଜଗନ୍ନାଥ ସଂସ୍କୃତି । ପ୍ରକୃତରେ

ଶ୍ରୀଜଗନ୍ନାଥ ଅତୀବ ରହସ୍ୟମୟ ଏବଂ ଏହି ରହସ୍ୟମୟତାରେ ହିଁ ତାଙ୍କର ଅପରିମେୟ ମହତ୍ତ୍ୱ ନିହିତ ।

ଓଡ଼ିଶାର ପ୍ରାଚୀନ ସଂସ୍କୃତ ସାହିତ୍ୟ, ବିଭିନ୍ନ ଶିଳାଲେଖ, ଲୋକସାହିତ୍ୟ, ପୌରାଣିକ ଉପାଖ୍ୟାନ ଓ କିମ୍ବଦନ୍ତୀରେ ଶ୍ରୀ ଜଗନ୍ନାଥଙ୍କ ସ୍ୱରୂପ ଉଦ୍‌ଘାଟିତ ହୋଇଛି । ଏଠାରେ ପ୍ରଭୁ ଶ୍ରୀଜଗନ୍ନାଥ ସକଳ ଘଟେ 'ଜୀବବ୍ରହ୍ମ' ବା 'ଜୀବାତ୍ମା' ରୂପରେ ବିରାଜିତ । ସେ ପୁଣି ଅନନ୍ତ, ଅଣାକାର ଓ ସାର୍ବଭୌମ ।

ସେ ଶ୍ରୀକୃଷ୍ଣଙ୍କୁ ଶ୍ରୀଜଗନ୍ନାଥ ରୂପରେ ଅଭିହିତ କରିଛନ୍ତି । ଅନେକ ସ୍ଥାନରେ ସେ କୃଷ୍ଣଙ୍କ ସ୍ଥାନରେ ଶ୍ରୀଜଗନ୍ନାଥଙ୍କ ନାମ ପ୍ରୟୋଗ କରିଛନ୍ତି । ତାଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ହେଉଛନ୍ତି ଅବତାରୀ । ଦଶଅବତାର ସ୍ରଷ୍ଟା ଅଣାକାର ବିଷ୍ଣୁ ଭାବରେ ଦେବନାଶନ ବଟମୂଳରେ ସେ ବିରାଜିତ । ଶ୍ରୀଜଗନ୍ନାଥ, ବୁଦ୍ଧ, କୃଷ୍ଣ ଓ ଶ୍ରୀରାମ ମଧ୍ୟରେ ଅଭିନ୍ନତା ବର୍ଣ୍ଣନା କରି ଜଗନ୍ନାଥଙ୍କର ଅନ୍ୟଏକ ରୂପ 'ଦଧିବାମନ' ମୂର୍ତ୍ତିତତ୍ତ୍ୱର ପରିକଳ୍ପନା କରିଛନ୍ତି । ପରବର୍ତ୍ତୀ କାଳରେ ବଳରାମ ଦାସଙ୍କ ଜଗମୋହନ ରାମାୟଣ, ବେଦାନ୍ତସାର ଗୁପ୍ତଗୀତା, ଭାବସମୁଦ୍ର, ବଟ ଅବକାଶ, ବ୍ରହ୍ମାଣ୍ଡ ଭୂଗୋଳ, ବେଢ଼ା ପରିକ୍ରମା, ଲକ୍ଷ୍ମୀପୁରାଣ, ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ, ଦାରୁବ୍ରହ୍ମଗୀତା, ନିତ୍ୟନୀଳାଦ୍ରିବିଳାସ, ତୁଳାଭିଣା, ଶ୍ରୀଗୁଣ୍ଡିଚା ବିଜୟ, ଅଚ୍ୟୁତାନନ୍ଦଙ୍କ ହରିବଂଶ, ଶୂନ୍ୟ ସଂହିତା, ନିତ୍ୟରାହାସ, ଅଷ୍ଟଗୁଜରୀ, ଯଶୋବନ୍ତଙ୍କ ପ୍ରେମଭକ୍ତି ବ୍ରହ୍ମଗୀତା, ଶ୍ରୀକ୍ଷେତ୍ର ମାହାତ୍ମ୍ୟ, ଶିଶୁଅନନ୍ତଙ୍କର ହେତୁଉଦୟ ଭାଗବତ, ଗୁପ୍ତଗୀତା ପ୍ରଭୃତିରେ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟପରଂବ୍ରହ୍ମ, ଶ୍ରୀକୃଷ୍ଣ ଓ ବୁଦ୍ଧଙ୍କ ସହିତ ସମାନ ଭାବରେ ଚିତ୍ରଣ କରାଯାଇଛି । ପଞ୍ଚସଖାଙ୍କ ମତରେ ଜ୍ୟୋତିର୍ବ୍ରହ୍ମ ବା ଏକାକ୍ଷର ବ୍ରହ୍ମ 'ଓଁ' ନାମ ହେଉଛି ହରେ ରାମ ହରେ କୃଷ୍ଣର ମୂଳତତ୍ତ୍ୱ । ଏହି ଏକାକ୍ଷର ବ୍ରହ୍ମ ସ୍ୱୟଂ ନିରଞ୍ଜନ । ହରେ ପଦରେ ଥିବା 'ହ' ହେଉଛି ଜଗନ୍ନାଥ ବା କୃଷ୍ଣ । ସେ ନୀଳାଚଳ ନିତ୍ୟଧାମରେ ଦାରୁବ୍ରହ୍ମ ରୂପରେ ବିରାଜିତ । 'ର' ହେଉଛି ରାଧା, ନୀଳାଚଳରେ ଜଗନ୍ନାଥଙ୍କ ସହିତ ଏକାଙ୍ଗ ହୋଇ ବିହାର କରୁଛନ୍ତି ।

ମଧ୍ୟଯୁଗୀୟ କବି ଈଶ୍ୱରଦାସଙ୍କ ଶ୍ରୀଚୈତନ୍ୟ ଭାଗବତ, ଚୈତନ୍ୟ ଦାସଙ୍କ ନିର୍ଗୁଣ ଭାଗବତ, ଶିଖର ଦାସଙ୍କର ନୀଳସୁନ୍ଦର ଗୀତା, ଭୂପତି ପଣ୍ଡିତଙ୍କ ପ୍ରେମ ପଞ୍ଚାମୃତ, ଲୋକନାଥ ବିଦ୍ୟାଧରଙ୍କ ନୀଳାଦ୍ରି ମହୋତ୍ସବ, ଗୋପୀନାଥ ସିଂହଙ୍କର ନୀଳଗିରି ବିହାର, ନୀଳାମ୍ବର ଦାସଙ୍କର ଦେଉଳ ତୋଳା, ମାର୍ଗୁଣ ଦାସଙ୍କ ଦେଉଳତୋଳା, ପୁରୁଷୋତ୍ତମ ଦାସଙ୍କ ବାଳଧୂପ ବୋଲି, ମହାଦେବ ଦାସଙ୍କ ନୀଳାଦ୍ରି ମହୋଦୟ ପ୍ରଭୃତି ଗ୍ରନ୍ଥରେ ଶ୍ରୀକ୍ଷେତ୍ର, ଶ୍ରୀମନ୍ଦିର, ଶ୍ରୀଜଗନ୍ନାଥଙ୍କ ସଂପର୍କରେ ପୌରାଣିକ ଓ ଐତିହାସିକ ଭିତ୍ତିରେ ଆଲୋଚନା କରାଯାଇଛି । ଏଥିସହିତ ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା ସମସ୍ତ ଦେବାଦେବୀଙ୍କ ସଂପର୍କରେ ତାତ୍ତ୍ୱିକ ଆଲୋଚନା କରାଯାଇଛି ।

ରୀତିଯୁଗର କବି ଉପେନ୍ଦ୍ରଭଞ୍ଜଙ୍କ ବିଭିନ୍ନ କାବ୍ୟରେ ତାଙ୍କର ଜଗନ୍ନାଥଙ୍କ ପ୍ରଶସ୍ତି, ବାସ୍ତବ, ତାତ୍ତ୍ୱିକ ଓ ରସଘନ । ତାଙ୍କ ଦୃଷ୍ଟିରେ ଜଗନ୍ନାଥ ଶବ୍ଦରେ ରହିଛି ଦୁଇଟି ଯୁକ୍ତ ଶବ୍ଦ । 'ଜଗଦ୍' ଓ 'ନାଥ' । ଜଗଦ୍ ହେଉଛନ୍ତି ରାଧା ଏବଂ ନାଥ ହେଉଛନ୍ତି ଶ୍ରୀକୃଷ୍ଣ । ଜଗନ୍ନାଥ ହେଉଛନ୍ତି ରାଧାକୃଷ୍ଣଙ୍କର ଅଭିନ୍ନ ଯୁଗଳମୂର୍ତ୍ତି । ପୁଣି ଜଗନ୍ନାଥ ଶବ୍ଦର ଯୁକ୍ତାକ୍ଷର 'ନ୍ନ' (ଅନ୍ନ) ଟିରେ ରହିଛି ମହାନ ତତ୍ତ୍ୱ । ଶ୍ରୀଜଗନ୍ନାଥଙ୍କର ଅନ୍ନ ଅର୍ଥାତ୍ ମହାପ୍ରସାଦର ମହତ୍ତ୍ୱ କେବଳ ବୈଷ୍ଣବଗଣ ହିଁ ହୃଦୟଙ୍ଗମ କରିପାରୁଥିବେ, କାରଣ ଏହା ମୁକ୍ତି ପ୍ରଦାନ କରିଥାଏ । ଏଣୁ ଏହାର ଅନ୍ୟନାମ କୈବଲ୍ୟ (ମୁକ୍ତି) । କବି ଅଭିମନ୍ୟୁ ସାମନ୍ତ ସିଂହାର, ଭକ୍ତ ଚରଣ ଦାସ, ଦୀନକୃଷ୍ଣ ଦାସ, କବି ବଳଦେବ ରଥ ପ୍ରଭୃତିଙ୍କ ସୃଷ୍ଟି ସମ୍ଭାରରେ ଶ୍ରୀଜଗନ୍ନାଥ 'ରୀତିଯୁଗୀୟ କାବ୍ୟର ରସତତ୍ତ୍ୱକୁ ବହୁଳ ଭାବରେ ପ୍ରଭାବିତ ଓ ନିୟନ୍ତ୍ରିତ କରିଛନ୍ତି । ଏହି ଯୁଗର ସାହିତ୍ୟକୁ ସଂଯତ, ନିୟନ୍ତ୍ରିତ, ସଂଶୋଧିତ ଓ ଉଦ୍‌ବୁଦ୍ଧ କରିଛି ଶ୍ରୀଜଗନ୍ନାଥ ସଂସ୍କୃତି ।

ଶ୍ରୀଜଗନ୍ନାଥଙ୍କର ମହିମା, ରୂପ, ବେଶ ବିଭିନ୍ନ ଯାତ୍ରା, ସେବା ପୂଜା ବିଧି ଓ ଲୀଳା ସଂପର୍କରେ ବର୍ଣ୍ଣନା, ଅଭିମାନ, ଅଭିଯୋଗ, ଅନୁତାପ, ଅଭିଳାସ ଓ ସର୍ବୋପରି ଅନାବିଳ ଭକ୍ତି ମାଧ୍ୟମରେ ପ୍ରାଚୀନ ଓ ମଧ୍ୟଯୁଗର କବି ହୃଦୟରୁ, ଗଭୀରତମ ପ୍ରଦେଶରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ଭକ୍ତି ଅର୍ପଣ କରାଯାଇଛି ।

ପ୍ରାଚୀନ ଓ ମଧ୍ୟଯୁଗୀୟ ଭକ୍ତି ଗୀତିକାରଗଣ ଶ୍ରୀଜଗନ୍ନାଥଙ୍କୁ ଅରୂପ ଓ ସ୍ୱରୂପ ଉଭୟ ଭାବରେ ଦେଖିଛନ୍ତି । ପରମ ଆତ୍ମୀୟ ଭାବରେ ଶ୍ରୀଜଗନ୍ନାଥଙ୍କ ନିକଟରେ ଅଳି କରିଛନ୍ତି, ଅନୁରୋଧ କରିଛନ୍ତି, ଅଭିମାନ ଓ ଅଭିଯୋଗ କରିଛନ୍ତି । ସବୁରି ଭିତରେ ପ୍ରକଟିତ ହୋଇଛି ସେମାନଙ୍କ ଅନ୍ତର୍‌ର ଅନନ୍ତତମ ପ୍ରଦେଶର ଅନନ୍ତ ଭକ୍ତି ସ୍ରୋତ । ଏହି ଯୁଗର କବିମାନଙ୍କର ଦୃଷ୍ଟିରେ ଶ୍ରୀକ୍ଷେତ୍ରରେ ବୈରାଗୀର ଜୀବନ ଯାପନ ଇନ୍ଦ୍ରପଦଠାରୁ ଶ୍ରେୟସ୍କର । ଦାନା କନା ପଛେ ମନା ହୋଇଯାଉ, ନୀଳାଚଳ ବାନାକୁ ଚାହିଁବାର ସୌଭାଗ୍ୟ ଆନନ୍ଦବଜାରରେ ମଜାରେ ବୁଲି ହରେକୃଷ୍ଣ ନାମ ଗାଇ ଜଗନ୍ନାଥଙ୍କ ପ୍ରେମସାଗରରେ ମଜ୍ଜିଯିବାର ସୁଯୋଗ ମିଳୁ । ଶ୍ରୀରଙ୍ଗାଚରଣ ସେବାରେ ଜୀବନ ବିତିଯାଉ ।

କବି ନିରବଚ୍ଛିନ୍ନ ଓ ନିଷ୍ପାପର ଭାବରେ ପ୍ରଭୁଙ୍କର ଅନୁଗତ ଅଟନ୍ତି । ପ୍ରଭୁ ଯଦି କବିଙ୍କୁ ପର କରି ଦିଅନ୍ତି; ତେବେ ଅସହିଷ୍ଣୁ ଲୋକଙ୍କ ମୁଖରେ ଶୁଣାଯିବ ''ପ୍ରଭୁ ହେଲେ ଅନୁଗତ ମରା'' ସେ ତ ତ୍ରିତାପହରା, ମୁକ୍ତିପସରା, ଦୟାର ଅଗାଧ ସମୁଦ୍ର, ମହାମେରୁ, ଦୀନର ତ୍ରାଣକର୍ତ୍ତା ଦୀନବଂଧୁ, କୃପାସିନ୍ଧୁ । ସେ ଚାହିଁଲେ ଅନାୟାସରେ ଦୂବକୁ ଦାରୁ କରିପାରନ୍ତି । ଧ୍ରୁବ, ପ୍ରହ୍ଲାଦ, ଅଜାମିଳ, ଇନ୍ଦ୍ରା, ଅହଲ୍ୟା, ପିଙ୍ଗଳା, ଜାମ୍ବବାନ, ସୁଦାମା, ବିଦୂର, ଗୁରୁ ସନ୍ଦିପନୀ ଓ ଅନ୍ଧ ପ୍ରଭୃତିଙ୍କ ପ୍ରତି କରୁଣାରୁ ପ୍ରମାଣିତ ହୋଇଛି ଯେ ସେ ହେଉଛନ୍ତି ଅଭୟଦାତା ।

ପ୍ରାଚୀନ ଓ ମଧ୍ୟଯୁଗୀୟ କବିଙ୍କର ଏହି ପବିତ୍ର ଅଭିଳାଷ ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କର ଅକୃତ୍ରିମ ଓ ଐକାନ୍ତିକ ଭକ୍ତି ଆବେଗର ସ୍ପଷ୍ଟ ଓ ବ୍ୟାପକ ପରିଚୟ ।

ଆଧୁନିକ ଓଡ଼ିଆ ଗଦ୍ୟସାହିତ୍ୟର ବହୁମୁଖୀ ବିଭାଗ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ରଚିତ । ବିଶେଷ କରି ଶ୍ରୀଜଗନ୍ନାଥ ଚେତନା-ଭିତ୍ତିକ ଉପନ୍ୟାସ ମଧ୍ୟରେ ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ', 'ନୀଳାଦ୍ରିବିଜୟ', ଗୋପୀନାଥ ମହାନ୍ତିଙ୍କ 'ଲୟବିଲୟ', ଚନ୍ଦ୍ରଶେଖର ରଥଙ୍କର 'ଯନ୍ତ୍ରାରୂଢ଼', ଶାନ୍ତନୁ ଆଚାର୍ଯ୍ୟଙ୍କର 'ଶକୁନ୍ତଳା', ବ୍ରଜମୋହନ ମହାନ୍ତିଙ୍କର 'ଲଳିତ ଲବଙ୍ଗ ଲତା'-ଏହିସବୁ ଉପନ୍ୟାସଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତି ସତ୍ୟ-ଶିବ-ସୁନ୍ଦର, ଜୀବ-ପରମ-ପ୍ରକୃତି, ଦୟା-କ୍ଷମା-ଶାନ୍ତି, ବୁଦ୍ଧି-ବିବେକ-ପ୍ରଜ୍ଞାର ପ୍ରତୀକ ଭାବରେ ବର୍ଣ୍ଣିତ ହୋଇଛନ୍ତି ।

ଗାଳ୍ପିକ ଗଣେଶ ପ୍ରସାଦ ପରିଡ଼ା, ବଳରାମ ମିଶ୍ର, ବ୍ରଜକିଶୋର ସାହୁ, ବ୍ରଜମୋହନ ମହାନ୍ତି, ନିମାଁଇ ପଟ୍ଟନାୟକ, ଚନ୍ଦ୍ରଶେଖର ରଥ, ମହାପାତ୍ର ନୀଳମଣି ସାହୁ ପ୍ରଭୃତିଙ୍କ ଗଳ୍ପଗୁଡ଼ିକରେ ସେହି ଭକ୍ତବତ୍ସଳ ଶ୍ରୀଜଗନ୍ନାଥଙ୍କୁ ଭକ୍ତିର ସହିତ ସମ୍ବୋଧନ କରି ତାଙ୍କର ମହିମାଗାନ କରିବା ସଂଗେସଂଗେ ମାନବ ହୃଦୟରେ ଶାନ୍ତିର ଅମୃତଧାରା ବର୍ଷଣ କରିବା ପାଇଁ ଅନୁରୋଧ କରିଛନ୍ତି ।

ଏହାବ୍ୟତୀତ ପୁରାଣ, କିମ୍ବଦନ୍ତୀ, ଇତିହାସକୁ ଭିତ୍ତିକରି ପ୍ରଫେସର ବାସୁଦେବ ସାହୁଙ୍କର 'ଭକ୍ତର ଭଗବାନ', 'ମୁକତି ମାର୍ଗେ ଭକ୍ତ ଚଳେ', ଭକତ ଭାବେ ସେ ବନ୍ଧା, ଭକତମଣି ମଣିଦାସ, ହରେକୃଷ୍ଣ ମହତାବଙ୍କ 'ଦାସିଆ ବାଉରୀ; କନକଲତା ମହାନ୍ତିଙ୍କ 'ବାଙ୍କୀ ମୁହାଣରେ ବାଲିରଥ', ଗୋପୀନାଥ ରଥଙ୍କର 'ଧନ୍ୟରେ କାଳିଆ' ପ୍ରଭୃତି ବିଶେଷ ଲୋକପ୍ରିୟ । ଏହିସବୁ ଗଳ୍ପଗୁଡ଼ିକରେ ପ୍ରଭୁ ଶ୍ରୀଜଗନ୍ନାଥ ଅବଳର ବଳ, ଦୁଃଖୀର ସମ୍ବଳ, ଶରଣବତ୍ସଳ ଭାବଗ୍ରାହୀ, ମହାବାହୁ, ଆଦିମୂଳ, ଗରବ ଗଞ୍ଜନ, ମାନସ ରଞ୍ଜନ, ବ୍ରହ୍ମବନ୍ଧୁ, ଅଭୟ ଦାୟକ, ଇଚ୍ଛାମୟ, କୃପାସିନ୍ଧୁ, ଦଇତାରୀ, ପାପତାପହାରୀ ରୂପରେ ବର୍ଣ୍ଣିତ ହୋଇଛନ୍ତି ।

ପ୍ରାବନ୍ଧିକ ନୀଳକଣ୍ଠ ଦାସ, ଡଃ ହରେକୃଷ୍ଣ ମହତାବ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଡଃ କାହ୍ନୁଚରଣ ମିଶ୍ର, ଡଃ ବେଣୀମାଧବ ପାଢ଼ୀ, ଡଃ ବଂଶୀଧର ମହାନ୍ତି, ଅନିରୁଦ୍ଧ ଦାସ, ଗୌରୀକୁମାର ବ୍ରହ୍ମା ପ୍ରଭୃତିଙ୍କ ଗ୍ରନ୍ଥରେ ପୌରାଣିକ ଐତିହାସିକ ଭିତ୍ତିରେ ଶ୍ରୀଜଗନ୍ନାଥଙ୍କ ଇତିହାସ, ଆଦିବାସୀ, ବୌଦ୍ଧ, ଜୈନ ଓ ବ୍ରାହ୍ମଣ୍ୟ ପ୍ରଭୃତି ସଂସ୍କୃତିର ଆଲୋଚନା କରାଯାଇଛି । ଏତଦ୍ ବ୍ୟତୀତ ଓଡ଼ିଶାରେ ମାଧବ ପୂଜା, ତ୍ରିମୂର୍ତ୍ତିତତ୍ତ୍ୱ, ଚତୁର୍ଦ୍ଧାମୂର୍ତ୍ତିତତ୍ତ୍ୱ, ପୁରୁଷୋତ୍ତମ, ନୀଳଚକ୍ର, ମହାପ୍ରସାଦ, ଶ୍ରୀକ୍ଷେତ୍ର ପ୍ରଭୃତିର ଦାର୍ଶନିକ ତତ୍ତ୍ୱ ବିଶ୍ଳେଷଣ କରାଯାଇଛି ।

ନିବୃତ୍ତି ପରିବର୍ତ୍ତେ ଆଜିର ମଣିଷ ପ୍ରବୃତ୍ତିକୁ ସ୍ୱାଗତ କରୁଛି । ପରସ୍ପର ମଧ୍ୟରେ ହିଂସା, ଦ୍ୱେଷ, କ୍ରୋଧ, ସନ୍ଦେହ, ପରଶ୍ରୀକାତରତା, କ୍ରମେ କ୍ରମେ ବଢ଼ିଚାଲିଛି । ପ୍ରତାରଣା

ମାଧ୍ୟମରେ ସଂପତ୍ତି ଓ ପ୍ରତିପତ୍ତି ଅର୍ଜନ ଲାଗି ମଣିଷ ଆଜି ଅହରହ ସଂଗ୍ରାମ କରିଚାଲିଛି । ସାହିତ୍ୟରେ ବିଶ୍ୱର ଏହି ସ୍ଥିତିର ପ୍ରତିଫଳନ ଘଟୁଛି । ଏହା ସତ୍ତ୍ୱେ ପୃଥିବୀରେ ଆଧ୍ୟାତ୍ମିକ ଚେତନା ସଂପୂର୍ଣ୍ଣ ଲୋପ ହୋଇନାହିଁ । ଯେତେବେଳେ ଏ ମଣିଷ ବିଷୟ ବିହ୍ୱଳ ହୋଇଯାଏ ସେତେବେଳେ ତା'ର ଶାନ୍ତି ବିପର୍ଯ୍ୟସ୍ତ ହୋଇଯାଇଥାଏ । ଫଳରେ ନାନା ବ୍ୟାଧିର ଶିକାର ହୋଇଥାଏ । ସେତେବେଳେ ସେ ଅନୁଭବ କରେ ପ୍ରକୃତ ଶାନ୍ତି ଐଶ୍ୱର୍ଯ୍ୟରେ ନାହିଁ, ପ୍ରାଚୁର୍ଯ୍ୟରେ ନାହିଁ, ଭୋଗରେ ନାହିଁ, ଅଛି ଶୂନ୍ୟରେ, ନିବୃତ୍ତିରେ, ଆଧ୍ୟାତ୍ମିକ ଚେତନାରେ, ଅତିମାନସ ସ୍ତରରେ, ତ୍ୟାଗରେ । ସେତିକିବେଳେ ତାର ହୃଦୟରେ ଐଶ୍ୱରିକ ବିଶ୍ୱାସ ଦୃଢ଼ତର ହୁଏ । ସେହି ବିଶ୍ୱାସରୁ ଜାତ ହୁଏ ଭକ୍ତି । ସେ ପୁଣି ଅନୁଭବ କରେ ଈଶ୍ୱର ପ୍ରାପ୍ତି । ଯାହାଂଯୁକ୍ତିରେ ନୁହେଁ ଭକ୍ତିରେ ଲାଭ କରିହେବ । ତର୍କର ନୁହେଁ ଆତ୍ମସମର୍ପଣରେ ହିଁ ଭଗବାନଙ୍କୁ ନିଜର କରିହେବ । ସମଗ୍ର ବିଶ୍ୱରେ ଶ୍ରୀକ୍ଷେତ୍ର ହେଉଛି ଭକ୍ତି ସାଧନାର ପୀଠ । ଏଠାରେ ପ୍ରଭୁ ଶ୍ରୀଜଗନ୍ନାଥ ସମଗ୍ର ବିଶ୍ୱବାସୀଙ୍କର ବିଶ୍ୱାସ ଓ ଆଶ୍ୱାସ ଭରା ଠାକୁର । ଓଡ଼ିଆ ଔପନ୍ୟାସିକ, ଗାଳ୍ପିକ, ପ୍ରାବନ୍ଧିକ, ରମ୍ୟରଚନାକାରୀମାନେ ଏହି ଶ୍ରୀଜଗନ୍ନାଥଙ୍କ ଭିତରେ ସମଗ୍ର ମାନବ ସମାଜ ପାଇଁ ଅନନ୍ତ ସାନ୍ତ୍ୱନାର ଉତ୍ସ ଓ ଉଲ୍ଲାସ ଲକ୍ଷ୍ୟ କରିଛନ୍ତି । ସେମାନଙ୍କ ରଚନାର ପୃଷ୍ଠଭୂମି ଏହିଠାରେ ସୃଷ୍ଟି କରିଛନ୍ତି ।

ପ୍ରଫେସର ସାହୁ ଶ୍ରୀଜଗନ୍ନାଥଙ୍କୁ ଜାତୀୟ ଦେବତା ରୂପେ ବର୍ଣ୍ଣନା କରିଥିଲେ ମଧ୍ୟ ତାଙ୍କର ଚେତନା କିପରି ଆନ୍ତର୍ଜାତୀୟ ସ୍ତରରେ ପରିବ୍ୟାପ୍ତ ହୋଇଛି ତାହା ଦର୍ଶାଇ ଅଛନ୍ତି । ଭାରତ ବାହାରେ ନେପାଳ, ବ୍ରହ୍ମଦେଶ, ବାଙ୍ଗଲାଦେଶ, ସିଂହଳ, ଆମେରିକା, ଋଷିଆ, ଇଂଲଣ୍ଡ ପ୍ରଭୃତି ବିଦେଶ ସ୍ଥାନରେ ଶ୍ରୀ ଜଗନ୍ନାଥଙ୍କ ପୂଜା ଉପାସନା ରଥଯାତ୍ରା ଆଦି ଶ୍ରୀ ଜଗନ୍ନାଥଙ୍କୁ ବିଶ୍ୱର ଦେବତା ରୂପରେ ସ୍ୱୀକାର କରିଛି ।

ସମାଜର ପ୍ରତ୍ୟେକ କ୍ଷେତ୍ରରେ ରହିଛି ଶ୍ରୀଜଗନ୍ନାଥଙ୍କ ପ୍ରଭାବ । ଓଡ଼ିଶାର ମାଟି ପାଣି ପବନ ସବୁଥିରେ ମିଶିରହିଛି ଶ୍ରୀଜଗନ୍ନାଥ ଚେତନା । ଶ୍ରୀଜଗନ୍ନାଥଙ୍କୁ ଅଲଗା କରି ଓଡ଼ିଆ ସଂସ୍କୃତିର ଚିନ୍ତା ଓ ଚେତନା କରାଯାଇପାରେନା, ସେଥିପାଇଁ ଓଡ଼ିଶାର ସଂସ୍କୃତିକୁ କୁହାଯାଏ ଶ୍ରୀଜଗନ୍ନାଥ ସଂସ୍କୃତି । ପ୍ରଫେସର ସାହୁ ଶ୍ରୀଜଗନ୍ନାଥ ତତ୍ତ୍ୱଭଳି ଏକ ବହୁ ପରିବ୍ୟାପ୍ତ ତତ୍ତ୍ୱ ସମ୍ବଳିତ ଭାବଧାରାର କିଞ୍ଚିତ୍ ଉନ୍ମୋଚନ କରିବାରେ ପ୍ରଚେଷ୍ଟା କରିଛନ୍ତି । ତାଙ୍କର ଏହି ଅଭିନବ ପଦକ୍ଷେପ, ଯାହା କେବଳ ଲୋକକଥା, ଲୋକାଚାର ଉପରେ ସଂପୂର୍ଣ୍ଣ ପର୍ଯ୍ୟବସିତ ନହୋଇ ପ୍ରାଚୀନ ଭାରତରୁ ଅଦ୍ୟାପି ସୁଲଭ କେତେକ କ୍ଷୟପ୍ରାପ୍ତ ମୂର୍ତ୍ତି, ମନ୍ଦିର ସ୍ଥାପତ୍ୟ, ଶିଳାଲେଖ, ପୁରାଣ, ତାଳପତ୍ରପୋଥି, ଅପ୍ରକାଶିତ ତଥ୍ୟ ଇତ୍ୟାଦିରେ ବଳିଷ୍ଠ ଭାବଧାରାକୁ ନେଇ ପରିପୁଷ୍ଟ ହୋଇଛନ୍ତି । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ହେଉଛି ଯେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କଠାରେ ଦେଖାଦେଇଥିବା ବିବର୍ତ୍ତନ । ଏହି ବିବର୍ତ୍ତନ ଇତିହାସର ବିଭିନ୍ନ

ପର୍ଯ୍ୟାୟରେ କିପରି ବିଭିନ୍ନ ରୂପରେଖ ନେଇ ଗତି କରିଛି ଏବଂ ଏହି ବିବର୍ତ୍ତନର ସ୍ୱର କେତେ ବ୍ୟାପକ ଓ ଇତିହାସ ସମ୍ମତ ତାହା ପ୍ରଫେସର ସାହୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରିଛନ୍ତି । ଶ୍ରୀଜଗନ୍ନାଥ ତତ୍ତ୍ୱ ଉପରେ ଆଧାରିତ ଥିବା ବହୁ ଭ୍ରାନ୍ତଧାରଣାକୁ ଐତିହାସିକ ତତ୍ତ୍ୱ ଓ ତଥ୍ୟ ଉପରେ ସଠିକ୍ ରୂପରେଖ ଟାଣିବାରେ ପ୍ରଫେସର ସାହୁଙ୍କ ପୁସ୍ତକ ଏକ ଅଭିନବ ପଦକ୍ଷେପ ।



ପ୍ରଫେସର ଓ ବିଭାଗମୁଖ୍ୟ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଚେତନା ଓ ରଚୟିତା ଶ୍ରୀ ବାସୁଦେବ

ରଜତ କୁମାର କର

''ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଚେତନାର ରଚୟିତା ଡକ୍ଟର ବାସୁଦେବ ସାହୁ ବହୁ ତାତ୍ତ୍ୱିକ ଓ ବିଶ୍ଳେଷଣାତ୍ମକ ଗ୍ରନ୍ଥର ସ୍ରଷ୍ଟା । ଏହି ପୁସ୍ତକରେ ବାସୁଦେବଙ୍କ ବାସୁଦେବ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଆକର୍ଷଣ ସହ ତାଙ୍କର ଅପୂର୍ବ ବିଶ୍ଳେଷଣ ଶକ୍ତି ଓ ଗଭୀର ଅଧ୍ୟୟନର ସ୍ୱଚ୍ଛ ପ୍ରତିଫଳନ ହୋଇଛି ।

ପରିଚୟ ହେବାଦିନଠାରୁ ତାଙ୍କର ବିନୟ, ସରଳତା, ବନ୍ଧୁପ୍ରୀତି ତଥା ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ବ୍ୟାକୁଳତା ଦେଖି ମୁଁ ମୁଗ୍ଧ ହୋଇଛି । ତାଙ୍କ ଭାଷଣରେ ବ୍ୟବହୃତ ଭାଷା ବିଭବ ଅପୂର୍ବ । ଅନର୍ଗଳ ଭାଷଣ ସହ ଅବିରତ ଶୁଦ୍ଧ ଓଡ଼ିଆ ଉଚ୍ଚାରଣ ଓ ପ୍ରୟୋଗ ତାଙ୍କ ଅଧ୍ୟାପନାପଟୁତା ସୂଚାଇ ଥାଏ ।

ବକ୍ତା ଭାବେ ବିଭିନ୍ନ ସଭାକୁ ଯିବା ପଥରେ ଅପରୂପ ବନ୍ଧୁତା ଡୋରରେ ବାନ୍ଧି ଦିଅନ୍ତି ବାସୁଦେବ ବାବୁ । ଦୁଇବକ୍ତାର ସାଧାରଣ ଗତାନୁଗତିକ ସ୍ତରରୁ ଅପୂର୍ବ ପାରିବାରିକ ସ୍ତରକୁ ନେଇଯାଇଥିଲେ ମତେ ।

ତାଙ୍କରି ଆହ୍ୱାନରେ ଓଡ଼ଗାଁରେ ଭଞ୍ଜଜୟନ୍ତୀକୁ ଯାଇ ତାଙ୍କ ମମତା ଓ ଆତିଥ୍ୟରେ ସିକ୍ତ ହୋଇଯାଇଥିଲି । ଏହାପରେ ଭଞ୍ଜଙ୍କ ସମ୍ବନ୍ଧୀୟ ବକ୍ତୃତାରେ ଆଉ ଏକତ୍ର ହୋଇନାହିଁ । ଶୁଣିଲି ଶରୀର ଅସୁସ୍ଥ ହେତୁ ବହୁକାଳ ମାନ୍ଦ୍ରାଜରେ ରହିଲେ । ମାନ୍ଦ୍ରାଜରୁ ରୋଗମୁକ୍ତ ହୋଇ ଦୂରଭାଷ କଥୋପକଥନ ହେବାପରେ ଆଶ୍ୱସ୍ତ ହୋଇଥିଲି ।

ବିଧିର ବିଧାନ ଅଦ୍ଭୁତ । ମାନ୍ଦ୍ରାଜ ପରେ ପୁତ୍ର ପାଖରେ ପୁନାରେ ଅସୁସ୍ଥ ହୋଇ ଶେଷନିଃଶ୍ୱାସ ତ୍ୟାଗକଲେ । ବହୁ ଗୁଣଗ୍ରାହୀ ତାଙ୍କ ଶେଷଦର୍ଶନରୁ ବଞ୍ଚିତ ହେଲେ ।

ବାଣୀବିହାରରେ ଭଞ୍ଜ ସାହିତ୍ୟ ଅଧ୍ୟାପନା କରିବାରେ ଏଭଳି ସମର୍ଥ ଓ ନିଷ୍ଠାପର ଶିକ୍ଷକ ଏବେ ବିରଳ ହେଇଯାଉଛନ୍ତି । ପ୍ରାଚୀନ ସାହିତ୍ୟ ଓ ଭାଷା ଶିକ୍ଷା ଦେବାକୁ ଆଣ୍ଟରେ ଅଣ୍ଟା ଭିଡ଼ିବା ଭୀମ ପରାକ୍ରମୀ ବିଦା ହେଇଗଲେ ।

ବାଲୁତକାଳୁ ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରତିଷ୍ଠିତ କଳିଙ୍ଗଭାରତୀରେ ଯୋଗ ଦେଇ ତାଙ୍କ ନିର୍ଦ୍ଦେଶରେ ପ୍ରଚାର କରିଆସିଲୁ । ଜଗନ୍ନାଥ ଭଞ୍ଜ ଓ କୋଣାର୍କ ଉତ୍କଳୀୟ ବୈଶିଷ୍ଟ୍ୟ ତ୍ରିକୋଣର ତିନିବାହୁ ସ୍ୱରୂପ ।

ଅନୁଜ ପ୍ରତିମ ବନ୍ଧୁ ଶ୍ରୀମାନ ବାସୁଦେବ ଭଞ୍ଜ ଓ ଜଗନ୍ନାଥଙ୍କ ସମ୍ବନ୍ଧରେ ଗଭୀର ପ୍ରଜ୍ଞାର ଅଧିକାରୀ ।

ଶ୍ରୀ ଜଗନ୍ନାଥ ସମ୍ବନ୍ଧୀୟ ଗଭୀର ଅନୁଶୀଳନ ''ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଚେତନା'' ଶୀର୍ଷକ ପୁସ୍ତକରେ ସୁପ୍ରକଟିତ ହୋଇଛି । ଏହି ଶୀର୍ଷକ ପ୍ରବନ୍ଧ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍ ଉପାଧି ପାଇବାର ଗୌରବ ଲାଭ କରିଛନ୍ତି ।

ଏହି ପୁସ୍ତକର ସ୍ୱଭାଷାରେ ଡକ୍ଟର ସାହୁ କହିଛନ୍ତି, ''ଶ୍ରୀଜଗନ୍ନାଥଙ୍କ ମହିମା ଅନନ୍ତ``, ତାଙ୍କୁ ଭିତ୍ତି କରି ଗଢ଼ି ଉଠିଥିବା ଓଡ଼ିଆ ସାହିତ୍ୟ ମଧ ସେହିପରି ବିଶାଳ । ଶ୍ରୀଜଗନ୍ନାଥଙ୍କ ପରି ଶ୍ରୀଜଗନ୍ନାଥ ଭିତ୍ତିକ ଓଡ଼ିଆ ସାହିତ୍ୟ ମଧ ରହସ୍ୟମୟ । ଶ୍ରୀ ଜଗନ୍ନାଥଙ୍କ ରହସ୍ୟ ଉନ୍ମୋଚନ ପାଇଁ ପୂର୍ବରୁ ପ୍ରଚେଷ୍ଟା ହୋଇଛି ଓ ବର୍ତ୍ତମାନ ମଧ ହେଉଅଛି । ଶ୍ରୀଜଗନ୍ନାଥ ଭିତ୍ତିକ ଓଡ଼ିଆ ସାହିତ୍ୟର ରହସ୍ୟ ବା ତତ୍ତ୍ୱ ଉନ୍ମୋଚନ ପାଇଁ ଦେଖାଦେଇଥିବା ପ୍ରଚେଷ୍ଟା ସ୍ୱଳ୍ପ ଓ ଅପୂର୍ଣ୍ଣ ।'' ଓଡ଼ିଆ ସାହିତ୍ୟର ଶ୍ରୀଜଗନ୍ନାଥ ଚେତନା ଶୀର୍ଷକ ନିବନ୍ଧରେ ମୁଁ ସେହି ତତ୍ତ୍ୱ ଉନ୍ମୋଚନ କ୍ଷେତ୍ରରେ କିଞ୍ଚିତ ପ୍ରଚେଷ୍ଟା କରିଛି ମାତ୍ର'' । ପାଞ୍ଚଶହ କୋଡ଼ିଏ ପୃଷ୍ଠାରେ କଳେବର ବହନ କରି ପୁସ୍ତକ ଲେଖକଙ୍କ ସ୍ୱଭାଷାର ଅଭିବ୍ୟକ୍ତିକୁ ଯଥାର୍ଥ କରିଛି ।

ପୁସ୍ତକର ଛତ୍ରେଛତ୍ରେ ଗଭୀର ଅଧ୍ୟୟନ ଓ ବିଶ୍ଳେଷଣର ଉପଯୁକ୍ତ ସ୍ୱରୂପ ପ୍ରକଟିତ ହେବା ସହିତ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ପାଠକମାନଙ୍କୁ ସମ୍ୟକ ଅଭିହିତ କରିବାର ସାଧୁ ଉଦ୍ୟମ ସହଜରେ ପରିଲକ୍ଷିତ ହୋଇଥାଏ ।

ପ୍ରଥମ ଦୁଇ ଅଧ୍ୟାୟ ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ଓଡ଼ିଆ ସାହିତ୍ୟର ଉଦ୍ଧୃତି ପାଠକମାନଙ୍କୁ ଜଗନ୍ନାଥ ସମ୍ବନ୍ଧୀୟ ସାହିତ୍ୟର ସନ୍ଧାନ ଦେଉଛି ।

ପ୍ରଥମ ଦୁଇ ଅଧ୍ୟାୟରେ ଶ୍ରୀଜଗନ୍ନାଥଙ୍କ ଇତିହାସ ଓ ଜଗନ୍ନାଥ ଚେତନା ସମ୍ବନ୍ଧୀୟ ଲେଖକଙ୍କ ସ୍ୱକୀୟ ଅଭିମତ ତାଙ୍କର ଗବେଷକ ସୁଲଭ ମୌଳିକତାର ପରିଚୟ ଦେଇଥାଏ ।

ବେଦ ଉପନିଷଦ କାଳରୁ ଜଗନ୍ନାଥ ଚେତନାର ସୂଚନା ଦେଇ ସାମ୍ପ୍ରତିକ କାଳର ଜଗନ୍ନାଥ ଚେତନାର କ୍ରମ ବିକାଶର ଇତିହାସ ସହ ପାଠକଙ୍କୁ ସମ୍ପୃକ୍ତ କରିଛନ୍ତି ଡକ୍ଟର ସାହୁ । ''ଜଗନ୍ନାଥ ସଂସ୍କୃତିର ସ୍ୱରୂପ'' ଶୀର୍ଷକ ଦ୍ୱିତୀୟ ଅଧ୍ୟାୟରେ ଆଦିବାସୀ ସଂସ୍କୃତିର ଶ୍ରୀ ଜଗନ୍ନାଥ, ଜୈନଧର୍ମ ଓ ଜଗନ୍ନାଥ, ବୌଦ୍ଧ ସଂସ୍କୃତି ଓ ଜଗନ୍ନାଥ । ଜଗନ୍ନାଥ, ବୁଦ୍ଧ ଉପାସନାରେ ସମନ୍ୱୟର ବୈଚିତ୍ର୍ୟ ବିଷୟରେ ମନୋଜ୍ଞ ଚିତ୍ର ଉପସ୍ଥାପନ କରିଛି ।

ଏ ଉଚ୍ଚକୋଟିର ଆଲୋଚନା ଡକ୍ଟର ସାହୁଙ୍କୁ ଓଡ଼ିଆ ସାହିତ୍ୟର ଗଦ୍ୟ ସାହିତ୍ୟରେ ଏକ ବିଶିଷ୍ଟ ଆସନର ଅଧିକାରୀ କରିପାରିଛି ।

ଐତିହାସିକ ଭିତ୍ତିରେ ଶ୍ରୀ ଜଗନ୍ନାଥଙ୍କ ଐତିହ୍ୟ ପ୍ରଖ୍ୟାପନ ନିମନ୍ତେ ଖ୍ରୀଷ୍ଟପୂର୍ବ କାଳର ରଚନାରେ ବାସୁଦେବ କୃଷ୍ଣ ଉପାସନାର ସୂଚନା ଦେଇ ଡକ୍ଟର ସାହୁ ନିମ୍ନ ଭାବରେ ମତବ୍ୟକ୍ତ କରିଛନ୍ତି ।

'ଛାନ୍ଦୋଗ୍ୟ ଉପନିଷଦ'ରେ ଭାଗବତ ସମ୍ପ୍ରଦାୟର ଏକ ଶାଖା ହେଉଛି ବାସୁଦେବ ସମ୍ପ୍ରଦାୟ । ଛାନ୍ଦୋଗ୍ୟ ଉପନିଷଦର ରଚନାକାଳ ହେଉଛି ଖ୍ରୀ.ପୂ ଷଷ୍ଠ ଶତାବ୍ଦୀ । ତେଣୁ ଖ୍ରୀ.ପୂ ଷଷ୍ଠ ଶତାବ୍ଦୀରେ ବିଷ୍ଣୁଙ୍କ ଏକ ରୂପ ଭାବରେ ବାସୁଦେବ ପ୍ରସିଦ୍ଧି ଲାଭ କରିଥିଲେ ।''

ମେଘାସ୍ଥିନିସ୍‌ଙ୍କ ବିକିରଣ ଅନୁସାରେ ଯେଉଁ ହେରାକ୍ଲିସ୍ ବା କୃଷ୍ଣ ପୂଜା ପାଉଥିଲେ ତାହା ବାସୁଦେବ କୃଷ୍ଣ ବୋଲି ମତ ସହ ଏକମତ ହୋଇଛନ୍ତି ଓ ମତ ଦେଇଛନ୍ତି ଯେ ଠାକୁରମାନେ ବାସୁଦେବ ପରିବର୍ତ୍ତେ ''ମାଧବ'' ଭାବେ ପୂଜା ହୋଇ ଆସୁଛନ୍ତି ।

ତାଙ୍କର ମତ ହେଲା, ୬ଷ୍ଠ ଶତାବ୍ଦୀରୁ ବାସୁଦେବ ନାମରେ ପୂଜିତ ବିଷ୍ଣୁ କ୍ରମଶଃ ମାଧବ, ନୀଳମାଧବ ଓ ଶେଷରେ ଜଗନ୍ନାଥ ଭାବରେ ପୂଜିତ ହେବାର ଏକ ସାମ୍ଭାବ୍ୟ ଇତିହାସ ଥାଇପାରେ ।

ତୃତୀୟ ପରିଚ୍ଛେଦରରୁ ଆରମ୍ଭ ହୋଇଛି ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ତତ୍ତ୍ୱ ଓ ସ୍ୱରୂପ ଆଲୋଚନା । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଆଲୋଚନା କରି ପ୍ରାଚୀନ ଓଡ଼ିଶାର ସଂସ୍କୃତ ସାହିତ୍ୟର ଜଗନ୍ନାଥଙ୍କ ଗାଥା ଲିପିବଦ୍ଧ ହୋଇଥିବା ସୂଚାଇ ଅଛନ୍ତି । ଲୋକକଥା, ଲୋକଗୀତିରେ ସେ ଜଗନ୍ନାଥଙ୍କ ସନ୍ଧାନ କରିଛନ୍ତି । ପଶ୍ଚିମ ଓଡ଼ିଶାର ପହଣ୍ଡିଗୀତର ମନୋରମ ପଂକ୍ତି ଉଦ୍ଧାର କରି ପାଠକଙ୍କୁ ଜଣାଇଛନ୍ତି ଡକ୍ଟର ସାହୁ ।

''ଆଗେ ବଳଭଦ୍ର ପଛେ ଜଗନ୍ନାଥ
ମଝିରେ ସୋହଦ୍ରାମାୟେ
କଳାଧଳା ମୁଖ ଝଲସି ଦିଶୁଛି
ଚନ୍ଦ୍ରସୂର୍ଯ୍ୟ ତାରା ପ୍ରାୟେ ।

ମାଦଳା ପାଞ୍ଜିର ଐତିହାସିକତା ସମ୍ବନ୍ଧରେ ବର୍ଣ୍ଣନା କରିଛନ୍ତି ଡକ୍ଟର ସାହୁ । ଏହାକୁ ଏକ ସାହାଯ୍ୟକାରୀ ଉପାଦାନ ଭାବେ ସେ ଗ୍ରହଣ କରିଛନ୍ତି ।

ଅପ୍ରକାଶିତ ''ପୁରୁଷୋତ୍ତମ ଦେଉଳଟି'' ଗ୍ରନ୍ଥରୁ କିୟଦଂଶ ଉଦ୍ଧାର କରି ସେ କାଳର ଭୋଗ ସମ୍ବନ୍ଧରେ ସୂଚନା ଦେଇଛନ୍ତି । ତାଙ୍କ ଗୁରୁ ବଂଶୀଧର ମହାନ୍ତିଙ୍କ ଆବିଷ୍କୃତ ପୋଥିରୁ ଏ ସୂଚନା ଦିଆଯାଇଛି ।

ସେ ପଞ୍ଚସଖା ସାହିତ୍ୟ, ଭଞ୍ଜ, ଦୀନକୃଷ୍ଣଙ୍କ ରଚନାରୁ ପ୍ରଭୁତ ଉଦାହରଣ ଦେଇଛନ୍ତି ।

ଉପେନ୍ଦ୍ରଭଞ୍ଜଙ୍କ 'କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ' ରେ ଜଗନ୍ନାଥ ତତ୍ତ୍ୱ ଓ ସ୍ୱରୂପ ପ୍ରଥମ ଛାନ୍ଦରେ କିଭଳି ହୋଇଛି ତାର ବର୍ଣ୍ଣନାରୁ ଡକ୍ଟର ସାହୁଙ୍କ ଜଗନ୍ନାଥ ପ୍ରୀତି ଓ ଭଞ୍ଜ ଅନୁରକ୍ତି ସୂଚିତ ହୁଏ । କବିଙ୍କ ମତରେ ଉପେନ୍ଦ୍ର ଭଞ୍ଜ କାବ୍ୟର ମଙ୍ଗଳାଚରଣରେ ଶ୍ରୀ କ୍ଷେତ୍ର ଓ ଜଗନ୍ନାଥ ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ଅନ୍ୟ ସାହିତ୍ୟର ମଙ୍ଗଳାଚରଣରେ ଗତାନୁଗତିକ ବନ୍ଦନା ଛଡ଼ା ଏପରି ସ୍ୱରୂପ ବିଶ୍ଳେଷଣ ପ୍ରୟାସ ହୋଇନାହିଁ ।

ଜଗନ୍ନାଥ ଭିତ୍ତିକ ଭକ୍ତିତତ୍ତ୍ୱ ରୀତିଯୁଗୀୟ କାବ୍ୟର ରସ ତତ୍ତ୍ୱକୁ ବହୁଭାବରେ ପ୍ରଭାବିତ ଓ ନିୟନ୍ତ୍ରିତ କରିଛି ବୋଲି ଉପସଂହାରରେ ଡକ୍ଟର ସାହୁ ମତ ପ୍ରକାଶ କରିଛନ୍ତି ।

ତାଙ୍କର ବହୁ ଗବେଷଣାତ୍ମକ ଗ୍ରନ୍ଥ ପ୍ରକାଶ ଅପେକ୍ଷାରେ । ବହୁ ପ୍ରବନ୍ଧ ଦେଇ ଅନେକ ପତ୍ରିକାକୁ ସେ ସୌଷ୍ଠବ ମଣ୍ଡିତ କରିଛନ୍ତି । ଭାଷାଚାତୁରୀରେ ଶ୍ରୋତାମାନଙ୍କୁ ମୁଗ୍ଧ କରିଛନ୍ତି । ସରଳ, ଅମାୟିକ, ସ୍ନେହଶିକ୍ତ ବ୍ୟବହାରରେ ବନ୍ଧୁମାନଙ୍କୁ ଆପଣାର କରିଛନ୍ତି ।

ଆଜି ତାଙ୍କର ଅନୁପସ୍ଥିତି ନିଶ୍ଚିତ ଭାବେ ଓଡ଼ିଆ ସାହିତ୍ୟର ଏକ ଅପୂରଣୀୟ କ୍ଷତି । ବାସୁଦେବ ନାମକୁ ସାର୍ଥକ କରି ବାସୁଦେବ ଜଗନ୍ନାଥ ସମ୍ବନ୍ଧୀୟ ବିରାଟ ଗ୍ରନ୍ଥର ସାର୍ଥକ ରଚୟିତା ଭାବେ ସେ ନିଶ୍ଚିତ ଭାବେ ପଦଚିହ୍ନ ରଖିଯାଇଅଛନ୍ତି ।



# 'ଓଡ଼ିଆ ସାହିତ୍ୟର ସୃଷ୍ଟି-ସଂପଦ'ରେ ବାସୁଦେବଙ୍କ ସମୀକ୍ଷାଦୃଷ୍ଟି

ଡଃ କୃଷ୍ଣଚନ୍ଦ୍ର ପ୍ରଧାନ

ଓଡ଼ିଆ ସମାଲୋଚନା ସାହିତ୍ୟର ବିକାଶ ପର୍ବରେ ପ୍ରଫେସର ବାସୁଦେବ ସାହୁ (୧୯୪୦-୨୦୦୫) ଏକ ସ୍ୱର୍ବିତ ଉଚ୍ଚାରଣ । ଓଡ଼ିଆ ସାହିତ୍ୟ ପଠନ ଓ ଆଲୋଚନାରେ ସ୍ୱଳ୍ପ ଯେଉଁ କେତେଜଣ ବ୍ୟକ୍ତିତ୍ୱ, ନିଜର ସମଗ୍ର ଜୀବନ କାଳ ଅତିବାହିତ କରିଛନ୍ତି, ସେମାନଙ୍କ ମଧ୍ୟରେ ଡଃ ସାହୁ ଅନ୍ୟତମ । ବହୁ ଶାସ୍ତ୍ର ଦର୍ଶିତା, ପ୍ରଜ୍ଞା, ସୂକ୍ଷ୍ମ ଅନୁସନ୍ଧିତ୍ସା, ନିରପେକ୍ଷ ବିଚାରଧାରା, ବୈଜ୍ଞାନିକ ଦୃଷ୍ଟିଭଂଗୀ, ତୁଳନାତ୍ମକ ଅଧ୍ୟୟନ-ତାଙ୍କ ସମାଲୋଚନାଗୁଡ଼ିକୁ ଗୁଣାତ୍ମକ ମୂଲ୍ୟବୋଧରେ ଦୀକ୍ଷିତ କରାଇପାରିଛି । କେବଳ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ନୁହେଁ, ଭାଷା ସଂପର୍କୀୟ ଆଲୋଚନାରେ ମଧ୍ୟ ଡଃ ସାହୁଙ୍କ ମୌଳିକ ବିଚାରଧାରାଟି ବେଶ୍ ପରିଚ୍ଛନ୍ନ । ଉଭୟ ଭାଷା ଓ ସାହିତ୍ୟ ଆଲୋଚନା କ୍ଷେତ୍ରରେ ଡଃ ବାସୁଦେବଙ୍କ ଅବଦାନ ଅତ୍ୟନ୍ତ ପ୍ରଶଂସନୀୟ ।

ଏହି ପ୍ରବନ୍ଧର ସୀମିତ କଳେବର ମଧ୍ୟରେ ଡଃ ସାହୁଙ୍କ ସାମଗ୍ରିକ କୃତିକୁ ଆକଳନ କରିବା ସମ୍ଭବ ନୁହେଁ । ଏଣୁ ଏଠାରେ ତାଙ୍କର ଗୋଟିଏ ସମାଲୋଚନା ପୁସ୍ତକ 'ଓଡ଼ିଆ ସାହିତ୍ୟରେ ସୃଷ୍ଟି ସଂପଦ' ସଂପର୍କରେ ସମ୍ୟକ୍ ଆଲୋକପାତ କରାଯିବାର ଉଦ୍ୟମ ହୋଇଛି । ଏହି ପୁସ୍ତକଟିର ପ୍ରକାଶ ସମୟ ଡିସେମ୍ବର ୧୯୭୫ ମସିହା ହେଲେ ହେଁ, ସନ୍ନିବେଶିତ ପ୍ରବନ୍ଧଗୁଡ଼ିକ ୧୯୭୪-୭୫ ମସିହାରେ ରଚିତ ହୋଇଥିବା ଅନୁମେୟ । ଡଃ ସାହୁ ପ୍ରାଚୀନ ସାହିତ୍ୟଠାରୁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ-ସମସ୍ତ ବିଭାଗରେ ଲେଖନୀ ଚାଳନା କରି ସିଦ୍ଧିର ଅଧିକାରୀ ହୋଇଛନ୍ତି । ତାଙ୍କର ଆଲୋଚନା ଉଭୟ ବିଶ୍ଳେଷଣଧର୍ମୀ ଓ ସୂଚନାଧର୍ମୀ । ସେ ସମଗ୍ର ଜୀବନ ସାମୟିକ ଭାବେ ପତ୍ର-ପତ୍ରିକାରେ ଆଲୋଚନା ଜାରି ରଖିଛନ୍ତି । ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା ସନ୍ଦର୍ଭ ପ୍ରସ୍ତୁତ କରିଛନ୍ତି । କିନ୍ତୁ ଭାଷା ସଂପର୍କରେ ଆଲୋଚନା ଓ ଗବେଷଣା କରି ବହୁ ରତ୍ନ ଦାନ କରିଯାଇଛନ୍ତି । ବୋଧହୁଏ ଓଡ଼ିଆ ଭାଷାରେ ଭାଷା ସଂପର୍କୀୟ ଦାରିଦ୍ର୍ୟ ଲକ୍ଷ୍ୟ କରି ସେ ନିଜକୁ ଏଥିରେ ନିୟୋଜିତ କରିଛନ୍ତି ଓ ସଫଳତାର ଅଧିକାରୀ ମଧ୍ୟ ହୋଇଛନ୍ତି ।

ପ୍ରାଚୀନ ସାହିତ୍ୟରୁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ-ସାତଗୋଟି ସମାଲୋଚନାତ୍ମକ ପ୍ରବନ୍ଧକୁ ନେଇ 'ଓଡ଼ିଆ ସାହିତ୍ୟର ସୃଷ୍ଟି-ସଂପଦ'' ସମୀକ୍ଷାଗ୍ରନ୍ଥଟି ପ୍ରସ୍ତୁତ । ପ୍ରାଚୀନ ସାହିତ୍ୟ ମଧ୍ୟରେ 'କଳସା ଚଉତିଶାର କାଳ ଓ କଳା ଏକ କଳନା', ମଧ୍ୟଯୁଗୀୟ ସାହିତ୍ୟ ମଧ୍ୟରେ 'ଭଞ୍ଜଙ୍କ ରସାଳ ଲେଖନୀରୁ ରସଲେଖା', 'ବ୍ରଜନାଥ ସାହିତ୍ୟରେ ପରଂପରା ଓ ପୁରୋଦୃଷ୍ଟି', 'ଆଧୁନିକ ସାହିତ୍ୟ ମଧ୍ୟରେ 'ପାଣ୍ଡୁଲିପିରେ ସମୟର ସ୍ପନ୍ଦନ', 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା : ଏକ ଅଧ୍ୟୟନ', 'କଣାମାମୁ : ଏକ ଦୃଷ୍ଟିପାତ' ପ୍ରବନ୍ଧ ସ୍ଥାନ ପାଇଥିବାବେଳେ 'ଓଡ଼ିଆ କବି ମାନସରେ ବସନ୍ତ' ପ୍ରବନ୍ଧରେ ମଧ୍ୟଯୁଗୀୟ ସାହିତ୍ୟଠାରୁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ବସନ୍ତ ଯେଉଁ ରୂପବିଭା ନେଇ ଆତ୍ମପ୍ରକାଶ କରିଛି, ତାର ଏକ ମନନଶୀଳ ଆଲୋଚନା ପ୍ରଦତ୍ତ । ଉକ୍ତ ସମୀକ୍ଷାଗ୍ରନ୍ଥରେ ସମୀକ୍ଷକଙ୍କ ବିଚାର ବିଶ୍ଳେଷଣରେ ନୂତନ ଦୃଷ୍ଟିଭଂଗୀ ଓ ବହୁପାଠିତାର ପରିଚୟ ବେଶ୍ ସ୍ୱଚ୍ଛ ଓ ସୁସ୍ପଷ୍ଟ ।

ଓଡ଼ିଆ ସାହିତ୍ୟରେ କଳସା ଚଉତିଶାର ଭୂମିକା ନିଶ୍ଚିତ ରୂପେ ଗୁରୁତ୍ୱପୂର୍ଣ୍ଣ । ଏହାର କଳାପକ୍ଷ ତୁଳନାରେ କାଳପକ୍ଷକୁ ନେଇ ଆଲୋଚକମାନଙ୍କ ମଧ୍ୟରେ ମତଦ୍ୱୈଧ ରହିଆସିଛି । ଏଯାବତ୍ ଏହାର ସମୟସୀମା ସଠିକ୍ ନିର୍ଦ୍ଧାରିତ ହୋଇପାରିଛି ବୋଲି ମନେହୁଏ ନାହିଁ । କେତେକ ଆଲୋଚକ ଏହାର ସମୟକୁ ସାରଳା ଦାସଙ୍କ ପୂର୍ବକୁ ଟାଣି ନେଇଥିବା ସମୟରେ ଅନ୍ୟ କେତେକ ଏହା ସାରଳା ଦାସଙ୍କ ପରବର୍ତ୍ତୀ ଓ ଆଉ କେହି କେହି ଏହା ପଞ୍ଚସଖାଙ୍କ ପରବର୍ତ୍ତୀ ରଚନା ବୋଲି ଦାବି କରିଥାନ୍ତି । ଡଃ ସାହୁ କଳସା ଚଉତିଶାର କାଳ ନିର୍ଣ୍ଣୟ ପ୍ରସଙ୍ଗରେ ପୂର୍ବରୁ ଆଲୋଚିତ ଅଧିକାଂଶ ମତାମତ ପରୀକ୍ଷା କରି ଏକ ନିର୍ଦ୍ଦିଷ୍ଟ ମୀମାଂସାରେ ଉପନୀତ ହେବାକୁ ଚେଷ୍ଟା କରିଛନ୍ତି । ଏହି ପ୍ରସଙ୍ଗରେ ସେ ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଡଃ ହରେକୃଷ୍ଣ ମହତାବ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଜାନକୀ ବଲ୍ଲଭ ମହାନ୍ତି (କ), ଗୌରୀ କୁମାର ବ୍ରହ୍ମା, ଡଃ ବଂଶୀଧର ମହାନ୍ତି, ପଣ୍ଡିତ ନୀଳକଣ୍ଠ ଦାସ, ଡଃ କୁଞ୍ଜବିହାରୀ ତ୍ରିପାଠୀ, ସୁରେନ୍ଦ୍ର ମହାନ୍ତି, ଡଃ ଦେବେନ୍ଦ୍ର ମହାନ୍ତି ଆଦିଙ୍କ ମତାମତ ଉଦ୍ଧାର କରିବା ସଂଗେସଂଗେ ସେଗୁଡ଼ିକ ଯାଥାର୍ଥ୍ୟ ବିଶ୍ଳେଷଣ କରିଛନ୍ତି । 'କଳସା' ଶବ୍ଦର ଅର୍ଥ, ଚଉତିଶାରେ ବ୍ୟବହୃତ ପ୍ରାଚୀନ ଶବ୍ଦ ତଥା ଏଥିରେ ପ୍ରଦତ୍ତ ଧର୍ମାଦର୍ଶକୁ ନେଇ ଆଲୋଚକଗଣ ସ୍ୱ ସ୍ୱ ମତ ପ୍ରତିଷ୍ଠାର ଉଦ୍ୟମ କରିଛନ୍ତି । ଡଃ ସାହୁ ଏହି ବିରୋଧି ମତାମତକୁ ବିଶ୍ଳେଷଣ ପୂର୍ବକ କଳସାର ଅର୍ଥ, ଚଉତିଶାରେ ବ୍ୟବହୃତ ଭାଷା ଓ ଶବ୍ଦାବଳୀ, ରଚନା ଶୈଳୀ, ଆଳଂକାରିକ ସଂଯୋଜନା, ବାକ୍ୟଗଠନ ପ୍ରଣାଳୀ, ଧାର୍ମିକ ଚିନ୍ତନ ଆଦି ଦୃଷ୍ଟିରୁ ବିଚାର କରି ଏହାର ସମୟସୀମାକୁ 'ସାରଳା ଦାସ ଓ ପଞ୍ଚସଖାଙ୍କ ମଧ୍ୟବର୍ତ୍ତୀ କାଳରେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀର ଉତ୍ତରାର୍ଦ୍ଧ ଓ ଷୋଡ଼ଶ ଶତାବ୍ଦୀର ଆଦ୍ୟ ପାଦରେ ଅବସ୍ଥାପିତ କରାଯାଇପାରେ' ବୋଲି ଯେଉଁ ମତାମତ ପ୍ରଦାନ କରିଛନ୍ତି, ତାହା ଅନେକାଂଶରେ ଯଥା

ବୋଲି ମନେହୋଇଥାଏ । ଚଉତିଶାର ଲକ୍ଷଣ, ରଚନାରୀତି ସମ୍ବନ୍ଧରେ ମଧ୍ୟ ସମୀକ୍ଷକ ତାତ୍ତ୍ୱିକ ଆଲୋଚନା କରିଛନ୍ତି । କଳସା ଚଉତିଶାର କଳାଗତ ମୂଲ୍ୟ ସମ୍ବନ୍ଧରେ ଆଲୋଚନା ସମୟରେ ସମୀକ୍ଷକଙ୍କ ତୁଳନାତ୍ମକ ଦୃଷ୍ଟିଭଂଗୀ ବେଶ୍ ପ୍ରସାରିତ । ପ୍ରାଗ୍ ବୈଦିକ ଯୁଗରୁ ଶିବଙ୍କ ପୂଜିତ ରୂପ ସହିତ କନ୍ନଡ଼ ସାହିତ୍ୟ, ତେଲୁଗୁ ସାହିତ୍ୟ, ମୈଥିଳୀ ସାହିତ୍ୟ, ଆସାମୀ ସାହିତ୍ୟ, ବଙ୍ଗଳା ସାହିତ୍ୟ, ହିନ୍ଦୀ ସାହିତ୍ୟ, ଓଡ଼ିଆ ଲୋକ ସାହିତ୍ୟ, ସାରଳା ସାହିତ୍ୟ ଆଦିରେ ପରିଲକ୍ଷିତ ଶିବ-ପାର୍ବତୀଙ୍କ ବିଭିନ୍ନ ପ୍ରସଙ୍ଗକୁ ସେ ତୁଳନାତ୍ମକ ଭାବରେ ଆଲୋକପାତ କରିଛନ୍ତି । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ଶିବପାର୍ବତୀଙ୍କ ମହତ୍ତ୍ୱ ପ୍ରସଙ୍ଗର ଅବତାରଣା କରିବା ସଂଗେସଂଗେ କଳସା ଚଉତିଶାର ନାଟକୀୟତା, ଉପସ୍ଥାପନଗତ ଚମତ୍କାରିତାକୁ ଯଥାଯଥ ବିଶ୍ଳେଷଣ କରାଯାଇଥିବାରୁ ଆଲୋଚନାଟି ଜୀବନ୍ତ ହୋଇପାରିଛି ।

ଭଞ୍ଜଙ୍କ ରସାଳ ଲେଖନୀରୁ-''ରସଲେଖା'' ପ୍ରବନ୍ଧଟିରୁ ସମୀକ୍ଷକଙ୍କ ମଧ୍ୟଯୁଗୀୟ ସାହିତ୍ୟ ପ୍ରତି ରହିଥିବା ଅନୁରାଗ ସ୍ପଷ୍ଟ । 'ରସଲେଖା' ଉପେନ୍ଦ୍ରଙ୍କର ଏକ କ୍ଷୁଦ୍ର କାବ୍ୟ । ଏହାସତ୍ତ୍ୱେ ଉପେନ୍ଦ୍ରଙ୍କ ପ୍ରତିଭାର ଛାପ ଏଥିରେ ଅସ୍ପଷ୍ଟ ନୁହେଁ । ଭଞ୍ଜୀୟ ରସ ସୃଷ୍ଟିର ମୂଳତତ୍ତ୍ୱ, ସୌନ୍ଦର୍ଯ୍ୟଚେତନା, ବହୁଶାସ୍ତ୍ରଦର୍ଶିତା, କାବ୍ୟ ପରିକଳ୍ପନାର ବିଭିନ୍ନ ଦିଗ, ପରିବେଷଣଗତ ଚମତ୍କାରିତା, ଶବ୍ଦ ପାଣ୍ଡିତ୍ୟ, ନାଟକୀୟ ପରିବେଶ ସୃଷ୍ଟି, ଚରିତ୍ରମାନଙ୍କର ମାନସିକ ବିଶ୍ଳେଷଣ, ଅଲୌକିକ ଘଟଣାବଳୀର ଯୌକ୍ତିକ ପରିବେଷଣ ତଥା କାବ୍ୟରେ ପରିଲକ୍ଷିତ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ଚିତ୍ରକୁ ସମୀକ୍ଷକ ସୂକ୍ଷ୍ମାତିସୂକ୍ଷ୍ମ ଅନୁଧ୍ୟାନ କରିଛନ୍ତି । ଆବଶ୍ୟକସ୍ଥଳେ ଉପେନ୍ଦ୍ରଙ୍କ କାବ୍ୟମାନଙ୍କର ତୁଳନାତ୍ମକ ଆଲୋଚନା କରି ଏହି କ୍ଷୁଦ୍ର କାବ୍ୟଟିର ବିଶେଷତ୍ୱ ପ୍ରତିପାଦନ କରିଛନ୍ତି । ଉପେନ୍ଦ୍ରଙ୍କ ସ୍ରଷ୍ଟାମାନସ, ଶବ୍ଦ ପ୍ରୟୋଗରେ ନିପୁଣତା, ଜୀବନବାଦୀ ଦୃଷ୍ଟିଭଂଗୀ, ପାରିବେଶିକ ପ୍ରଭାବକୁ ମଧ୍ୟ ଆଲୋଚନାର ଅନ୍ତର୍ଭୁକ୍ତ କରି ଉପସଂହାରରେ କହିଛନ୍ତି-''ଭିନ୍ନ ଭିନ୍ନ ପରିସ୍ଥିତି, ପରିବେଶ ଓ ସମୟ ପ୍ରବାହରେ ସୃଷ୍ଟ କାବ୍ୟମାନଙ୍କରେ ଭଞ୍ଜୀୟ ପ୍ରତିଭାର ଏକ ସାମ୍ୟ ଓ ଯୋଗସୂତ୍ର ସନ୍ଧାନ କରାଯାଇପାରେ । ଭଞ୍ଜଙ୍କର ପ୍ରତିଭା-କନ୍ୟା ଭାବରେ ନିଜକୁ ପରିଚିତା କରାଇବା ପାଇଁ ଯଥେଷ୍ଟ ବଳିଷ୍ଠ ଭଞ୍ଜୀୟ ଉପାଦାନ ଗ୍ରହଣ କରିଛି, ରସଲେଖା ତାର କ୍ଷୁଦ୍ର କଳେବର ଭିତରେ ।''

ସଂକଳନର ତୃତୀୟ ପ୍ରବନ୍ଧ 'ଓଡ଼ିଆ କବି ମାନସରେ ବସନ୍ତ' । ମାନବ ଜୀବନ ଓ ପ୍ରକୃତି କ୍ଷେତ୍ରରେ ବସନ୍ତ ଋତୁର ସ୍ୱତନ୍ତ୍ର ମହତ୍ତ୍ୱ ରହିଛି । ସାହିତ୍ୟର ଆଦ୍ୟ ଉନ୍ମେଷ କାଳରୁ ଯୁଗେଯୁଗେ ବସନ୍ତର ପ୍ରମୁଖ ଭୂମିକା ସ୍ୱୀକାର କରିଛି କଳାସୃଷ୍ଟି । କବିଙ୍କ ଦୃଷ୍ଟିଭଂଗୀ ଅନୁଯାୟୀ ବସନ୍ତ ମଧ୍ୟ ନିଜର ରୂପ ବଦଳାଇଛି । ତାର ମାନସପିତା ତାକୁ ଯେପରି ଅଙ୍କନ କରିଛି,

ସେ ସେହିପରି ଆଙ୍କି ହୋଇଯାଇଛି । ମଧ୍ୟଯୁଗୀୟ ସାହିତ୍ୟ ଥିଲା ମୁଖ୍ୟତଃ କଳ୍ପନାର, ଶୃଙ୍ଗାରିକତାର, ଶବ୍ଦ ଐଶ୍ୱର୍ଯ୍ୟର ସାହିତ୍ୟ । ଶୃଙ୍ଗାର ଭାବ ପ୍ରକାଶରେ ବସନ୍ତର ସ୍ୱତନ୍ତ୍ର ମହିମା ରହିଛି । ତେଣୁ ମଧ୍ୟଯୁଗୀୟ ସାହିତ୍ୟରେ ବସନ୍ତ ମୁଖ୍ୟତଃ ନାୟକ-ନାୟିକାଙ୍କର କାମୋଦ୍ଦୀପକ ବିଭାବଟିଏ ରୂପେ ପରିକଳ୍ପିତ ହୋଇଛି । ବସନ୍ତ ହୋଇଛି କାମନାର, ମିଳନର ଋତୁ । ନାୟକ-ନାୟିକାଙ୍କ ବିରହାବସ୍ଥାରେ ଏହାର ପୁଣି ଭୂମିକା ସ୍ୱତନ୍ତ୍ର । ମିଳନକାମୀ, ବିରହକାତରା ପ୍ରଣୟୀ-ପ୍ରଣୟିନୀଙ୍କ ମନରେ ଯୁଗପତ୍ ଏହା ବ୍ୟଥା-ବେଦନା, ଆନନ୍ଦ-ପ୍ରସନ୍ନତା ସୃଷ୍ଟି କରିଛି । ଆଧୁନିକ ଯୁଗରେ ପ୍ରକୃତିର ରୂପ ବିଭାରେ ପରିବର୍ତ୍ତନ ଆସିବା ସଂଗେ ସଂଗେ ବସନ୍ତର ଆତ୍ମିକ ଦିଗରେ ଆସିଛି ପରିବର୍ତ୍ତନ । କେତେବେଳେ ଏହା ମାନବର ସୁଖ-ଦୁଃଖର ସାଥୀ ହୋଇଛି ତ, ପୁଣି କେତେବେଳେ ହୋଇଛି ବାର୍ତ୍ତାବହ । ପୁଣି କେତେବେଳେ ବସନ୍ତ ମଧ୍ୟରେ ଈଶ୍ୱରଙ୍କ ସୃଷ୍ଟିର ମହନୀୟ ଭାବ ପ୍ରକାଶ ହୋଇଛି । ପରିବର୍ତ୍ତିତ ସମୟ ସହିତ ପାଦ ମିଳାଇ ବସନ୍ତ ରୂପାନ୍ତରିତ ହୋଇଛି ପୁଣି ସର୍ବବ୍ୟାପୀ ସତ୍ତାଟିରେ । ମଣିଷର ମାନସିକ ଜଗତ ସହିତ ପ୍ରତିଷ୍ଠା କରିଛି ନିବିଡ଼ ଯୋଗସୂତ୍ର । ଡଃ ସାହୁ ଓଡ଼ିଆ ସାହିତ୍ୟରେ ବସନ୍ତର ଏହି ପରିବର୍ତ୍ତିତ ରୂପ ବିଭାଟିକୁ ବିଭିନ୍ନ ସୃଷ୍ଟିରେ ଲକ୍ଷ୍ୟ କରି ତାର ତୁଳନାତ୍ମକ ଚିତ୍ରଟିଏ ଉପସ୍ଥାପିତ କରିଛନ୍ତି । ଏହି ପ୍ରସଙ୍ଗରେ ସେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ, ଯଦୁମଣି, ଅଭିମନ୍ୟୁ, ଲୋକନାଥ ଦାସ, ମଧୁସୂଦନ, ରାଧାନାଥ, ଗଙ୍ଗାଧର, କାଳିନ୍ଦୀଚରଣ, ମାୟାଧର, ବୈକୁଣ୍ଠନାଥ, ପଦ୍ମଚରଣ, ରାଜକିଶୋର ପରମଗୁରୁ, ସଚ୍ଚି ରାଉତରାୟ ଆଦିଙ୍କ କବିତାରେ ବସନ୍ତ ଯେଉଁ ଆଭିମୁଖ୍ୟ ନେଇ ଉପସ୍ଥିତ ହୋଇଛି ତାର ଚମତ୍କାର ଆକଳନ କରିବା ସହିତ ଆମର ସାମାଜିକ ଓ ସାଂସ୍କୃତିକ ପରଂପରାରେ ବସନ୍ତର ଐତିହ୍ୟ, ଐଶ୍ୱର୍ଯ୍ୟ ସହିତ ତାର ସଂଭ୍ରମ ଓ ଅଭିଜାତ ରୂପଟିକୁ ତୋଳି ଧରିଛନ୍ତି ।

'ବ୍ରଜନାଥଙ୍କ ସାହିତ୍ୟରେ ପରଂପରା ଓ ପୁରୋଦୃଷ୍ଟି' ନିଶ୍ଚିତ ଭାବରେ ଏକ ଉଚ୍ଚମାନର ପ୍ରବନ୍ଧ । ଓଡ଼ିଆ ସାହିତ୍ୟରେ 'ପରଂପରା' ସହିତ 'ପୁରୋଦୃଷ୍ଟି' ଶବ୍ଦକୁ ଲୋକପ୍ରିୟ କରିବା କ୍ଷେତ୍ରରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅବଦାନ ସ୍ୱୀକାର୍ଯ୍ୟ । ସେ ତାଙ୍କର ଅନେକ ପ୍ରବନ୍ଧ ଓ ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ଗ୍ରନ୍ଥରେ ଉପରୋକ୍ତ ଶବ୍ଦଦ୍ୱୟ ଉପରେ ସୁନ୍ଦର ବିଚାରବିମର୍ଶ କରିଛନ୍ତି । ଡଃ ସାହୁ ତାଙ୍କ ପ୍ରବନ୍ଧରେ ବ୍ରଜନାଥଙ୍କ ସୃଷ୍ଟିରେ କିପରି ଅତୀତ (ପରଂପରା) ଓ ଭବିଷ୍ୟତ (ପୁରୋଦୃଷ୍ଟି)ର ଅପୂର୍ବ ସମନ୍ୱୟ ସଂଘଟିତ ହୋଇଅଛି, ତାର ଏକ ପାଣ୍ଡିତ୍ୟପୂର୍ଣ୍ଣ ତୁଳନାତ୍ମକ ବିଶ୍ଳେଷଣ ପ୍ରଦାନ କରିଛନ୍ତି ଏହି ପ୍ରବନ୍ଧରେ । ବାସ୍ତବରେ ପରଂପରା ସହିତ ପୁରୋଦୃଷ୍ଟିର ସମନ୍ୱୟ କ୍ଷେତ୍ରରେ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ବ୍ରଜନାଥ ବଡ଼ଜେନା ଥିଲେ ଏକ ବିସ୍ମୟ ଓ କ୍ରାନ୍ତିକାରୀ ସ୍ରଷ୍ଟା । ନିଜର ଐତିହ୍ୟ ଓ ପରଂପରା ପ୍ରତି ତାଙ୍କର ଯେପରି ସମ୍ମାନବୋଧ ରହିଥିଲା, ସେହିପରି ଆଗାମୀକୁ ଦେଖିବାର ସ୍ୱତନ୍ତ୍ର ସଞ୍ଚୟ ଦୃଷ୍ଟିଟିଏ

ମଧ ତାଙ୍କର ଥିଲା । ତେଣୁ ସେ ତାଙ୍କ ସୃଷ୍ଟିରେ ଆଗାମୀର ବାର୍ତ୍ତା ପ୍ରଚାର କରିବା ସଂଗେ ସଂଗେ ଏକ ସମ୍ଭାବନାମୟ ଭବିଷ୍ୟତର ରୂପ ଅଙ୍କନ କରିଛନ୍ତି । ବ୍ରଜନାଥଙ୍କ ସଂପର୍କରେ ସମୀକ୍ଷକ ଡଃ ସାହୁଙ୍କର ବକ୍ତବ୍ୟ -''ଭଞ୍ଜଙ୍କ ପରେ ବ୍ରଜନାଥ ଯେଉଁ ସଂକ୍ରାନ୍ତିର ସ୍ୱାଗତିକା ଗାଇଥିଲେ, ସେ ପଥରେ ଆଉ ଦଶ ପାଞ୍ଚଜଣ ସଂଯାତ୍ରୀ ବାହାରିଥିଲେ ରାଧାନାଥଙ୍କ ଆବିର୍ଭାବର ଅନ୍ତତଃ ଶହେବର୍ଷ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଆଉ ଏକ ଯୁଗର ସୂତ୍ରପାତ ହୋଇସାରିଥାନ୍ତା'' ବାସ୍ତବରେ ବହୁ ପରିମାଣରେ ସତ୍ୟ । ବ୍ରଜନାଥ ପରଂପରାକୁ ଅସ୍ୱୀକାର କରିନଥିଲେ । କାରଣ ପରଂପରାର ପୃଷ୍ଠଭୂମି ଉପରେ ସେ ନିର୍ମାଣ କରିବାକୁ ଚାହୁଁଥିଲେ ଆଗାମୀ ଭବିଷ୍ୟତର ନୂତନ ହର୍ମ୍ୟ । କେଳି କଳାନିଧି, ଅମ୍ବିକା ବିଳାସ, ଶ୍ୟାମରାସୋତ୍ସବ ଓ ବିଚକ୍ଷଣା ଆଦି କାବ୍ୟରେ ପରଂପରାର ପ୍ରତିଧ୍ୱନି ରହିଛି । ସମୀକ୍ଷକ ଉପରୋକ୍ତ ଚାରୋଟି କାବ୍ୟରେ କିପରି ମଧ୍ୟଯୁଗୀୟ କାବ୍ୟର ଅକ୍ଷର ସଜ୍ଜା, ଅଳଂକାର ସଂଯୋଜନା, ସାଂଗୀତିକତା, କଳ୍ପନା ପ୍ରବଣତା ଆଦି କ୍ଷେତ୍ରରେ ପରଂପରାର ଅନୁସରଣ କରିଛନ୍ତି ତାର ସୋଦାହରଣ ଆଲୋଚନା କରିଛନ୍ତି । ସେହିପରି ଗୋପୀବିଳାସ, ସମରତରଙ୍ଗ, ଦଶପୋଇ, ରାଜନଙ୍କୁ ଛଳୋକ୍ତି, ରାଜସଭା, ବିଦେଶ-ଅନୁଚିନ୍ତା, ଚତୁରବିନୋଦ ଆଦି ରଚନାବଳୀରେ ସମୀକ୍ଷକ ଲକ୍ଷ୍ୟ କରିଛନ୍ତି ନୂତନତାର ପଦଧ୍ୱନି । ଗୋପୀବିଳାସର ଷଡଗୋପୀ କେଉଁ ବ୍ରଜବାସିନୀଙ୍କର ଆତ୍ମା ନହୋଇ, ହୋଇଛନ୍ତି ଗାଁ ଗହଳିର ଜଣେ ଜଣେ ସାଧାରଣ ଗଉଡୁଣୀ । ଲୌକିକତାର ସମସ୍ତ ଆଚରଣ ମଧରେ ସେମାନେ ବନ୍ଦୀ । ବିଚକ୍ଷଣା କାବ୍ୟ ନାୟକ ମୁଖରେ ସଂଯୋଜିତ ଆଗାମୀ ଶତାବ୍ଦୀର ଭାଷା ମାଧମରେ କବି ନିଜର ଭବିଷ୍ୟତ ଦୃଷ୍ଟିଭଂଗୀକୁ ଦ୍ୟୋତିତ କରିଛନ୍ତି । 'ସମରତରଙ୍ଗ' ବାସ୍ତବରେ ଓଡ଼ିଆ ସାହିତ୍ୟରେ ପ୍ରଥମ ସମରକାବ୍ୟ । ଏଥିରେ କୌଣସି ଅଲୌକିକ ଘଟଣାର ଅବତାରଣା ପରିବର୍ତ୍ତେ ବସ୍ତବ ଘଟଣାର ବର୍ଣ୍ଣନା ସହିତ ଇତିହାସର ନବନିର୍ମାଣ କରାଯାଇଛି । ସେହିପରି 'ଚତୁରବିନୋଦ' ଆଗାମୀ ଗଦ୍ୟ ସାହିତ୍ୟର ବିକାଶ ପାଇଁ ବାଟ ଫିଟାଇଛି । ପରିବେଷଣଗତ ଚାତୁର୍ଯ୍ୟ, ବିଭିନ୍ନ ଭାଷାର ମିଳନ ଓ ମୌଳିକତାରେ ବ୍ରଜନାଥଙ୍କ ବିଶେଷତ୍ୱ ଏଥିରେ ସ୍ୱତଃ ବାରି ହୋଇପଡ଼େ । ବ୍ରଜନାଥଙ୍କ ପ୍ରତିଭାର କଳନା କରି ଯଥାର୍ଥରେ ସମୀକ୍ଷକ କହିଛନ୍ତି-''ବ୍ରଜନାଥ ସଂପୂର୍ଣ୍ଣ ନୂତନ ବା ସଂପୂର୍ଣ୍ଣ ସ୍ୱତନ୍ତ୍ର ନୁହନ୍ତି-ଜାତୀୟ ସାହିତ୍ୟର ଆଧାର, ଉଧାର ଓ ଉଦ୍ଧାର ଉପରେ ବ୍ରଜନାଥଙ୍କ ସୃଷ୍ଟି ପ୍ରତିଷ୍ଠିତ । ପ୍ରାଚୀନ ସାହିତ୍ୟର ଲୁପ୍ତ ବିଭାବ ଓ ବିଭବର ସେ ଉଦ୍ଧାରକ । ଭାରତୀୟ ସାହିତ୍ୟ ତାଙ୍କୁ ନୂତନ କିଛି ସଂଯୋଜନା ପାଇଁ ଉଧାର ଦେଇଛି । ଏସବୁ ସତ୍ତ୍ୱେ ସେ ମୌଳିକ । ସେ ଯୁଗର ସାହିତ୍ୟ ପରିଧି ଭିତରେ ସେ ଏକ ନୂତନ ସାଧକ । ପଦ୍ୟ ପ୍ରାଧାନ୍ୟମୟ ଯୁଗରେ ସେ ଗଦ୍ୟସ୍ରଷ୍ଟା । ତାଙ୍କର କାବ୍ୟିକ ଆବେଗ, ରସବୋଧ, ବୈପ୍ଲବିକ ଚିନ୍ତାଧାରା ଆଗାମୀ ପାଇଁ ଏକ ଶୁଭ ସମ୍ବୋଧନ ।''

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ପାଣ୍ଡୁଲିପି' ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରେ ।' ପାଣ୍ଡୁଲିପିରେ ସମୟର ସ୍ପନ୍ଦନ' ପ୍ରବନ୍ଧରେ ଶ୍ରୀ ରାଉତରାୟଙ୍କ କବିପ୍ରତିଭାର କେବଳ ମୂଲ୍ୟାୟନ କରାଯାଇ ନାହିଁ, ପରନ୍ତୁ ସମସାମୟିକ ବିଶ୍ୱରେ ସଂଘଟିତ ବିଭିନ୍ନ ଚିନ୍ତା-ଚେତନାକୁ ଆଲୋଚନା ପର୍ଯ୍ୟାୟଭୁକ୍ତ କରାଯାଇ ଆଧୁନିକ ସାହିତ୍ୟର ଭିତ୍ତିପାଇଁ ଯେଉଁ ଚିନ୍ତାଧାରା ଓ ବିପ୍ଳବ ମୁଖ୍ୟତଃ ଦାୟୀ, ତାର ଏକ ପ୍ରାମାଣିକ ତଥ୍ୟ ଉପସ୍ଥାପନ କରାଯାଇଛି ପ୍ରବନ୍ଧଟିରେ । ବିଭିନ୍ନ ମୁକ୍ତି ସଂଗ୍ରାମ, ଶିଳ୍ପବିପ୍ଳବ, ବିଶ୍ୱଯୁଦ୍ଧ, ଅକ୍ଟୋବର ବିପ୍ଳବ ଆଦି ସମଗ୍ର ପୃଥିବୀର ରଙ୍ଗ ବଦଳାଇ ଦେବା ସଂଗେସଂଗେ ସାହିତ୍ୟରେ କିପରି ନୂତନ କ୍ରାନ୍ତିର ସୂତ୍ରପାତ କରିଛି ତାହାକୁ ଅତ୍ୟନ୍ତ ସୁସଂଗଠିତ ରୂପେ ଶୃଙ୍ଖଳିତ କରି ସଚ୍ଚି ରାଉତରାୟଙ୍କ ବୈପ୍ଳବାତ୍ମକ ଚିନ୍ତାଧାରାକୁ ଯଥାସମ୍ଭବ ବାସ୍ତବ ଦୃଷ୍ଟିକୋଣରୁ ଆକଳନ କରାଯାଇଛି ପ୍ରବନ୍ଧଟିରେ । ଶ୍ରୀ ରାଉତରାୟଙ୍କ କବିତା ରଚନାର ପୃଷ୍ଠଭୂମିରେ ରହିଥିବା ଅନ୍ୟାନ୍ୟ ଐତିହାସିକ ଘଟଣାବଳୀକୁ ମଧ୍ୟ ସୁଚିନ୍ତିତ ଢଙ୍ଗରେ ଉପସ୍ଥାପିତ କରାଯାଇଛି । ପ୍ରବନ୍ଧର ଉପସଂହାରରେ 'ପାଣ୍ଡୁଲିପି' କବିତା ଗ୍ରନ୍ଥ ସଂପର୍କରେ ମତଦେବାକୁ ଯାଇ ସମୀକ୍ଷକ ଯଥାର୍ଥରେ କହିଛନ୍ତି- ''ଜୀବନ ପାଇଁ ସଂଗ୍ରାମ, ପ୍ରଗତି ପାଇଁ ପ୍ରଳୟ, ପ୍ରତିଷ୍ଠା ପାଇଁ ପ୍ରଚେଷ୍ଟା, କର୍ମ ପାଇଁ ଜୀବନ, ଜୀବନ ପାଇଁ କର୍ମ ତାଙ୍କ ସୃଷ୍ଟିର ମର୍ମବାଣୀ । ସମୟ ତାଙ୍କୁ ସଂଗ୍ରାମୀ କରିଛି, ସାମ୍ୟବାଦୀ କରିଛି, ଉଦାର କରିଛି, ଉତ୍ତାଳ କରିଛି । ସେଇ ବିପ୍ଳବୀ, ସାମ୍ୟଦର୍ଶୀ, ଉଦାର ଜୀବନର ବଳିଷ୍ଠ ସ୍ୱରର ଏକ ପ୍ରତିଧ୍ୱନି ହେଉଛି 'ପାଣ୍ଡୁଲିପି' ।

ସଂକଳନର ଶେଷ ଦୁଇଟି ପ୍ରବନ୍ଧ ଗୋପାଳ ଚନ୍ଦ୍ର ପ୍ରହରାଜ ରମ୍ୟରଚନା 'ଭାଗବତଟୁଙ୍ଗୀରେ ସନ୍ଧ୍ୟା' ଓ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଅସଂପୂର୍ଣ୍ଣ ଉପନ୍ୟାସ 'କଣାମାମୁଁ' ଉପରେ ଆଧାରିତ । 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା ଏକ ଅଧ୍ୟୟନ'' ଦୀର୍ଘ ପ୍ରବନ୍ଧଟିଏ । ଏଥିରେ ପ୍ରହରାଜ 'ଭାଗବର୍ତ ଟୁଙ୍ଗୀରେ ସନ୍ଧ୍ୟା'ର ବିଭିନ୍ନ ଦିଗକୁ ଆଲୋଚନା ପରିସରଭୁକ୍ତ କରାଯାଇଛି । ପ୍ରହରାଜଙ୍କ ସୃଷ୍ଟି ଏକ ଖିଆଲରୁ ନୁହେଁ, ବରଂ ଏକ କର୍ତ୍ତବ୍ୟବୋଧରୁ ସୃଷ୍ଟି । ଏହି ରମ୍ୟରଚନାରେ ରମ୍ୟରଚକଙ୍କ ସାମାଜିକ ଆଭିମୁଖ୍ୟ ସହିତ ସାଂପ୍ରତିକ ଘଟଣାବଳୀକୁ କିପରି ରୂପ ପ୍ରଦାନ କରାଯାଇଛି, ତାର ମନନଶୀଳ ଆଲୋଚନା ରହିଛି । ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ସନ୍ଧିକାଳର ବିଭିନ୍ନ ଘଟଣାକୁ ରମ୍ୟରଚନାର ବିଭିନ୍ନ ଚରିତ୍ର, ପରିବେଶ ଓ ଘଟଣାବଳୀ ସହିତ ସଂଯୋଜିତ କରି ସମୀକ୍ଷକ ନିଜ ସୂକ୍ଷ୍ମ ଦୃଷ୍ଟିକୋଣର ପରିଚୟ ଦେଇଛନ୍ତି । ଚରିତ୍ର ଚିତ୍ରଣ, ସାମାଜିକ ଦୋଷ ଦୁର୍ବଳତା, ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଦୃଷ୍ଟିଭଂଗୀ, ଧର୍ମ ଓ ସଂସ୍କୃତି ପ୍ରତି ଦୃଷ୍ଟିକୋଣ, ଜାତୀୟତା, କବିତ୍ୱ, ହାସ୍ୟ ରସିକତା, ଉତ୍କଣ୍ଠା ସୃଷ୍ଟି ଆଦି ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନା କରି ପ୍ରହରାଜଙ୍କ ସୃଷ୍ଟିର ଉଚିତ୍ ମୂଲ୍ୟାଙ୍କନ କରାଯାଇଛି । ସେହିପରି 'କଣାମାମୁଁ' ଉପନ୍ୟାସରେ ଲେଖକଙ୍କ ବ୍ୟକ୍ତିତ୍ୱ,

ଜୀବନାଦର୍ଶ, ସମସାମୟିକ ବିଭିନ୍ନ ଘଟଣାବଳୀ କିପରି କଳାତ୍ମକ ଢଙ୍ଗରେ ପରିବେଶିତ ହୋଇଛି, ତାର ଏକ ବାସ୍ତବଚିତ୍ର ସମୀକ୍ଷକ ଏଥିରେ ପ୍ରଦାନ କରିଛନ୍ତି । ଉପନ୍ୟାସର କଥାବସ୍ତୁ ମାଧ୍ୟମରେ ଲେଖକଙ୍କ ମାନବିକତାବୋଧ, ଆଦର୍ଶବାଦୀ ଦୃଷ୍ଟିକୋଣ, ସାମାଜିକ ପ୍ରତିବଦ୍ଧତା, ଜାତୀୟବାଦୀ ବିଚାରଧାରା କିପରି ନୂଆରୂପ ଓ ନୂଆ ଢଙ୍ଗରେ ରସାଣିତ ହୋଇ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ମାଇଲ ସ୍ତମ୍ଭରେ ପରିଣତ ହୋଇଛି, ତାର ସୂକ୍ଷ୍ମାତିସୂକ୍ଷ୍ମ ବିଚାର ବିଶ୍ଳେଷଣ ରହିଛି ଏହି ପ୍ରବନ୍ଧଟିରେ । ପ୍ରତି ସୃଷ୍ଟି ଅନ୍ତରାଳରେ ସ୍ରଷ୍ଟାର ବ୍ୟକ୍ତିତ୍ୱ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ସେହି ଭୂମିକାର ଔଚିତ୍ୟ ଜାଣି ନପାରିଲେ ଆଲୋଚନା ହୋଇଥାଏ ନୀରସ ● ଓ ପ୍ରଭାବଶୂନ୍ୟ । ଡଃ ସାହୁ ତାଙ୍କର ପ୍ରତିଟି ଆଲୋଚନାରେ ନିଜ ସୂକ୍ଷ୍ମବିଚାର ବୋଧର ପରିଚୟ ଛାଡ଼ିଯାଇଛନ୍ତି । ସ୍ରଷ୍ଟାର ସୃଷ୍ଟି ପର୍ଯ୍ୟାୟଲୋଚନା ସମୟରେ ସମାଲୋଚକର ଯେଉଁ ଔଚିତ୍ୟବୋଧ, ଗଭୀର ଅଧ୍ୟୟନ, ସୃଷ୍ଟିକୁ ଅନୁଭବ କରିବାର ସମ୍ବେଦନଶୀଳ ମନୋଭାବ ଓ ସୃଜନଶୀଳତାର ଆବଶ୍ୟକତା ରହିଛି, ତାହା ସଂପୂର୍ଣ୍ଣ ଭାବରେ ରହିପାରିଛି ଡଃ ସାହୁଙ୍କ ସମୀକ୍ଷା ମାନଙ୍କରେ । ସେହି କାରଣରୁ ତାଙ୍କର ପ୍ରତିଟି ଆଲୋଚନା ଜୀବନ୍ତ, ବୈଜ୍ଞାନିକ ବିଚାରବୋଧ ସମ୍ମତ ତଥା ମନନଶୀଳ । 'ଓଡ଼ିଆ ସାହିତ୍ୟର ସୃଷ୍ଟି-ସଂପଦ' ସମୀକ୍ଷାଗ୍ରନ୍ଥଟି ସେହି ବିଚାରଧାରାର ଏକ ଚମତ୍କାର ଫଳଶ୍ରୁତି ।



ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ଭଞ୍ଜବିହାର-୭୬୦୦୦୭

# ବ୍ୟକ୍ତି ଓ ବୃତ୍ତି : ଶ୍ରଦ୍ଧେୟ ବାସୁବାବୁ

ପ୍ର. ନିତ୍ୟାନନ୍ଦ ଶତପଥୀ

ବାସୁବାବୁ ରେଭେନ୍‌ସା କଲେଜରେ ମୋର ତଳଶ୍ରେଣୀରେ ପଢୁଥିବାରୁ ମୋତେ ଶେଷଯାଏ ଭାଇନା ବୋଲି ଡାକୁଥିଲେ । ମୋ ପରି ସେ ମଧ୍ୟ ଆଇ.ଏସ୍‌ସି. ପଢ଼ି ଅର୍ଥାଭାବ ଯୋଗୁ ପରେ ଓଡ଼ିଆ ଅନର୍ସ ନେଇ ବି.ଏ. ପଢ଼ିଥିଲେ । ମୁଁ ମୋ ବ୍ୟାଚ୍‌ରେ ସର୍ବୋଚ୍ଚ ନମ୍ବର ରଖି ଏମ୍.ଏ. ପାଶ୍ କରିଥିଲେବି ଗୋଲ୍‌ଡ଼ମେଡ଼ାଲ ପାଇବାରୁ ବଂଚିତ ହୋଇଥିଲି ଭିନ୍ନ କାରଣରୁ । ମୋ ପୂର୍ବବ୍ୟାଚ୍ ଅର୍ଥାତ୍ ୧୯୬୧ ମସିହାର ଏମ୍.ଏ. ଛାତ୍ର ଆଶୁତୋଷ ବାବୁ କୌଣସି କାରଣରୁ ସେ ବର୍ଷ ପରୀକ୍ଷା ଡ୍ରପ୍ କରି ଆମ ସହିତ ୧୯୬୨ ରେ ପରୀକ୍ଷା ଦେଲେ ଓ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ । କିନ୍ତୁ ସେ ଥରେ ପରୀକ୍ଷା ଡ୍ରପ୍ କରିଥିବାରୁ ଗୋଲ୍‌ଡ଼ମେଡ଼ାଲ ପାଇଲେ ନାହିଁ । ବାସୁ ବାବୁ କିନ୍ତୁ ଥିଲେ ତାଙ୍କ ବ୍ୟାଚ୍ (୧୯୬୩) ରେ ସର୍ବୋତ୍ତମ ଛାତ୍ର-ତେଣୁ ଗୋଲ୍‌ଡ଼ ମେଡ଼ାଲିଷ୍ଟ । ଆମେ ଏକାଦିନ ଅର୍ଥାତ୍ ୧୯୬୯ ଜୁଲାଇ ପହିଲାରେ ନିଜନିଜର ପୂର୍ବ ଅଧ୍ୟାପନା ବୃତ୍ତି ଛାଡ଼ି ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଯୋଗ ଦେଇଥିଲୁ । ରିଡ଼ର୍ ଭାବରେ ଯୋଗ ଦେଇଥିଲେ ଡକ୍ଟର ବଂଶୀଧର ମହାନ୍ତି । ସେ ବିଭିନ୍ନ ସରକାରୀ କଲେଜରେ 'ବାସୁବାବୁଙ୍କ ସହକର୍ମୀ ଥିବାରୁ ସ୍ୱାଭାବିକ ଭାବେ ବାସୁବାବୁଙ୍କ ପ୍ରତି ଥିଲେ ଅଧିକ ସହାନୁଭୂତିଶୀଳ । ମୁଁ ବୟସରେ ଓ ବୃତ୍ତିରେ ସିନିଅର୍ ଥିଲେ ବି ବାସୁବାବୁ ମୋତେ ଟପି ବିଭାଗୀୟ ସୋପାନ ଆରୋହଣ କରି କରି ଯାଉଥିଲେ ଓ ମୁଁ ତାଙ୍କୁ ଦ୍ରୁତ ଅନୁସରଣ କରୁଥିଲି । ଫଳରେ ଆମ ଭିତରେ ବୃତ୍ତିଗତ ପ୍ରତିଯୋଗିତା ଓ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି ହେଉଥିଲା ।

ବାସୁବାବୁଙ୍କ ସହିତ ସାମୟିକ ମତାନ୍ତର ହେଉଥିଲେବି ଶ୍ରଦ୍ଧା ଓ ସମ୍ମାନ କେବେବି ଊଣା ହୋଇନାହିଁ । ବାସୁବାବୁ ଥିଲେ ଓଡ଼ିଆ ବିଭାଗ ପାଇଁ ଏକାନ୍ତ ଅପରିହାର୍ଯ୍ୟ ମେରୁଖୁଣ୍ଟି । ଛାତ୍ରଛାତ୍ରୀମାନଙ୍କ ପାଇଁ ଅଧିକ ସମୟ ବ୍ୟୟ କରି ସେ ସଂପର୍କ ସ୍ଥାପନ କରୁଥିଲେ, ସେମାନଙ୍କୁ ସେମାନଙ୍କ ନିକ୍‌ନେମ୍‌ରେ ଡାକୁଥିଲେ । ସେମାନଙ୍କ ବାପମାଆ ପରିବାର ଓ ଗ୍ରାମର ସବିଶେଷ ବିବରଣୀ 'ସ୍ମୃତି'ରେ ଟିପି ରଖୁଥିଲେ । ସେମାନଙ୍କୁ 'ତୁ' ବୋଲି ସମ୍ବୋଧନ କରୁଥିଲେ । ମୁଁ କିନ୍ତୁ ଛାତ୍ରଛାତ୍ରୀଙ୍କୁ 'ତୁମେ' ବୋଲି କହୁଥିଲି । ସେମାନେ ମୋତେ ଗୁରୁପରି

ଦୂରରୁ ଭୟ କରୁଥିଲେ-ବାସୁବାବୁଙ୍କୁ ସଖା ଓ ଭାଇ ଭାବରେ ଗ୍ରହଣ କରି ନେଉଥିଲେ । ଏତେ ପିଲାଙ୍କ ନାମ ଓ ଡାକନାମ ସେ ମନେ ରଖିପାରୁଥିବାରୁ ପିଲାମାନେ ତାଙ୍କର ଅଧିକ ଆପଣାର ହୋଇଉଠୁଥିଲେ । ବେଳେବେଳେ ବ୍ୟାଜ-ସମ୍ମାନ ମଧ୍ୟ ପ୍ରଦର୍ଶନ କରୁଥିଲେ କିଛି ମତଲବୀ ଛାତ୍ର । ସେପରି ପିଲାଙ୍କ ପାଇଁ ବାସୁବାବୁଙ୍କ ମନରେ ବେଳେବେଳେ ଶୋକ ଓ ସନ୍ତାପ ଦେଖାଯାଉଥିଲା । ସେ ସେମାନଙ୍କୁ ସଂଶୋଧନ କରିବାକୁ ଚେଷ୍ଟା କରୁଥିଲେ । କୌଣସି ମନ୍ଦଗାମୀ ଛାତ୍ର ବା ଛାତ୍ରୀ ପାଇଁ ବାସୁବାବୁ ଦୁଃଖରେ ମ୍ରିୟମାଣ ହୋଇପଡୁଥିଲେ । ତାଙ୍କୁ ଠିକ୍ ବାଟକୁ ଆଣିବାକୁ ନାନାଦି ଉପକ୍ରମ କରୁଥିଲେ । ମୁଁ କଟକରୁ ବସ୍‌ରେ ଯିବା ଆସିବା କରୁଥିବାରୁ ହଷ୍ଟେଲରେ ରହୁଥିବା ଛାତ୍ରଛାତ୍ରୀମାନଙ୍କ ସହିତ କ୍ଲାସ୍‌ରୁମ୍ ବ୍ୟତୀତ ଭିନ୍ନ ସଂପର୍କ ନଥିଲା । ମୋତେ ଛାତ୍ରଛାତ୍ରୀମାନେ କାହିଁକି ଡରୁଥିଲେ ତାର କାରଣ ଅବଧି ମୁଁ ନିର୍ଣ୍ଣୟ କରିପାରି ନାହିଁ । କ'ଣ ଥିଲା ବ୍ୟବଧାନ ? ଗୁରୁଶିଷ୍ୟ ସଂପର୍କରେ କିଛି ବ୍ୟତିକ୍ରମ ? ବାସୁବାବୁ ଏ ଦିଗରୁ ଥିଲେ ଏକାନ୍ତ ଆଦର୍ଶସ୍ଥାନୀୟ । ତେଣୁ ଛାତ୍ରଛାତ୍ରୀମାନେ ନିଶଙ୍କଭାବେ ତାଙ୍କ ସହିତ ସୁଖଦୁଃଖ ହେଉଥିଲେ ।

ବାସୁବାବୁ ଥିଲେ ଭାଷାତତ୍ତ୍ୱ ଅଧ୍ୟୟନ ଓ ଅଧ୍ୟାପନାରେ ବିଚକ୍ଷଣ । ତାଙ୍କ ସ୍ପେଶାଲ୍ ପେପର୍‌ରେ ଛାତ୍ରମାନେ ଅଙ୍କ ଶାସ୍ତ୍ର ପରି ନମ୍ବର ପାଉଥିବାରୁ ସ୍ୱାଭାବିକ ପ୍ରଥମ ଶ୍ରେଣୀ ପାଇବାର ପ୍ରତିଯୋଗିତାରେ ମୁଁ ପଢ଼ାଉଥିବା ଆଧୁନିକ କବିତା ସ୍ପେଶାଲ ପତ୍ର ବରାବର ପଛରେ ପଡ଼ିରହୁଥିଲା । କିନ୍ତୁ ତାଙ୍କର ବା ମୋର ପଢ଼ାଉଥିବା ବିଶେଷପତ୍ରକୁ ସବୁବେଳେ ସଂଖ୍ୟା ଦୃଷ୍ଟିରୁ ପଛରେ ପକେଇଦେଉଥିଲା 'ଧର୍ମଧାରା' ନାମକ ପାଠ୍ୟକ୍ରମ । ବିଭାଗମୁଖ୍ୟ ବଂଶୀବାବୁ ଏ ପାଠ୍ୟକ୍ରମର ଦାୟିତ୍ୱରେ ଥିଲେ ଓ ପାଠ୍ୟକ୍ରମଟି ଖୁବ୍ ସରଳ ଓ ନିର୍ଦ୍ଦିଷ୍ଟ ଥିବାରୁ ଛାତ୍ରଛାତ୍ରୀମାନେ ଅଧିକ ସଂଖ୍ୟାରେ ପ୍ରଥମଶ୍ରେଣୀ ପାଉଥିଲେ । କିନ୍ତୁ ଏତେ ସଂଖ୍ୟାରେ ପ୍ରଥମଶ୍ରେଣୀ ଦିଆଯଉଥିବାରୁ ଆମ ବିଭାଗ ପ୍ରତି ବିଶ୍ୱବିଦ୍ୟାଳୟର ଅନ୍ୟ ଭାଷା ବିଭାଗମାନେ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ । ମୁଁ ଓ ବାସୁ ବାବୁ ସମଭାବରେ ଅନୁଭବ କରୁଥିଲୁ ଆମର ବିଭାଗୀୟ ମାନ ହ୍ରାସ ହେଉଛି କ୍ରମାଗତ ଭାବେ । କିନ୍ତୁ ସମୟର ସ୍ରୋତକୁ ରୋକିପାରୁନଥିଲୁ । ଏପରିକି ବିଭାଗକୁ ଆସୁଥିବା ଖୁବ୍ ମେଧାବୀ ବିଚକ୍ଷଣ ଛାତ୍ରମାନେ ମଧ୍ୟ ଆଧୁନିକ ସାହିତ୍ୟ ବା ଭାଷାତତ୍ତ୍ୱ ପରି ଅଧ୍ୟୟନ ପ୍ରତି କାର୍ଯ୍ୟଘେନା-ବିମୁଖତା ପ୍ରକାଶ କରୁଥିବାରୁ ଆମେ ଓଡ଼ିଆ ସାହିତ୍ୟର ଭବିଷ୍ୟତ ପାଇଁ ପ୍ରମାଦ ଗଣୁଥିଲୁ । ବାସୁବାବୁଙ୍କ ଅଧ୍ୟାପନା ପ୍ରଣାଳୀ ଥିଲା ଏକାନ୍ତ ଅନୁସରଣୀୟ । ଭାଷାତତ୍ତ୍ୱ ଅଧ୍ୟୟନକୁ ସରଳ କରିବାକୁ ସେ ଅନେକଗୁଡ଼ିଏ ଉପଯୋଗୀ ପୁସ୍ତକ ରଚନା କଲେ; ସେସବୁ କ୍ରମେ ପରୀକ୍ଷା ଦୃଷ୍ଟିରୁ ପିଲାମାନଙ୍କ ପାଇଁ ହୋଇଉଠିଲା ଅପରିହାର୍ଯ୍ୟ । ବାସୁ ବାବୁ କିନ୍ତୁ ଏମ୍.ଏ. ଛାତ୍ର ଥିଲାବେଳେ ମୋରି ପରି ରାଧାନାଥ-ଉତ୍ତର ଆଧୁନିକ ଓଡ଼ିଆ ସାହିତ୍ୟ'' କୁ ନିଜର ସ୍ପେଶାଲ ପେପର୍ ଭାବେ

ବାଛିଥିଲେ । ତାହାର ଉପଯୋଗ ପାଇଁ ସେ କାହିଁକି ଉତ୍ତର କାଳରେ ମନ ଦେଲାଇଲେ ନାହିଁ-ତା ମୁଁ ଜାଣେ ନାହିଁ । ବୋଧହୁଏ ସମୟ କ୍ରମେ ବିଭାଗରେ ବିଭିନ୍ନ ବିଷୟରେ ଆମେ 'ସ୍ପେଶାଲିଷ୍ଟ' ହୋଇଯାଇଥିବାରୁ ଆଉ ଟ୍ରାକ୍ ପରିବର୍ତ୍ତନ ପାଇଁ ସେ ଅଭିଳାଷୀ ନଥିଲେ । ନଚେତ୍ ଭାଷାତତ୍ତ୍ୱ ପରି ସମାନ ବ୍ୟୁତ୍ପତ୍ତିରେ ସେ ଆଧୁନିକ ଓଡ଼ିଆ କବିତା ବିଶେଷ ପତ୍ର ମଧ ପଢ଼ାଇ ପାରିଥାନ୍ତେ । ମୁଁ କିନ୍ତୁ ଭାଷାତତ୍ତ୍ୱ ପ୍ରତି ଅମନଯୋଗୀ ଥିବାରୁ ତାଙ୍କ ପରି ପଢ଼ାଇ ପାରି ନଥାନ୍ତି । ତେବେ ମୋ ବିଷୟକୁ ଅଧ୍ୟୟନ କରିବାକୁ ଛାତ୍ରଛାତ୍ରୀମାନେ ସଶଙ୍କ ଥିଲେ । ଖୁବ୍‌ବେଶୀ ହେଲେ ପରୀକ୍ଷକମାନେ ଆଧୁନିକ କବିତାରେ ୬୫% ନମ୍ବର ଦେବା ବେଳକୁ ଧର୍ମଧାରାରେ ୮୫% ଓ ଭାଷାତତ୍ତ୍ୱରେ ୭୫% ନମ୍ବର ଅନାୟାସରେ ମିଳିଯାଉଥିଲା । ତେଣୁ ମୋ କ୍ଲାସ୍‌ରେ ତିନିଚାରିଜଣ ଛାତ୍ରଛାତ୍ରୀ ଥିବାବେଳେ ବାସୁ ବାବୁ ଓ ବଂଶୀବାବୁଙ୍କ କ୍ଲାସ୍ ଉଛୁଳି ଉଠୁଥିଲା । ଆମ ତିନିଜଣଙ୍କ ସହିତ ଚତୁର୍ଥ ଭାବେ କ୍ରମେ ଡକ୍ଟର କୃଷ୍ଣଚରଣ ସାହୁ ରାଞ୍ଚିରୁ ଆସି ଯୋଗଦେଲେ । ପ୍ରାଚୀନ ସାହିତ୍ୟରେ ତାଙ୍କର ଖୁବ୍ ଦଖଲ ଥିଲା । ତେଣୁ ବିଭାଗର ଢାଞ୍ଚା (Structure) କ୍ରମେ ପ୍ରାଚୀନ, ଆଧୁନିକ ଓ ଭାଷାତତ୍ତ୍ୱ-ଏହିପରି ତିନିଭାଗରେ ବିଭକ୍ତ ହୋଇଗଲା । ବାସୁବାବୁ ଛାତ୍ରମାନଙ୍କୁ ଖୁବ୍ ଆଦର କରିଛନ୍ତି । ପରେ ସେମାନଙ୍କ ମଧ୍ୟରୁ କେହିକେହି ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବାରୁ ଖୁବ୍ ତାରିଫ୍ କରିଛନ୍ତି । ସମ୍ବର୍ଦ୍ଧନା ସଭାରେ ସ୍ୱତଃ ଯୋଗ ଦେଇଛନ୍ତି- ଏ ଉଦାରତାରେ ମୁଁ ମୁଗ୍ଧ ହୋଇଛି ।

ଅତିରିକ୍ତ ଉତ୍ସାହରେ ଆମେ ଚାରିଜଣ ଅଧ୍ୟାପକ ବିଭାଗକୁ ସବୁମନ୍ତେ ଅନ୍ୟ ବିଭାଗମାନଙ୍କ ସହିତ ସମକକ୍ଷ କରିବାକୁ ଲାଗିପଡ଼ିଲୁ । ବାସୁବାବୁ ମୂଳରୁଥିଲେ ସେମିନାର ପାଠାଗାର ଦାୟିତ୍ୱରେ । କିନ୍ତୁ ବିଭାଗମୁଖ୍ୟଙ୍କ ନିର୍ଦ୍ଦେଶମତେ ପରିଡ଼ା ଲାଇବ୍ରେରୀରୁ ନୂଆବହି କିଛି କିଛି ଆଣି ଆମେ ସେମିନାର ଇନ୍‌ଚାର୍ଜଙ୍କୁ ଦେଉଥିଲୁ । ସେ ବିଭାଗର ସବୁଠାରୁ ବଡ଼ ରୁମ୍‌ଟିକୁ ଦଖଲ କରି ସେଇଠି ସେମିନାର ପାଠାଗାର ପରିଚାଳନା କରୁଥିଲେ । ବାସୁ ବାବୁ ପିଲାଙ୍କ ପ୍ରତି ଥିଲେ ଖୁବ୍ ଉଦାର । ବିଭିନ୍ନ ସମୟରେ ତାଙ୍କଠାରୁ ପିଲାମାନେ ସେମିନାର ବହି ନେଇ ଫେରଉନଥିଲେ । ସେପରି ପିଲାଙ୍କ ପରୀକ୍ଷାଫଳ ସାମୟିକ ସ୍ଥଗିତ କରିଦେବାର ଅଧିକାର ବିଭାଗମୁଖ୍ୟଙ୍କ ହାତରେ ଥିଲେବି ଡକ୍ଟର ବଂଶୀଧର ମହାନ୍ତି କେବେ ବି ସେ ଅଧିକାର ପ୍ରୟୋଗ କରିନାହାନ୍ତି । ବାସୁବାବୁ ନିଶ୍ଚୟ ସେମିନାରକୁ ଅଣାଯାଇଥିବା ବହିର ଷ୍ଟକ୍ ରେଜିଷ୍ଟାର ଓ ଇସୁ ରେଜିଷ୍ଟାର ମେଣ୍ଟେନ୍ କରିବା କଥା । ମଝିରେ ଜଣେ ଛାତ୍ର ଓ ଜଣେ ଅଧ୍ୟାପକଙ୍କ ହାତକୁ କୌଣସି ବାଧ୍ୟବାଧକତାରୁ ସେ ସେମିନାର ବହିର ଗୋଟିଏ ଗୋଟିଏ ଆଲମିରା ହୁଏତ ହସ୍ତାନ୍ତର କରିଥିଲେ । ସେମିନାର ବହିର ପଞ୍ଜୀକରଣ ଓ ଷ୍ଟକ୍ ଯାଞ୍ଚ ମଝିରେ ମଝିରେ ହେବା କଥା । କିନ୍ତୁ କେଜାଣି କାହିଁକି ନିଜେ ବିଭାଗ ମୁଖ୍ୟ ଥିଲାବେଳେ ତାହା କରାଇଲେ ନାହିଁ । ଆମେ ଦୁଇଜଣ ଅଧ୍ୟାପକ ମୁଁ ଓ ବୈଷ୍ଣବଚରଣ ସାମଲ ନିଜନିଜର

ବିଶେଷପତ୍ର ଅଧ୍ୟାପନା ପାଇଁ ତତ୍ ସଂପର୍କୀୟ ଆବଶ୍ୟକ କିଛି ବହିର ଗୋଟିଏ ଗୋଟିଏ ଆଲମିରା ନିଜ ପ୍ରକୋଷ୍ଠରେ ରଖି ଛାତ୍ରମାନଙ୍କୁ ଦବାନବା କରୁଥିଲୁ । ତାଙ୍କ ଅବସରର ଦୁଇବର୍ଷ ପୂର୍ବରୁ ୧୯୯୭ ଅକ୍‌ଟୋବରରେ ମୁଁ ଅବସର ନେଇଥିଲେବି ସେମିନାର ବହି ବିଷୟରେ ସେ ତଥାପି ନୀରବ ରହିଲେ । ~~ମୋ ପାଖରେ ଆଧୁନିକ କବିତା ପଢ଼ାଇବା ପାଇଁ ଥିବା ବହି ବିଷୟରେ ସେ ତଥାପି ନୀରବ ରହିଲେ~~ । ମୋ ପାଖରେ ଆଧୁନିକ କବିତା ପଢ଼ାଇବା ପାଇଁ ଥିବା ବହି ସମେତ ଆଲମିରାଟିକୁ ମୁଁ ଯଥେଷ୍ଟ ଆଗରୁ ହସ୍ତାନ୍ତର କରିଦେଇ ତତ୍‌କାଳୀନ ବିଭାଗମୁଖ୍ୟ ବୈଷ୍ଣବ ବାବୁଙ୍କଠାରୁ ଓ ଅବସର କାଳରେ ବିଭାଗମୁଖ୍ୟ ଡଃ ନିତ୍ୟାନନ୍ଦ ନାୟକଙ୍କଠାରୁ କ୍ଲିୟରାନ୍‌ସ ସାର୍ଟିଫିକେଟ ହାସଲ କରିଥିଲି । ସେତେବେଳେ ମଧ ବାସୁବାବୁ ମୋ ଉପରେ ବହିଥିବା କଥା ଉଠାଇ ନଥିଲେ । ହଠାତ୍ ମୁଁ ଓ ସେ ବିଭାଗରୁ ଗଲାପରେ ତାଙ୍କର ପ୍ରିୟ ଛାତ୍ର ଓ ପରବର୍ତ୍ତୀ ସମୟର ଜଣେ ବିଭାଗ ମୁଖ୍ୟ ଏ ସମସ୍ୟା ଉଠାଇଲେ । କିନ୍ତୁ ସେ ତଥାପି ବହି ଯାଞ୍ଚ କରି ନଥିଲେ । ଖବର କାଗଜରେ ଓ ବିଧାନ ସଭା ଗୃହରେ ପ୍ରକାଶ ପାଇଲା ଯେ ବାସୁଦେବ ସାହୁ, ନିତ୍ୟାନନ୍ଦ ଶତପଥୀ, ଆଶୁତୋଷ ପଟ୍ଟନାୟକ, ବଂଶୀଧର ମହାନ୍ତି ଓ କୃଷ୍ଣଚରଣ ସାହୁ ସେମିନାର ବହି ନେଇଯାଇଛନ୍ତି । ଏ ସମ୍ବାଦ ମୁଁ ଅନେକଦିନଯାଏ ପଢ଼ିନଥିଲି; କିନ୍ତୁ ବାସୁ ବାବୁଙ୍କୁ ଖୁବ୍ ଆଘାତ ଲାଗିଥିଲା । ସେ ମଧ ମୋ ପରି ଉତ୍ସାହରେ ମୂଳଲାଇବ୍ରେରୀରୁ ସେମିନାର ପାଇଁ ବିଭିନ୍ନ ସମୟରେ ଅନେକ ବହି ଆଣିଥିଲେ । ପିଲାମାନଙ୍କ ଉପରେ ଆମର ଯଥେଷ୍ଟ କର୍ତ୍ତୃତ୍ୱ ରହୁନଥିବାରୁ ଅନେକ ଚତୁର ଛାତ୍ର ସେମିନାର ବହି ନେଇ ଫେରଉ ନଥିଲେ । ଏପରିକି ସମୟ ମଝିରେ ଆସିଲା ଯେ ପିଲାମାନଙ୍କୁ ସେମିନାର ବହି ଦେବା ଓ ସେମାନଙ୍କୁ ବାରମ୍ବାର ମାଗି ବହିଟି ଫେରି ପାଇବା ଆୟାସସାଧ ବ୍ୟାପାର ହୋଇଗଲା । ସେମିନାରକୁ ସମୃଦ୍ଧ କରିବାକୁ ନୂତନ ପିଢ଼ିର ଅଧ୍ୟାପକ ଅଧ୍ୟାପିକାମାନେ ମୂଳ ଲାଇବ୍ରେରୀକୁ ଯାଇ ଖୋଜିଖାଜି ଆଉ ବହି ଆଣିଲେ ନାହିଁ । ଅତି ପୁରୁଣା ବହି ବ୍ୟବହାର ଅନୁପଯୋଗୀ ହୋଇପଡ଼ିଥିଲା । ନୂଆପିଢ଼ିର ଚତୁର ଅଧ୍ୟାପକମାନେ ସେମିନାରକୁ ନୂଆ ବହି ଆଣିବା ଏକରକମ ରିସ୍କ ବୋଲି ମଣିଲେ । ତେଣୁ ସେମିନାର ପାଠାଗାର ପ୍ରାୟ ଅନ୍ତଃସାର ଶୂନ୍ୟ ହୋଇଗଲା । କିନ୍ତୁ ବିଭାଗର ଭାଗ୍ୟକୁ ୟୁ.ଜି.ସି. ସ୍ପେଶିଆଲ ଆସିସ୍‌ଟାନ୍ସ ଦେବାରୁ ସିଧାସଳଖ ଅନେକ ନୂଆ ଚକଚକିଆ ବହି କିଣାହୋଇ ନୂଆନୂଆ କାଚ ଆଲମିରା ମାନଙ୍କ ଶୋଭା ବର୍ଦ୍ଧନ କଲା । ସେ ବହି କିନ୍ତୁ ପିଲାଙ୍କୁ ପଢ଼ିବା ପାଇଁ ଦିଆଗଲା ନାହିଁ । ଦିଆଯାଇଥିଲେ ସେମିନାର ଦଶା ଭୋଗିବାକୁ ହୋଇଥାନ୍ତା । ତେବେ ବାସୁବାବୁ ଅବସର ନେବାଯାଏ ଡି.ଏସ୍.ଏର ସୁପରଭାଇଜର ଥିବାରୁ ଉଭୟ କିସମର ବହି ତାଙ୍କ ଦାୟିତ୍ୱରେ ଥିଲା । ପରେ ଆମର ଛାତ୍ର ସୁରେନ୍ଦ୍ର ନାଥ ଦାଶଙ୍କ ସମୟରେ ସେମିନାର ବହି ପାଇଁ ବସିଥିବା

କମିଟିରେ ବାସୁ ବାବୁ ଯୋଗ ଦେଲେ ନାହିଁ । ସେମିନାର ବହିଗୁଡ଼ିକର ଯାଞ୍ଚ୍ ହେବା ମୁଁ ଆନ୍ତରିକ ଚାହୁଁଥିଲି-କାରଣ ମୋ ଉପରେ ମଧ ବିଭାଗୀୟ ବହି ନେଇଯାଇଥିବାର ମିଥ୍ୟା ପ୍ରତିରୋପ ଥିଲା । ବାସୁବାବୁଙ୍କୁ ମୁଁ ପଚାରିବାରେ ସେ କହିଲେ ମୋ ରୁମ୍‌ରୁ ଷ୍ଟକ୍ ଓ ଇସୁ ରେଜିଷ୍ଟାର ବହୁ ଆଗରୁ ଚୋରି ଯାଇଛି । କିନ୍ତୁ ସେ କଥା ସେ କର୍ତ୍ତୃପକ୍ଷଙ୍କୁ ଜଣାଇବାକୁ ଉଚିଦ୍ ମନେ କରି ନଥିଲେ । ମୋତେ କହିଲେ ''ସୁର ବହି ଯାଞ୍ଚ୍‌କରୁ ଯାହା ନମିଳିବ ମୁଁ ତାର ମୂଲ୍ୟ ଦେବି ।'' ଏଇ ଯାଞ୍ଚ୍ ପାଇଁ କୌଣସି ବେସିସ୍ ନଥିବାରୁ ସୁରେନ୍ଦ୍ର ବାବୁ ମୂଳ ଲାଇବ୍ରେରୀରୁ ଆଣିଥିବା ଆକ୍‌ସେସନର ଜେରକ୍ସ କପିକୁ ଆଧାର କରାଗଲା । ବାସୁବାବୁ ତଦନୁସାରେ ଗୁଡ଼ିଏ ଅର୍ଥଦାୟ ଦେଇ ତାଙ୍କ ଗ୍ରାଚ୍ୟୁଟି ପାଇଲେ । କିନ୍ତୁ ମୋ ପାଇଁ ସମସ୍ୟାଟି ଅସମାହିତ ରହିଲା । ବାସୁବାବୁଙ୍କ ଅକାଳବିୟୋଗ ହେତୁ ମୁଁ ଆଉ କାହାକୁ ନିଷ୍ପତ୍ତି ପାଇଁ ଭେଟିଥାନ୍ତି ? ତେଣୁ ସେ ସମସ୍ୟାକୁ ନୂତନ ବିଭାଗ ମୁଖ୍ୟ ବୁଝିବା ପାଇଁ ଓ ବାସ୍ତବତା ଦୃଷ୍ଟିରୁ ବହିର ସ୍ଥିତି ବିଷୟ ବିଚାର କରିବା ପାଇଁ ତାଙ୍କୁ ବାରମ୍ବାର ଅନୁରୋଧ କରନ୍ତେ ସେ ଥରେ ତାଙ୍କ ରୁମ୍‌ରେ ମୋତେ କହିଲେ-''ଆପଣମାନେ ଅଳିଆ ରଖିଗଲେ । ଆମେ କିପରି ସେସବୁ ସଫା କରିବୁ ? ଆମେ ଅଯଥା ଦହଗଂଜ ହେଉଚୁ ।'' ଏ କଥା ମୋତେ ବହୁତ ବାଧିଲା । ମୁଁ ଆଉ ବହି ବାବଦରେ ତାକୁ ଭେଟିବାକୁ ଉଚିତ ମନେକଲି ନାହିଁ । ମୁଁ ଜାଣିଥିଲି ସେ ଜୀବନରେ କାହାର ଉପକାର କରି ନାହିଁ । ମୋତେ ଯେଉଁ ମାନସିକ ଯନ୍ତ୍ରଣା ଦେଲା ତାର magnitude କେତେ ବେଶୀ ତା ବୁଝିବାକୁ ତାକୁ ବେଳ ନଥିଲା । ଆମେ ମୂଳ ଲାଇବ୍ରେରୀରୁ ସେଇମାନଙ୍କ ପାଇଁ ତ ବହି ଆଣୁଥିଲୁ । ସେଇମାନେ ତ ଥିଲେ ତାର ଉପଭୋକ୍ତା । ସେତେବେଳେ ସେମାନେ ଥିଲେ ଛାତ୍ରଛାତ୍ରୀ;ଏବେ ସେମାନେ କର୍ତ୍ତୃପକ୍ଷ । ତେଣୁ ଆମକୁ କାଠଗଡ଼ାରେ ଛିଡ଼ା କରିଦେବାକୁ କୁଣ୍ଠିତ ହେବେ କାହିଁକି ? ବହି ଅବସ୍ଥା ଯାହା ଧରୁଧରୁ ସେସବୁ ଗଳି ପଡ଼ିବ । ପୋକ ତିରିଶ ବର୍ଷରେ ବହିଗୁଡ଼ିକୁ ଖାଇ ନିହ୍ନାଶ କରିଦେଇଛନ୍ତି । ବିଭାଗ ମୁଖ୍ୟା କିନ୍ତୁ ବାସ୍ତବତା ଦୃଷ୍ଟିରୁ ନିରୁଦେଶ୍ୟ ବହିଗୁଡ଼ିକୁ write off କରାଯାଉ ବୋଲି/ମୁଁ କେବେବି ସେମିନାର ଦାୟିତ୍ୱରେ ନଥିବାରୁ ନିର୍ଦ୍ଦୋଷ ବୋଲି ସାହସର ସହିତ ଲେଖିପାରିଲେ ନାହିଁ । ବାସୁ ବାବୁ ମୁଖ୍ୟ ଲାଇବ୍ରେରୀରୁ ଅର୍ଥଦଣ୍ଡ ଦେଇ କ୍ଲିୟରାନ୍ସ ଆଣି ନଥିଲେ ତାଙ୍କ ହାବୁଡ଼ରୁ ନିସ୍ତାର ପାଇ ନଥାନ୍ତେ । ପ୍ରଥମ କଥା ହେଲା ବିଭାଗରେ ବର୍ତ୍ତମାନ ଏତେ ପରିମାଣରେ ନୂଆ ଚକଚକିଆ ବହି ରହିଛି ଯେ ପୁରୁଣା ବହି କେହି ପଢ଼ିବାକୁ ବି ଚାହିଁବେ ନାହିଁ । ଏପରିସ୍ଥଳେ ପୁରୁଣା ବହି ପୁରୁଣା ଆଲମିରାରେ ସେହିପରି ନିଦ୍ରିତ ଭାବେ ଥିଲେ ବି କିଛି କ୍ଷତି ନଥିଲା । ତେବେ ଏସବୁ ବିଭାଗ ମୁଖ୍ୟଙ୍କ ସାହସିକ ନିଷ୍ପତ୍ତି ଓ କଲମର ଶକ୍ତି ଉପରେ ନିର୍ଭର କରୁଥିଲା । ସେମିତି ମଧ ଅନ୍ୟ ବିଭାଗମାନଙ୍କ ସେମିନାର ପାଠାଗାରର ଅବସ୍ଥା । ଭଲ ଉଦ୍ଦେଶ୍ୟରେ କାମ କରୁକରୁ ଓଡ଼ିଆ ବିଭାଗର ତିନି

ବିଶିଷ୍ଟ ପ୍ରଫେସରଙ୍କ ପରି ଅନ୍ୟ ବିଭାଗରେ କେହି ଆର୍ଥିକ ତଣ୍ଡ ଦେଇଥିବାର ନଜିର ନାହିଁ । ସବୁକିଛି good faith ରେ ଚାଲିବା କଥା । ଅର୍ଥାତ୍ ସେ ବିଶ୍ୱାସ ଆମଠାରୁ ଆମ ଛାତ୍ରଛାତ୍ରୀମାନେ ହରାଇ ବସିବା ଏକାନ୍ତ ଦୁଃଖଦାୟକ ନୁହେଁ କି ? ଏହି ବହି ସମସ୍ୟାର ଘୂର୍ଣ୍ଣି ଭିତରେ ବାସୁବାବୁ ଶେଷ ଜୀବନରେ ବହୁତ ଛଟପଟ ହୋଇଥିବା ମୁଁ ଅନୁଭବ କରିଛି । ଯେତେବେଳେ ରାସ୍ତାରେ ତାଙ୍କ ସହିତ ଦେଖାହୁଏ ସେ ମୋତେ ଗୋଟିଏ କଥା କହୁଥିଲେ-''ସୁର ବହିପାଇଁ ମୋତେ କ୍ଲିୟରାନ୍ସ ଦେଉନାହିଁ । ମୁଁ ବୋଧହୁଏ ମୋ ପ୍ରାପ୍ୟ ପାଇବି ନାହିଁ ।'' ପ୍ରକୃତରେ ମୃତ୍ୟୁର ମାତ୍ର ଦି'ମାସ ପୂର୍ବରୁ ସେ ତାଙ୍କର ସମସ୍ତ ପ୍ରାପ୍ୟ ପାଇଲେ । ମୋତେ ବୋଧହୁଏ ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ବିଭାଗ ପାଇଁ ଅତିରିକ୍ତ ଉତ୍ସାହରେ କାମ କରିଥିବାର ଶାସ୍ତି ଆମପାଇଁ ଆଉ କିଏ କାହିଁକି ଭୋଗିବେ ?

ବାସୁ ବାବୁ ମାତ୍ର ୧୧ ମାସ ପାଇଁ ୧୯୯୦ରେ ବିଭାଗମୁଖ୍ୟ ହୋଇଥିଲେ । ସେତେବେଳେ ନୂଆ ହୋଇ ରୋଟେସନ୍ ବ୍ୟବସ୍ଥା ଲାଗୁ ହେଲା । ସବୁ ବିଭାଗରେ ଦୁଇବର୍ଷ ପାଇଁ ନୂଆନୂଆ ବିଭାଗମୁଖ୍ୟ ନିଯୁକ୍ତି ପାଇଲେ । ଓଡ଼ିଆ ଓ ପଦାର୍ଥ ବିଜ୍ଞାନ ବିଭାଗର ମୁଖ୍ୟମାନଙ୍କୁ ମାତ୍ର ଏଗାର ମାସର ଦାୟିତ୍ୱ ପରେ ବିଦା କରିଦେବାର କୌଣସି କାରଣ ନଥିଲା । ସେମାନଙ୍କୁ ମେ ୧୯୯୦ରୁ ଆଉ ଦୁଇବର୍ଷ ପାଇଁ ବିଭାଗମୁଖ୍ୟ ନିଯୁକ୍ତି ମିଳିଥିଲେ ଆକାଶ ଛିଡ଼ି ପଡ଼ିନଥାନ୍ତା । ନୂଆ ଆଇନ୍ ଓ ବ୍ୟବସ୍ଥାକୁ ଭିନ୍ନ ଭାବେ ତର୍ଜମା interprete କରାଯାଇପାରିଥାନ୍ତା । ମୁଁ ବାସୁବାବୁଙ୍କୁ ନ ଜଣାଇ ତତ୍‌କାଳୀନ କୁଳପତି ଡକ୍ଟର ତ୍ରିଲୋଚନ ପ୍ରଧାନଙ୍କୁ ତାଙ୍କ ବାସଭବନରେ ଭେଟି ଏଇ ଦୁଇ ବିଭାଗର ମୁଖ୍ୟମାନଙ୍କୁ ସେବେଠାରୁ ଆଉ ଦୁଇବର୍ଷ ପାଇଁ ନିଯୁକ୍ତି ଦେବାକୁ ଅନୁରୋଧ କରିଥିଲି । କାରଣ ମୋ ପାଇଁ ଠିକ୍ ସେତିକିବେଳେ ବିଭାଗମୁଖ୍ୟ ହେବା ଜରୁରୀ ନଥିଲା । ଯେତେବେଳେ ହେଲେ ଦି'ବର୍ଷ ଦାୟିତ୍ୱ ନେବାକୁ ହୋଇଥାନ୍ତା । ବାସୁବାବୁ ଓ କୃତ୍ତିବାସ ବାବୁ ଉଭୟେ ମୋର ଅନ୍ତରଙ୍ଗ ଥିଲେ । କିନ୍ତୁ ତ୍ରିଲୋଚନ ବାବୁ କିଛି ଶୁଣିବା ଅବସ୍ଥାରେ ନଥିଲେ । ବିଜ୍ଞପ୍ତି ହୋଇସାରିଥିବାରୁ ତାହା ଆଉ ବଦଳି ପାରିବନି ବୋଲି କହିଲେ । ମୁଁ ନିରାଶ ହୋଇ ଫେରିଲି ଓ ବାସୁ ବାବୁଙ୍କଠାରୁ ଦାୟିତ୍ୱ ନେଲି । ସେଥିରେ ପୁଣି ମାତ୍ର ଏଗାରମାସର ଦାୟିତ୍ୱରେ ଥାଇ ବାସୁ ବାବୁ ଭଲପାଉଥିବା ବିଭାଗକୁ କିପରି ଗଢ଼ିପାରିଥାନ୍ତେ ? ଏପରି ଏକ ନିଷ୍ପତ୍ତି ତାଙ୍କୁ ବହୁତ ବାଧିଥିଲା ଓ ନିଜ ଆଇଡ଼ିଆରେ ବିଭାଗକୁ ଗଢ଼ିବାକୁ ସେ ସୁଯୋଗ ପାଇ ବି ହରାଇଥିଲେ । ଆମେ କେତେଜଣ ବିଶ୍ୱବିଦ୍ୟାଳୟ ନେତୃସ୍ଥାନୀୟ ଅଧ୍ୟାପକ ଏପରି ରୋଟେସନ୍‌ର ପକ୍ଷପାତୀ ଥିବାରୁ ବୋଧହୁଏ ବାସୁ ବାବୁଙ୍କର ମୋ ପ୍ରତି ମନଉଣା ହୋଇଯାଇଥିଲା । ସେ ରିଡ଼ର୍ ଓ ପ୍ରଫେସର ଭାବେ ମୋ ଠାରୁ ସିନିୟର ଥିବାରୁ କୋଡ଼ିଂ କରାଯାଇଥିବାରୁ ଛାତ୍ରଛାତ୍ରୀମାନେ ମୋ ରୁମ୍‌ରେ ଚାବି ପକାଇ ଦୁଆର ମୁହଁରେ ବସିରହି ନାନାପ୍ରକାର ଧ୍ୱନି ଦେଉଥିଲେ ।

ବିଭାଗର ସବୁ ଅଧ୍ୟାପକଙ୍କ ମଧ୍ୟରେ କେବଳ ବାସୁ ବାବୁ ହିଁ ସେପରି ନ କରିବାକୁ ପିଲାଙ୍କୁ ବୁଝାଇଥିଲେ । ମୁଁ ପ୍ରକୃତରେ ଅଭିଭୂତ ହୋଇପଡୁଥିଲି । ଓଡ଼ିଆ ବିଭାଗ ପିଲାମାନେ ନାନା ପ୍ରକାର ଦୁର୍ନୀତିର ଆଶ୍ରୟ ନେଉଥିବାରୁ କୁଳପତିଙ୍କ ଅନୁମୋଦନ କ୍ରମେ ମୁଁ କୋଡ଼ିଂ ବ୍ୟବସ୍ଥା ପ୍ରଚଳନ କରିଥିଲି । ଅଥଚ କୁଳପତି ମଧ୍ୟ ପିଲାଙ୍କ ଚାପରେ ମୋ ସାଧୁ ଉଦ୍ୟମକୁ ଶେଷଯାଏ ସମର୍ଥନ କଲେ ନାହିଁ । ତେଣୁ ମୁଁ ବିଭାଗମୁଖ୍ୟ ଥିଲେ ବି ଆତ୍ମସମ୍ମାନ ଦୃଷ୍ଟିରୁ ପରୀକ୍ଷା ଦାୟିତ୍ୱରୁ ଓହରିଗଲି । ବାସୁ ବାବୁ ଏ ଦାୟିତ୍ୱ ବହନ ନକରିବାରୁ ଡକ୍ଟର ବୈଷ୍ଣବଚରଣ ସାମଲଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରିବାକୁ ପରୀକ୍ଷା ପରିଚାଳକଙ୍କୁ ସୁପାରିଶ କରିଥିଲି ।

ବାସୁ ବାବୁଙ୍କ ପୁଅଝିଅମାନେ ଥିଲେ ଖୁବ୍ ଅଧ୍ୟବସାୟୀ, ଶାଳୀନ ଓ ଗୁରୁଜନ ପରାୟଣ । ବାସୁ ବାବୁଙ୍କ ପରି ସେମାନଙ୍କ ଅକ୍ଷର ମଧ୍ୟ ଥିଲା ସୁନ୍ଦର ଓ ଭାଷା ମାର୍ଜିତ । ସ୍ୱାଭାବିକ ତାଙ୍କ ଝିଅ ପ୍ରଥମ ଶ୍ରେଣୀରେ ଓଡ଼ିଆ ଏମ୍.ଏ ପାଶ୍ କରିଥିଲା । ଏମିତି ବେଳେବେଳେ ଚାଳିଶରୁ ଅଧିକ ଛାତ୍ରଛାତ୍ରୀ ପ୍ରଥମ ଶ୍ରେଣୀ ପାଇଲାବେଳେ ସେମାନେ ନ ପାଇବାର କିଛି କାରଣ ନଥିଲା । କିନ୍ତୁ ଦୋଷଦର୍ଶୀ ଛାତ୍ରମାନେ ଏଥିପାଇଁ ଅସୂୟ ହୋଇ ନାନାକଥା ପ୍ରଚାର କରୁଥିଲେ । ଘଟଣାକ୍ରମେ ପ୍ରାଇଭେଟ୍ କଲେଜମାନଙ୍କ ପାଇଁ ହେଉଥିବା ଓଡ଼ିଆ ସିଲେକ୍ସନ୍ ବୋର୍ଡ଼ରେ ମୁଁ expert ଭାବେ ବଛା ହୋଇଥିଲି । ବାସୁ ବାବୁଙ୍କ ବଡ଼ ଝିଅ ଚାକିରୀ ପ୍ରାର୍ଥୀ ଥିଲା । ବାସୁବାବୁ ତା' ପାଇଁ ମୋତେ ପଦଟିଏ ବି କହିଥିବା ପରି ମନେହେଉନି । ସେ ତା' ନିଜସ୍ୱ ମେଧା ଓ ପ୍ରଜ୍ଞା ବଳରେ ଚାକିରୀ ପାଇଁ ମନୋନୀତ ହେଲା । କୌଣସି କାରଣରୁ ବି ଆମ ବିଭାଗୀୟ ପ୍ରତିଦ୍ୱନ୍ଦ୍ୱିତା ମୋ ମନରେ ରେଖାପାତ କରିନଥିଲା । ଅଥଚ ସମସ୍ତେ ଭାବିଥିଲେ expert ମୁଁ ଥିବାରୁ ସେ କେବେବି ମନୋନୀତ ହେବ ନାହିଁ । ମୋର ଚେତନା ପ୍ରବାହ ଓ ବିଚାରଧାରାରେ ସରସ୍ୱତୀଙ୍କୁ କେବେ ବି ପ୍ରତାରଣା କରିନାହିଁ । ତେଣୁ ପରୀକ୍ଷା ଖାତା ଦେଖିଲାବେଳେ କିମ୍ବା ସିଲେକ୍ସନ୍ ବୋର୍ଡ଼ରେ ବସିଥିବାବେଳେ ସରସ୍ୱତୀଙ୍କୁ ସ୍ମରଣ ମୁଁ ବିଚାର କରିଥାଏ । ବାସୁବାବୁ ଠିକ୍ ସେହିପରି ପରୀକ୍ଷକ ଥିଲେ । ପରୀକ୍ଷା ଖାତା ତନ୍ନତନ୍ନ କରି ଦେଖୁଥିବାରୁ ମେଧାବୀଛାତ୍ର ପ୍ରତି ପକ୍ଷପାତ ହେବାର ଅବକାଶ ନଥିଲା । ବୋର୍ଡ଼ ଅଫ୍ ଷ୍ଟଡ଼ିଜ୍ କମିଟିରେ ଆମେ ସାଙ୍ଗ ହୋଇ ଅନେକ ବର୍ଷ କାମ କରିଛୁ । କିଛି ବାଦବିବାଦ ନଥାଏ । ବରଂ ପରେ ପରେ ଯେଉଁମାନେ ଏ କମିଟିରେ ମେମ୍ବର ହେଲେ ସେମାନେ ସଜ୍ଞାନ ସଚେତନ ଭାବେ ସେମାନଙ୍କ ଗୁରୁମାନଙ୍କୁ ଅବଜ୍ଞା କରି ନିଜ ପାଇଁ ସୁଯୋଗ ହାସଲକୁ ଅଧିକ ଗୁରୁତ୍ୱ ଦେଲେ । ପରୀକ୍ଷା କାର୍ଯ୍ୟର ଭାବସତୀତ୍ୱ ଓ ଗୋପନୀୟତା ସେମାନଙ୍କଠାରୁ ଆଶା କରାଯିବାର ନୁହେଁ । ବେନାମୀ ଚିଠି ଲେଖି ଅନ୍ୟମାନଙ୍କ ଅଧିକାରକୁ ଝାମ୍ପିନେବାରେ କେତେଜଣ ଏଣିକି ଏଣିକି ଅଧିକ କୌଶଳ ଓ କୁଶଳତାର ପରିଚୟ ଦେଉଥିବା ଲକ୍ଷ୍ୟ କରାଯାଉଛି । ବାସୁ ବାବୁ ଥରେ ମଡ଼ରେସନ୍ ବୋର୍ଡ଼ର ଚିଫ୍ ଥାନ୍ତି ଓ ମୁଁ ତାଙ୍କ

ଅଧୀନରେ ପ୍ରଶ୍ନକର୍ତ୍ତାଥାଏ । ପ୍ରଶ୍ନ ତିଆରି କରି ତାଙ୍କ ଘରକୁ ଯାଇ ଦାଖଲ କଲାବେଳେ ସେ ଏତେ ବିସ୍ମିତ ଓ ଅଭିଭୂତ ହୋଇପଡ଼ିଥିଲେ ଯେ ପ୍ରଥମେ ମୋତେ କିଛି କହିପାରି ନଥିଲେ । ଆମେ ସହକର୍ମୀ ଭାବେ ବିଭାଗରେ ଯେଉଁ ମର୍ଯ୍ୟାଦା ରକ୍ଷା କରି କାମ କରୁଥିଲୁ ଗର୍ବର ସହିତ କହିବି ତାହା ଆଜି ଆଉ ନାହିଁ । ବିଭାଗୀୟ କାର୍ଯ୍ୟ ଓ ଉତ୍ସବମାନଙ୍କରେ ଆମେ ବଂଚିଥିବା ଯାଏ ସାମିଲ ହେବା କଥା । ଅନ୍ତତଃ ନିମନ୍ତ୍ରଣ ପତ୍ର ଖଣ୍ଡେ ପାଇବା କଥା । ଏ ମର୍ଯ୍ୟାଦାବୋଧ ଆମ ଛାତ୍ରଛାତ୍ରୀମାନେ ନ ରଖିଲେ ଆମକୁ ବୁଝିବାକୁ ହେବ ଯେ ଆମର କେଉଁଠି ତ୍ରୁଟି ରହିଗଲା ଯେଉଁଥିପାଇଁ ଏପରି ଘଟୁଛି । ବାସୁ ବାବୁ ସେହିପରି କେତୋଟି କଥାରେ ଶେଷ ଜୀବନରେ ଦୁଃଖିତ ଥିଲେ । ତାଙ୍କର ମନର କଥା ମୋତେ କହିଥିଲେ ।

ବ୍ୟକ୍ତି ଭାବରେ ସେ ଥିଲେ ଉଦାର ଓ ଅତ୍ୟନ୍ତ ବିନୀତ । ବୟସ୍କ ଲୋକମାନେ ତଳ ପାହ୍ୟାରେ ଥିଲେ ବି ସେ ସେମାନଙ୍କୁ ଆଗ ନମସ୍କାର କରୁଥିଲେ । ଧୀର କଥା କହୁଥିଲେ । ବେଶ୍ ପ୍ରଭାବଶାଳୀ ଭାବେ ତାଙ୍କ କାର୍ଯ୍ୟ ସଂପନ୍ନ କରୁଥିଲେ । ତାଙ୍କର ଅତିରିକ୍ତ ବୈଷ୍ଣବଜନ ସୁଲଭ ଆଚରଣକୁ ଅନ୍ୟ ବିଭାଗର କେହିକେହି ଅଧ୍ୟାପକ ପସନ୍ଦ କରୁନଥିବା ମୁଁ ଜାଣେ । ସେକ୍ସନକୁ ଯାଇ କିରାଣୀମାନଙ୍କୁ ଅତି ବିନୀତ ଭାବରେ ଅନୁରୋଧ କରିବାଟାକୁ ଅନେକେ ହୁଏତ ପସନ୍ଦ କରୁନଥିଲେ; କିନ୍ତୁ ତାହାହିଁ ଥିଲା ବାସୁବାବୁଙ୍କ ବ୍ୟକ୍ତିତ୍ୱର ନମନୀୟତା । ତେଣୁ ତାଙ୍କର ଶତ୍ରୁ କେହି ନଥିଲେ । ଦୃଢ଼ ଓ ସ୍ପଷ୍ଟ ଭାବରେ ହୁଏତ ସେ କଥା କହୁନଥିଲେ, ନିଜ ମତକୁ ଅନ୍ୟ ଉପରେ ଚାପି ଦେବାକୁ ପ୍ରୟାସ କରୁନଥିଲେ କିନ୍ତୁ ''ଧୀର ପାଣି ପଥର କାଟେ'' ପରି ତାଙ୍କ କଥା କାଟୁ କରୁଥିଲା । ସମସ୍ୟା ସମାଧାନ ହୁଏତ ହେଉଥିଲା । ସେ ଖୁବ୍ ବୀରଦର୍ପରେ କୌଣସି କାମକୁ ଆଗୁଆଳ ହୋଇ ହୁଏତ ଲମ୍ଫ ଦେଇନଥିଲେ; କିନ୍ତୁ ଦେଖିଲାବେଳକୁ ଘୋଡ଼ା ଦଉଡ଼ି ଦଉଡ଼ି ଯେଉଁଠି ହାତୀ ଚାଲିଚାଲି ସେଇଠି । ତାଙ୍କର କାମ ହାସଲ କରିବାର ପ୍ରଣାଳୀ ଥିଲା ସଂପୂର୍ଣ୍ଣ ନିଆରା ଅନ୍ତତଃ ମୋଠାରୁ । ମୁଁ ତେଣୁ ବାରମ୍ବାର ବିଫଳ ହେଲାବେଳେ ସେ ସଫଳ ହେଉଥିଲେ । ତାଙ୍କର ଅନୁଗତ ଶିଷ୍ୟ ପ୍ରଶିଷ୍ୟଙ୍କ ସଂଖ୍ୟା ମୋଠାରୁ ଯଥେଷ୍ଟ ଅଧିକ ଥିଲା । ତାଙ୍କ ଆନ୍ତରିକ ଭଲ ପାଉଥିବା ଛାତ୍ରମାନେ ଆଜି ସମାଜରେ ସୁପ୍ରତିଷ୍ଠିତ ନିଶ୍ଚୟ । ସେମାନେ ତାଙ୍କ ଷଷ୍ଠୀପୂର୍ତ୍ତିର ଆୟୋଜନ କରି 'ପ୍ରଜ୍ଞାପୁରୁଷ' ନାମରେ ଯେଉଁ ପୁସ୍ତକଟି ପ୍ରକାଶ କରିଛନ୍ତି ସେଥିରୁ ସେମାନଙ୍କ ପୂଜ୍ୟପୂଜା ଓ ଆନୁଗତ୍ୟର ସୂଚନା ମିଳେ । ତାଙ୍କୁ ଆକଳନ ପାଇଁ ସେଇ ପୁସ୍ତକଟି ଯଥେଷ୍ଟ ।

ମନେପଡୁଛି ବିଭାଗୀୟ ସେମିନାର, ନବାଗନ୍ତୁକମାନଙ୍କୁ ସ୍ୱାଗତ ଜଣାଇବା ପାଇଁ ଆୟୋଜିତ ଉତ୍ସବ ଓ ବହିର୍ଗତମାନଙ୍କୁ ବିଦାୟ ଜଣାଇବାର ଶୋକାବହ ପରିବେଶ । ବାସୁବାବୁ ଏସବୁ ଉତ୍ସବରେ ବେଳେବେଳେ କବିତା ଲେଖି ପଢ଼ନ୍ତି, ସେ ଲେଖିଥିବା ଗୀତ ସମବେତ ସଂଗୀତ ରୂପେ ଉପସ୍ଥାପିତ ହୁଏ । ବିଦାୟକାଳୀନ ସଭାରେ ତାଙ୍କ ବକ୍ତବ୍ୟ ଏପରି ଶୋକ

ସଂଚାର କରେ ଝିଅପିଲାମାନେ କଇଁକଇଁ କାନ୍ଦି ଉଠନ୍ତି । ପରିସ୍ଥିତି ଅସମ୍ଭାଳ ହୁଏ । ନିଜେ ବାସୁବାବୁ ମଧ୍ୟ କହୁକହୁ ଆଖିରୁ ଲୁହ ପୋଛନ୍ତି । ଛାତ୍ରଛାତ୍ରୀଙ୍କ ପାଇଁ ଖୁବ୍‌ବେଶୀ ମମତାପ୍ରବଣ ନ ହେଲେ ଜଣେ ଅଧ୍ୟାପକ କାନ୍ଦି ପାରିବକି ? ପୁଣି ପିକ୍‌ନିକ୍ ଆୟୋଜନରେ ସେ ହିଁ ସବୁବେଳେ ଥା'ନ୍ତି ସଂଚାଳକ । ସପ୍ତଶଯ୍ୟାଠାରୁ ନାରାୟଣୀ ପର୍ଯ୍ୟନ୍ତ କେତେ ସ୍ଥାନରେ ବିଭାଗ ତରଫରୁ ବାର୍ଷିକ ପିକ୍‌ନିକ୍ ଆୟୋଜିତ ହୋଇଛି । ସବୁ ସ୍ଥାନରେ ସେ ହିଁ ଆୟୋଜକ । ଡକ୍ଟର ବଂଶୀଧର ମହାନ୍ତି ଏସବୁ ଦାୟିତ୍ୱ ବାସୁ ବାବୁଙ୍କ ଉପରେ ଛାଡ଼ି ଦେଇ ପ୍ରାୟ ନିଶ୍ଚିନ୍ତ ଥା'ନ୍ତି । ବେଳେବେଳେ ସାନଘାଗରା ଓ ବଡ଼ ଘାଗରା ପରି ଦୂରବର୍ତ୍ତୀ ସ୍ଥାନକୁ ଯାଇ ରାତ୍ରି ଅତିବାହିତ କରିବାକୁ ହୁଏ । ବାସୁ ବାବୁଙ୍କ ସୁତୀକ୍ଷ୍ଣ ଆଖି ପିଲାମାନଙ୍କ ଚାରିପାଖରେ ଘୁରି ବୁଲୁଥାଏ । ଓଡ଼ିଆ ବିଭାଗର କୌଣସି ପିକ୍‌ନିକ୍‌ରେ ତେଣୁ କୌଣସି ଅଘଟଣ ଘଟେ ନାହିଁ । କୌଣସି କାରଣରୁ ~~କୌଣସି କାରଣରୁ~~ ପିଲାମାନଙ୍କ ଉପରେ ରାଗି ମୁଁ ପିକ୍‌ନିକ୍ ଯିବାକୁ ଟାଳଟୁଳ କରୁଥିଲେ ସେ ବସ୍ ଆଣି ମୋ ଘର ଫାଟକ ପାଖରେ ଲଗାଇ ଦିଅନ୍ତି । କହନ୍ତି ଭାଇନା, ଆପଣ ନଗଲେ ପିକ୍‌ନିକ୍ ବନ୍ଦ ରହିବ ।'' ବାସ୍ ସେଇ ପଦକ କଥାରେ ମୋ ରାଗ ପାଣି ଫାଟିଯାଏ । ସତ କହିବାକୁ ଗଲେ ବିଭାଗମୁଖ୍ୟ ବ୍ୟବସ୍ଥା ରୋଟେଟିଭ୍ ହେବାପରେ ବାଣୀବିହାରର ବିଭିନ୍ନ ବିଭାଗରେ ଯେଉଁ ଫାଟ ସୃଷ୍ଟି ହେଲା- ତାହା ଏବେ ବି ଅପରିସୀମ ଓ ଅକଳନୀୟ । ବିଭାଗଗୁଡ଼ିକର ସଂହତି ଭାଂଗି ଗଲା । ପ୍ରଫେସର ମାନେ ଥାଉ ଥାଉ ଯେଉଁଦିନ ରିଡ଼ରମାନେ ବିଭାଗମୁଖ୍ୟ ହେଲେ ସେଠି ବିଭାଗର ଅବସ୍ଥା ଯାହା ହେବାର କଥା ତାହାହିଁ ହେଲା । ବିଶ୍ୱବିଦ୍ୟାଳୟମାନଙ୍କରେ ଏପରି ଏକ ଗଣତାନ୍ତ୍ରିକ ପଦକ୍ଷେପ ସୂଚାରୁ ରୂପେ ଫଳପ୍ରସୂ ହୋଇପାରିଛି ବୋଲି ମୁଁ ଭାବୁନାହିଁ । ସେପରି ଏକ ପରୀକ୍ଷା ଭୁଲ୍ ପ୍ରମାଣିତ ହେବାପରେ ତାର ସଂଶୋଧନ ଆବଶ୍ୟକ-ଏକଥା କର୍ତ୍ତୃପକ୍ଷ ବୋଧହୁଏ ବିଚାର କରିବା ପାଇଁ ବେଳ ଆସିଛି । ପୁଣି ପ୍ରଫେସରମାନଙ୍କ ମଧ୍ୟରେ ପ୍ରମୋଶନ ଓ ସବ୍‌ଷ୍ଟାଣ୍ଟିଭ ଭିତ୍ତିରେ ଭେଦ ସୃଷ୍ଟି କରାଯାଇ ଶିକ୍ଷା ବ୍ୟବସ୍ଥାକୁ କୁଆଡ଼େ ନିଆଯାଉଛି-ତାହା ଦେଖିବାକୁ ବାକି ରହିଲା । ବିଭାଗଗୁଡ଼ିକ ପାରସ୍ପରିକ ରାଗ, ଆକ୍ରୋଶ, ଅସୂୟା ଓ ଅହଂକାର ଭିତରେ ମୂଳଲକ୍ଷ୍ୟଠାରୁ କ୍ରମେ ଦୂରେଇ ଯାଉଛନ୍ତି- ବାତାବରଣ କଳୁଷିତ ହୋଇଉଠୁଛି ।

ଏ ଲେଖାରେ ମାତ୍ର ଶେଷକୁ ପଦେ କହିବି ବାସୁବାବୁଙ୍କ ବଡ଼ ଭଣଜା ସନ୍ତୋଷ ବିଷୟରେ । ସେମାନେ ମାମୁ ଭଣଜା ନୁହନ୍ତି- ବାପପୁଅ ଯେମିତି । ବାସୁବାବୁ ଅସୁସ୍ଥ ଥିଲାବେଳେ ଥରେ ତାଙ୍କ ସହିତ ବାଣୀବିହାର ପରିସରରେ ଦେଖା ହୋଇଥିଲା । ନିଜ ବେମାରୀ ଓ ସୁଚିକିତ୍ସା ବିଷୟରେ ଅନେକ ଗପିଲେ । ସ୍ପଷ୍ଟ ଭାଷାରେ କହିଲେ-''ସନ୍ତୋଷ ପାଇଁ ମୁଁ ବଂଚି ରହିପାରିଛି । ସେ ମୋର ସମସ୍ତ ଚିକିତ୍ସାର ସୁବନ୍ଦୋବସ୍ତ କରିଛି । ମୁଁ ଭଲ ହୋଇଯିବି ।'' ତାଙ୍କ ଆଶିଷ ଅଜସ୍ର ଧାରାରେ ସନ୍ତୋଷ ପ୍ରତି ଢାଳି ହୋଇପଡୁ ଓ ଜଣେ ସଚ୍ଚୋଟ ଅଫିସର ଭାବେ ସେ ଦେଶରେ ନାଁ କରୁ ଏହା ମଧ୍ୟ ମୋର କାମନା ।





# ଡଃ ବାସୁଦେବ ସାହୁଙ୍କ ଅଧ୍ୟାପନା ଶୈଳୀ

ପ୍ରଫେସର ବାଉରୀବଂଧୁ କର

ଜଣେ ଲେଖକର ବ୍ୟକ୍ତିତ୍ୱର ଯେପରି ତା'ର ରଚନାଶୈଳୀର ପରିମାପକ, ଠିକ୍ ସେହିପରି ଜଣେ ଶିକ୍ଷକର ବ୍ୟକ୍ତିତ୍ୱ ତା'ର ଅଧ୍ୟାପନା ଶୈଳୀରୁ ଅବଧାରଣା କରିହୁଏ । ଶିକ୍ଷକର ଶିକ୍ଷାଦାନ ଢଙ୍ଗରୁ ଶିକ୍ଷକର କୃତିତ୍ୱ ବିଚାର କରାଯାଏ । ଶିକ୍ଷାଦାନର ମୂଲ୍ୟାୟନବେଳେ ସର୍ବପ୍ରଥମେ ଶିକ୍ଷକଟି ଛାତ୍ରମାନଙ୍କ ଦ୍ୱାରା କେତେଦୂର ଗ୍ରହଣଶୀଳ ତାହାର ଆକଳନ ହୁଏ । କେବଳ ଅଧ୍ୟାପନା ପ୍ରସଙ୍ଗ ନୁହେଁ, ଶିକ୍ଷକର ଅଧ୍ୟାପନା ଶୈଳୀ ସହିତ ତା'ର ମଣିଷ ପଣିଆ, ଛାତ୍ରବତ୍ସଳ ସ୍ୱଭାବ, ସମାଜସେବା ପ୍ରଭୃତି ମଧ୍ୟ ଓତପ୍ରୋତ ଜଡ଼ିତ । କାରଣ ଶିକ୍ଷା ଏପରି ଏକ ଦିବ୍ୟସ୍ପର୍ଶ, ଯାହା ମଣିଷର ଶାରୀରିକ, ମାନସିକ ଓ ଆତ୍ମିକ ବିକାଶରେ ସହାୟତା କରେ । ସେଇ ହେଉଛି ପ୍ରକୃତ ଶିକ୍ଷକ ଯିଏ ଆପଣାର ଅଧ୍ୟାପନା ବଳରେ ବିଦ୍ୟାର୍ଥୀକୁ ଶିକ୍ଷାଦାନ ସହିତ ଜୀବନ ଓ ଜଗତ ସଂପର୍କରେ ନାନା କଥା ଜାଣିବାର ସୁଯୋଗ ଦିଏ । ଏଇ ସୂତ୍ରରେ ସେ ପିତାମାତାଠାରୁ ଅଧିକ ସମ୍ମାନନୀୟ ଓ ଉଚ୍ଚ ଆସନର ଅଧିକାରୀ । ଏ ସଂପର୍କରେ Aristotle କହନ୍ତି; "Teachers who educate children, deserve more honour than parents, who merely gave their birth for the latter provided mere life, while the former ensure a good life." ଏଇ କଥାକୁ ଦୃଷ୍ଟିରେ ରଖି ପ୍ରଥିତଯଶା ଶିକ୍ଷକମାନଙ୍କର ବିଚାର କରାଯାଇପାରେ । ଏଇ ପରମ୍ପରାରେ ଆମର ପ୍ରିୟ ଶିକ୍ଷକ ଡକ୍ଟର ବାସୁଦେବ ସାହୁଙ୍କ ବ୍ୟକ୍ତିତ୍ୱ ଓ କୃତିତ୍ୱ ବିଚାର୍ଯ୍ୟ ।

ଡକ୍ଟର ବାସୁଦେବ ସାହୁ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ଭାବରେ ପ୍ରାୟ ତିରିଶ ବର୍ଷ କାଳ ଓଡ଼ିଆ ଭାଷା ସାହିତ୍ୟ ଅଧ୍ୟାପନା ଓ ଗବେଷଣା ସହ ଥିଲେ ସଂପୃକ୍ତ । ସେ ଭାଷା ସଂପର୍କରେ ଓ ଶ୍ରୀଜଗନ୍ନାଥ ସଂସ୍କୃତି ସଂପର୍କରେ ବିଶେଷ ଗବେଷଣା କରିଥିଲେ ସୁଦ୍ଧା ତାଙ୍କର ଅଧ୍ୟୟନ ଓ ଅଧ୍ୟାପନାର ପରିସର ଥିଲା ଢେର ବ୍ୟାପକ । ସେ ଯେକୌଣସି ବିଷୟକୁ ଯେକୌଣସି ସମୟରେ ଅଧ୍ୟାପନା କରିପାରୁଥିଲେ । ପୁନଶ୍ଚ; ସେ ବିଦ୍ୟାର୍ଥୀମାନଙ୍କର ଆମ ସାହିତ୍ୟର ବିତର୍କିତ ପ୍ରସଙ୍ଗମାନଙ୍କ ବାବଦରେ ରହିଥିବା ସଂଶୟ ମୋଚନରେ ସହାୟତା କରୁଥିଲେ । ଯେତେ ସରଳ ଓ ପ୍ରାଞ୍ଜଳ ଭାବରେ କଠିନ

ବିଷୟକୁ ବୁଝାଯାଇପାରେ ସେ ଛାତ୍ରମାନଙ୍କୁ ବୁଝାଉଥିଲେ । ଜଟିଳରୁ ସରଳ ମାର୍ଗରେ ଆଗେ କୌଣସି ବିଷୟକୁ ଜାଣିବା ପାଇଁ ସେ ଛାତ୍ରମାନଙ୍କ ମନରେ ସୃଷ୍ଟି କରୁଥିଲେ କୌତୂହଳ । ମୋର ଆଜି ପରି ମନେପଡୁଛି ସେ ଆମର ଭାଷା ପଢ଼ାଇବା ବେଳେ 'ଗାଲୁ' ଶବ୍ଦ ସଂପର୍କରେ କେତେକଥା ବୁଝାଇଥିଲେ । ଶବ୍ଦଟିର ମୂଳ କିପରି 'ଗଲ୍ଲ' ଶବ୍ଦରୁ ସୃଷ୍ଟି ଓ କାଳକ୍ରମେ ତାହା ଦେଶଜ ଶବ୍ଦ ରୂପରେ ପ୍ରଭାବ ବିସ୍ତାର କରିଛି ବୋଲି କହିବା ସହିତ 'ଗାଲୁଆ', 'ଗାଲୁ ଭୁରୁଡୁ', 'ଗାଲୁ ପେଲିବା', 'ଗାଲେଇବା', 'ଗାଲୁ ଭାଙ୍ଗିବା', 'ଗାଲମୁଛ', 'ଗାଲପାଟି', 'ଗାଲଗଲୁ', 'ଗଲ୍ଲକ' ଶବ୍ଦ ସଂପର୍କରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଥିଲେ । 'ଗଲ୍ଲକ' ଶବ୍ଦକୁ ବୁଝାଇବାକୁ ଯାଇ ସେ ମୋଗଲ ସମ୍ରାଟଂ ବାବରଙ୍କ ମଦ୍ୟପାତ୍ରର ଦୃଷ୍ଟାନ୍ତ ଦେଇଥିଲେ । ଏଇ ଅପ୍ରଚଳିତ 'ଗଲ୍ଲନ' ଶବ୍ଦର ଅର୍ଥ ଯେ ମଦ୍ୟପାତ୍ର ଏହା ଏବେ ବି ମୋ ମନରେ ଚିରସ୍ଥାୟୀ ହୋଇଛି । ଆଜିପରି ମନେପଡୁଛି ସେ ମୋର ନାମକୁ ବୁଝାଇବାକୁ ଯାଇ ମୋତେ ବାଟରେ ଯାଉଯାଉ କହିଲେ ତୋର ନାମଟି 'ବ୍ୟାକୁଳି' ଶବ୍ଦରୁ ଆସିଛି, ସେଥିରୁ 'ବାଉଳି', ଓ 'ବାଉରି' ହୋଇଛି । ମୁଁ ତତ୍‌କ୍ଷଣାତ୍ କହିଥିଲି ମୁଁ ସବୁବେଳେ 'ବାଉରୀ' ଏମିତି ଦୀର୍ଘ 'ଇ'କାରରେ ଲେଖେ । ତା'ପରେ ସେ ଦୀର୍ଘ ଇ କାର ସଂପର୍କର କେତେ କ'ଣ କହିଥିଲେ ।

ଡକ୍ଟର ବାସୁଦେବ ସାହୁ ଓଡ଼ିଆ ରୀତି ସାହିତ୍ୟ ପଢ଼ାଇବାବେଳେ ସୁନ୍ଦର ଲଳିତ କଣ୍ଠରେ ଆଗେ ଆବୃତ୍ତି କରୁଥିଲେ । ତା'ପରେ ସେ ବୁଝାଉଥିଲେ । ବୁଝାଇବାବେଳେ ସେ ସବା ଆଗ ସଂସ୍କୃତ ସାହିତ୍ୟର ପ୍ରଭାବ ସଂପର୍କରେ ଆଲୋଚନା ପୂର୍ବକ ତା'ପରେ ଛନ୍ଦ ବୈଚିତ୍ର୍ୟ ଆଲୋଚନା କରୁଥିଲେ । ପ୍ରତି ପଦ ପଢ଼ାଇବାବେଳେ ତାହାର ଅଳଙ୍କାର ମଧ୍ୟ ନିରୂପଣ କରିବାକୁ ଭୁଲୁ ନଥିଲେ । ସେ ପଢ଼ାଇବାବେଳେ ଛାତ୍ରମାନଙ୍କ ସମସ୍ୟା ଦୂର କରିବା ପାଇଁ ମଝିରେ ମଝିରେ ସଂପୃକ୍ତ ବିଷୟରୁ ପ୍ରଶ୍ନମାନ ଉତ୍‌ଥାପନ କରି ତା'ର ସୁଷ୍ଠ ସମାଧାନ କରୁଥିଲେ । ଶ୍ରେଣୀର ସର୍ବୋତ୍ତମ ଛାତ୍ରଠାରୁ ଆରମ୍ଭ କରି ଅଧମାଧମ ଛାତ୍ର ବୁଝିବା ପର୍ଯ୍ୟନ୍ତ ସେ ଧୈର୍ଯ୍ୟ ଧରି ବାରମ୍ବାର ବିଷୟମାନଙ୍କୁ ବୁଝାଇବାକୁ ଉଚିତ୍ ମଣୁଥିଲେ । ପଢ଼ାଇବାବେଳେ ଆବଶ୍ୟକସ୍ଥଳେ ଯତ୍ ସାମାନ୍ୟ ପରିହାସ କରିବାରେ ସେ କୁଣ୍ଠିତ ନଥିଲେ । ମନେପଡୁଛି ସେ ବୈଦେହୀଶ ବିଳାସ ପଢ଼ାଇବାବେଳେ ରାବଣ ଦଶ ମସ୍ତକ ଧାରଣ କରି କିପରି ଚାଲୁଥିବ, ଏକାଧିକ ହାତଗୋଡ଼ ଫଳରେ ସେ ସାବଧାନ୍, ବିଶ୍ରାମ୍ ପୋଜିସନ୍‌ରେ ଛିଡ଼ା ହେବାବେଳେ କ'ଣ ଅସୁବିଧା ହେଉଥିବ, ଶୋଇବାରେ କି ଦୁଃଖ ସେ ପାଉଥିବ ଏସବୁ ସେ କହିବାବେଳେ ସେତେବେଳେ ଛାତ୍ରମାନଙ୍କ ମଧ୍ୟରେ ବେଶ୍ ହାସ୍ୟରୋଳ ସୃଷ୍ଟି ହୋଇଥିଲା । ସେ ପଢ଼ାଇବାବେଳେ ନାଟ୍ୟ ଅଭିନେତା ପରି କେତେବେଳେ ଗୁରୁଗମ୍ଭୀର, କେତେବେଳେ ସାଧାରଣ, କେତେବେଳେ ହସିହସି ବିଦ୍ୟାର୍ଥୀମାନଙ୍କୁ ବିଦ୍ୟା ଶିକ୍ଷା ଦେଉଥିଲେ ।

ସେ ବିଷୟଟିକୁ ପଢ଼ାଇବା ସମୟରେ ସେଥିରେ ଏମିତି ମଜ୍ଜି ଯାଉଥିଲେ ଯେ ସେ ସଂପୂର୍ଣ୍ଣ ରୂପେ ନିଜକୁ ଭୁଲି ଯାଉଥିଲେ ।

ସେ ସବୁବେଳେ ଛାତ୍ରମାନଙ୍କର ନୋଟସ୍‌ଖାତା ସଂଶୋଧନ କରିଦେଉଥିଲେ । ପରୀକ୍ଷାରେ କେମିତି ଲେଖିଲେ ନିର୍ଦ୍ଧାରିତ ସମୟରେ ସବୁ ପ୍ରଶ୍ନର ଉତ୍ତର ଦେଇହେବ, ସେ ସଂପର୍କରେ ବିଦ୍ୟାର୍ଥୀମାନଙ୍କୁ ସବୁବେଳେ ସଚେତନ କରାଉଥିଲେ । ପରୀକ୍ଷାରେ ପ୍ରଶ୍ନୋତ୍ତରବେଳେ କିପରି ଭଲ ଉପକ୍ରମ ଆବଶ୍ୟକତା ରହିଛି, ତାକୁ ସେ ତାଙ୍କର ଛାତ୍ରମାନଙ୍କୁ କହିବାକୁ ପସନ୍ଦ କରୁଥିଲେ । ଏପରିକି ତାଙ୍କ ସାହିତ୍ୟ ଆଲୋଚନାରେ କେତେକ ଆଲୋଚନାର ସୁନ୍ଦର ଉପକ୍ରମମାନ ରହିଛି । ବିଶେଷ କରି ତାଙ୍କର 'ସାହିତ୍ୟିକ ଦିଗ୍‌ଦର୍ଶନ' ଗ୍ରନ୍ଥରେ ପ୍ରତି ଆଲୋଚନାର ଚମତ୍କାର ଉପକ୍ରମମାନ ରହିଛି । ତାଙ୍କର ଗ୍ରନ୍ଥଗୁଡ଼ିକ ଏପରି ରୀତିରେ ଲିଖିତ, ଯାହା ଛାତ୍ରମାନଙ୍କର, ଶିକ୍ଷକମାନଙ୍କର ଗବେଷଣା କାର୍ଯ୍ୟରେ ଲାଗିବାଠାରୁ ପରୀକ୍ଷାରେ ବ୍ୟବହାର ପାଇଁ ମଧ୍ୟ ଉପଯୋଗୀ । ସେ ବିଭିନ୍ନ ବିଷୟରେ ତିରିଶ ଖଣ୍ଡରୁ ଊର୍ଦ୍ଧ୍ୱ ଆଲୋଚନାଗ୍ରନ୍ଥ ଲେଖିଛନ୍ତି । ସେଥିମଧ୍ୟରୁ ତାଙ୍କର ଭାଷା ବିଷୟକ ଗ୍ରନ୍ଥମାନ ହେଉଛି ଉଚ୍ଚକୋଟୀର ପାଠ୍ୟପୁସ୍ତକ । ବିଭିନ୍ନ ପତ୍ରପତ୍ରିକାରେ ସେ ଶତାଧିକ ଆଲୋଚନା ମୂଳକ ପ୍ରବଂଧ ଲେଖିଛନ୍ତି, ଯହିଁରେ ତାଙ୍କର ନିର୍ଦ୍ଦିଷ୍ଟ ମତ ଓ ମନ୍ତବ୍ୟମାନ ପ୍ରତିଫଳିତ ।

ସେ ଥିଲେ ଜଣେ ପ୍ରବୀଣ ଗବେଷଣା ଦିଗ୍‌ଦର୍ଶକ । ଷାଠିଏରୁ ଊର୍ଦ୍ଧ୍ୱଛାତ୍ର ତାଙ୍କ ତତ୍ତ୍ୱାବଧାନରେ ପିଏଚ୍.ଡ଼ି. ଓ ଡି.ଲିଟ୍ ଡିଗ୍ରୀ ଲାଭ କରିଛନ୍ତି । ସେ ତାଙ୍କ ଗବେଷଣା ଛାତ୍ରମାନଙ୍କୁ ଉପାଦାନ ସଂଗ୍ରହଠାରୁ ଆରମ୍ଭ କରି ସନ୍ଦର୍ଭ ରଚନା କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରନ୍ତି । ତାଙ୍କର ଗବେଷଣା ଦିଗ୍‌ଦର୍ଶକ କାର୍ଯ୍ୟ ଅତ୍ୟନ୍ତ ଶୃଙ୍ଖଳିତ ଏବଂ ସେ ତାଙ୍କ ଗବେଷକମାନଙ୍କୁ ଏପରି ଦିଗ୍‌ଦର୍ଶନ ଆରମ୍ଭରୁ ଦିଅନ୍ତି, ଯାହା ଗବେଷଣା ପାଇଁ ସେମାନଙ୍କ ମନରେ ମୂଳରୁ ଏକ ଗଭୀର ଆତ୍ମପ୍ରତ୍ୟୟ ସୃଷ୍ଟି କରେ । ଭାଷା, ସାହିତ୍ୟ, ସଂସ୍କୃତି, ପ୍ରାଚୀନ, ଆଧୁନିକ ସବୁ ପର୍ଯ୍ୟାୟରେ ସେ ଗବେଷଣା ତତ୍ତ୍ୱାବଧାରକର କାର୍ଯ୍ୟ ସୁଚାରୁ ରୂପେ ସମ୍ପନ୍ନ କରିଛନ୍ତି ।

ଅଧ୍ୟାପନା ବୃତ୍ତିରେ ଜଣେ ଭଲ ଶିକ୍ଷକ ହେବା ଏକ ଅସାଧ ସାଧନା । ଜଣେ ଶିକ୍ଷକ ନାନା ଉପାୟରେ ପ୍ରଭାବ ବିସ୍ତାର ବିଦ୍ୟାର୍ଥୀଙ୍କ ଉପରେ କରିପାରେ, କିନ୍ତୁ ଭଲ ଭାବରେ ପଢ଼ାଇ ସୁନାମ ଅର୍ଜ୍ଜନ କଷ୍ଟକର ବ୍ୟାପାର । ସେଥିପାଇଁ John Locke ଥରେ କହିଥିଲେ, "It is easier for a tutor to command than to teach." ପାଠ ପଢ଼ାଇବା ଛାତ୍ରମାନଙ୍କ ମନରେ ପାଠପଢ଼ା ସଂପର୍କରେ ଉତ୍ତମ ଧାରଣା ଜନ୍ମାଇବା ହେଉଛି ଭଲ ଶିକ୍ଷକର କର୍ତ୍ତବ୍ୟ । ଡକ୍ଟର ବାସୁଦେବ ସାହୁ ଛାତ୍ରମାନଙ୍କୁ ପାଠ ପଢ଼ାଇ ଓ ଛାତ୍ରମନରେ ବିଦ୍ୟା ସଂପର୍କରେ ଗଭୀର ଆତ୍ମପ୍ରତ୍ୟୟ ଜନ୍ମାଇ ଛାତ୍ରମାନଙ୍କର ପ୍ରୀତିଭାଜନ ହୋଇଥିଲେ ।

କୌଣସି ଶିକ୍ଷକର ସଫଳତା ଛାତ୍ରମନର ବିଦ୍ୟାପ୍ରତି ଅନୁରାଗ ସୃଷ୍ଟିରେ ବିଦ୍ୟମାନ । ଏ ସଂପର୍କରେ ବିଶିଷ୍ଟ ପ୍ରାବନ୍ଧିକ Emerson କହନ୍ତି;"The whole secret of the teacher's force lies in the conviction that men are convertible." ଡକ୍ଟର ବାସୁଦେବ ସାହୁ ଜଣେ ବିଶିଷ୍ଟ ଶିକ୍ଷକ ଭାବେ ମଣିଷକୁ ଆପଣାର ଉତ୍କୃଷ୍ଟ ଶିକ୍ଷାଦାନ ଦ୍ୱାରା ବଦଳାଇ ଦେଇପାରୁଥିଲେ । ସେଥିପାଇଁ ଡଃ ସାହୁ ଇହଲୋକରୁ ବିଦାୟ ନେଇଥିଲେ ସୁଦ୍ଧା ଓଡ଼ିଆ ଭାଷା ସାହିତ୍ୟର ଜଣେ କାଳଜୟୀ ଶିକ୍ଷକ ରୂପେ ଏବେ ମଧ୍ୟ ବଞ୍ଚିଛନ୍ତି ।



ପ୍ରଫେସର ଓ ମୁଖ୍ୟ, ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଂଜ ବିହାର
ବ୍ରହ୍ମପୁର-୭୬୦୦୭, ଓଡ଼ିଶା





# ଡକ୍ଟର ବାସୁଦେବ ସାହୁଙ୍କ ମାର୍ଗଦର୍ଶନ ଶୈଳୀ

ଡଃ ଦଶରଥ ନାୟକ

ଦିବଂଗତ ଓଡ଼ିଆ ବିଭାଗ ପ୍ରଫେସର ଡକ୍ଟର ବାସୁଦେବ ସାହୁଙ୍କର ପ୍ରଜ୍ଞାବତ୍ତାର ସତ୍ତା ନିରୂପଣ କରିବା ବିନ୍ଦୁ ମଧ୍ୟରେ ସିନ୍ଧୁ ଦର୍ଶନ କରିବା ତୁଲ୍ୟ ମାତ୍ର । ତାଙ୍କର ଅସାଧାରଣ ଧୀଶକ୍ତି, ପ୍ରତ୍ୟୁତ୍ପନ୍ନମତିତାକୁ ଆକଳନ କରିବା ଅତ୍ୟନ୍ତ କଷ୍ଟ ସାଧ୍ୟ ।

ବାଲ୍ୟକାଳରୁ ଦାରିଦ୍ର୍ୟର ଉତ୍ପୀଡ଼ନରେ ଜର୍ଜରୀତ ହୋଇ ମଧ୍ୟ ସେ ଦିଗହରା ହୋଇ ନଥିଲେ । ପାଠ ପଢ଼ିବାରେ ତାଙ୍କର ଥିଲା ଅଶେଷ ଆଗ୍ରହ । ପାଠପଢ଼ାକୁ ସେ ଜୀବନ ଭାବରେ ଗ୍ରହଣ କରିନେଇଥିଲେ । ଓଡ଼ଗାଁ ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ପୁରୀ ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟରେ ଆଇ.ଏସ.ସି. ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ବି.ଏସ୍.ସି, ଇଞ୍ଜିନିୟରିଂ, ମେଡ଼ିକାଲ ଅଧ୍ୟୟନ ନିମନ୍ତେ ସମସ୍ତ ମାର୍ଗ ତାଙ୍କ ପାଇଁ ଉନ୍ମୁକ୍ତ ଥିଲା । ଏସବୁ ପାଠ ପଢ଼ିବା ନିମନ୍ତେ ଆବଶ୍ୟକ ଅର୍ଥ ତାଙ୍କ ପାଇଁ ଥିଲା ସ୍ୱପ୍ନ । ପାଠ ପଢ଼ି ଭବିଷ୍ୟତର ସ୍ୱପ୍ନ ତାଙ୍କ ପାଇଁ ଯେତିକି ଆନନ୍ଦ ଦାୟକ ଥିଲା ତା'ଠୁ ଅଧିକ ଦୁଃଖଦାୟକ ଥିଲା ପରିବାର ଦାୟିତ୍ୱ । ମାତ୍ର ଅଳ୍ପକେତେଦିନ ବି.ଏସ୍.ସି. ପଢ଼ିବା ପରେ ସେଥିରୁ ସେ ନିବୃତ୍ତ ହେଲେ, କିନ୍ତୁ ହତୋତ୍ସାହିତ ହୋଇ ନଥିଲେ । ଦୃଢ଼ ମନୋବଳକୁ ପାଥେୟ କରି ସେ ଆଗେଇ ଚାଲିଲେ । ପୁରୀରୁ କଟକ ପ୍ରତ୍ୟାବର୍ତ୍ତନ କଲେ । ରେଭେନ୍ସା ମହାବିଦ୍ୟାଳୟରେ ପାଠ ପଢ଼ିବାର ଯୋଗ୍ୟତା ତାଙ୍କର ଅଗ୍ରଧାଡ଼ିରେ ଥିଲେ ମଧ୍ୟ ଆର୍ଥିକ ସମସ୍ୟା ତାଙ୍କ ନିକଟରେ ମୁଣ୍ଡ ଟେକିଲା । ସେ କିଂ କର୍ତ୍ତବ୍ୟବିମୂଢ଼ ହୋଇ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ସମ୍ମାନ ଶ୍ରେଣୀରେ ନାମ ଲେଖାଇ କୌଣସି ଚାକିରୀ ବା ଅନ୍ୟକିଛି କାମ କରି ନିଜେ ଚଳିବା ସହିତ ପରିବାର ଦାୟିତ୍ୱ ବହନ କଲେ । ଏ ସବୁ ଘାତ ପ୍ରତିଘାତ ତାଙ୍କର ମେଧାଶକ୍ତିର ବିକାଶ ଧାରାରେ ପ୍ରତିବଂଧକ ସୃଷ୍ଟି କରିପାରିଲା ନାହିଁ । ସେ ଓଡ଼ିଆ ସମ୍ମାନ (Hons) ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୬୧ ମସିହାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକମାନ ଲାଭ କରିବାକୁ ସକ୍ଷମ ହୋଇଥିଲେ । ରେଭେନ୍ସା ମହାବିଦ୍ୟାଳୟରେ ଓଡ଼ିଆ ସ୍ନାତକୋତ୍ତର ଶ୍ରେଣୀରେ ନାମ

ଲେଖାଇ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକମାନ ଲାଭ କରିଥିଲେ । ତନ୍ମଧ୍ୟରେ ସେ ଓଡ଼ିଶା ପ୍ରଶାସନିକ ସେବା ପରୀକ୍ଷା ଦେଇ ସେଥିପାଇଁ ଯୋଗ୍ୟ ବିବେଚିତ ହୋଇ ନିଯୁକ୍ତି ପାଇଥିଲେ । ଧୋତି କୁରୁତା ଛାଡ଼ି ପ୍ୟାଣ୍ଟସାର୍ଟ ପରିଧାନ କରି ସାହେବୀ ଢାଞ୍ଚାରେ ପ୍ରଶାସନିକ ସେବାରେ ଯୋଗ ଦେବା ପାଇଁ ଯିବା ପୂର୍ବରୁ ତାଙ୍କର ଶିକ୍ଷାଗୁରୁ ତଥା ରେଭେନ୍ସା ମହାବିଦ୍ୟାଳୟର ଓଡ଼ିଆ ସ୍ନାତକୋତ୍ତର ବିଭାଗୀୟ ମୁଖ୍ୟ ଡକ୍ଟର କୁଂଜବିହାରୀ ତ୍ରିପାଠୀଙ୍କର ଆଶୀର୍ବାଦ ପାଇଁ ସାକ୍ଷାତ୍ କରିବାକୁ ଯାଇଥିଲେ । ସେ ତାଙ୍କୁ ଆଶୀର୍ବାଦ କରିବା ସହ ଭଙ୍ଗା ହୃଦୟରେ କହିଥିଲେ, ବାସୁ ! ତୁମେ ଡେପୁଟୀ କଲେକ୍ଟର ହେବ, ଯାଅ, ହେଲେ ଓଡ଼ିଆ ଜନନୀ, ଓଡ଼ିଆ ଭାଷା ତୁମଠୁ ଅନେକ କଥା ଆଶା ରଖିଥିଲା, ସେଗୁଡ଼ିକ ଅପୂରଣୀୟ ରହିଯିବ ।'' ଏଇ କେଇପଦ କଥା ତାଙ୍କ ମନରେ ଆଣିଦେଇଥିଲା ଅଭୁତପୂର୍ବ ପରିବର୍ତ୍ତନ । ସେ ଚିନ୍ତାକଲେ ଓ ନିଷ୍ପତ୍ତି ନେଲେ ସେ ଅଧ୍ୟାପକ ହେବେ, ଓଡ଼ିଆ ସାରସ୍ୱତ ଭଣ୍ଡାର ସମୃଦ୍ଧ କରିବେ । ସେଇଦିନରୁ ସେ ପଛକୁ ଫେରି ଚାହିଁ ନାହାନ୍ତି । ଅଧ୍ୟାପନା ଓ ଉତ୍କଳ ଭାରତୀର ସେବାରେ ନିଜକୁ ଉତ୍ସର୍ଗ କଲେ । ବାରିପଦାର ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ପ୍ରଥମ ଅଧ୍ୟାପନା, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ଅଧ୍ୟାପନା ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରି ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଭାବରେ ଅବସର ଗ୍ରହଣ କରିଥିଲେ । ସେ ଅଧ୍ୟାପନାକୁ ଜୀବୀକା ଭାବରେ ଗ୍ରହଣ କରି ନଥିଲେ ବରଂ ଗ୍ରହଣ କରିଥିଲେ ଜୀବନ ଭାବରେ । ସାହିତ୍ୟର ବିଭିନ୍ନ ଦିଗକୁ ଆୟତ୍ତ କରି ନୂତନ ଶୈଳୀରେ ପରିବେକ୍ଷଣ କରିବାକୁ ସେ ପେଷା ଭାବରେ ନନେଇ ବରଂ ନିଶା ଭାବରେ ଗ୍ରହଣ କରିଥିଲେ । ଜଣେ ଉଚ୍ଚମାନର ଶିକ୍ଷକ ହେବା ନିମନ୍ତେ ଆବଶ୍ୟକ (୧) ଜ୍ଞାନ ଆହରଣ (୨) ନୂତନ ଆବିଷ୍କାର ତଥା ଜ୍ଞାନ ସମୃଦ୍ଧିକରଣ (୩) ଜ୍ଞାନର ବିତରଣ (୪) ଆଗ୍ରହ ସୃଷ୍ଟି କରି ଉତ୍ସାହିତ କରିବା (୫) ପରିବର୍ତ୍ତନ ଏସବୁ ଗୁଣର ଅଧିକାରୀ ଥିଲେ ଡକ୍ଟର ବାସୁଦେବ ସାହୁ । ତାଙ୍କ ଶିକ୍ଷକ ଜୀବନର ଏଇ ପାଞ୍ଚଗୋଟି ଗୁଣ ଉପରେ ସମ୍ୟକ ଆଲୋଚନା କରିବା ପରେ ଗବେଷଣା ନିମନ୍ତେ ତାଙ୍କର ମାର୍ଗଦର୍ଶନ ଶୈଳୀ ସଂପର୍କରେ ଆଲୋକପାତ୍ କରିବା ସମୀଚିନ ମନେହୁଏ ।

ଜ୍ଞାନ ଆହରଣ କରିବା ନିମନ୍ତେ ପୁସ୍ତକ ପଠନ, ଗବେଷଣା ଏକାନ୍ତ ଆବଶ୍ୟକ । ପ୍ରତ୍ୟହ ଅଧ୍ୟୟନ ଓ ଅଧ୍ୟାପନା ନିମନ୍ତେ ଷୋଳରୁ ଅଠର ଘଣ୍ଟା ସମୟ ସେ ବିନିଯୋଗ କରୁଥିଲ । ପାଠ ପଢ଼ାଇବା ଓ ପଢ଼ିବାରେ ଥିଲା ତାଙ୍କର ଅସାଧାରଣ ନିଷ୍ଠା । ଶ୍ରେଣୀକୁ ଯିବା ପୂର୍ବରୁ ବିଭିନ୍ନ ପୁସ୍ତକ ପଠନ ପୂର୍ବକ ନୂତନ ତଥ୍ୟ ଛାତ୍ରମାନଙ୍କ ନିକଟରେ ପରିବେଷଣ କରିବା ଥିଲା ତାଙ୍କର ଏକ ପ୍ରକାର ନିଶା ।

(୨) ଲବ୍ଧଜ୍ଞାନ ଓ ଅଭିଜ୍ଞତାକୁ ପାଥେୟ କରି ସାହିତ୍ୟ ବିଭିନ୍ନ ଦିଗ ତଥା ସମାଲୋଚନା କ୍ଷେତ୍ରରେ ଅଭୂତପୂର୍ବ ସୃଷ୍ଟି ସମ୍ଭାରକୁ ନେଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବା କ୍ଷେତ୍ରରେ

ସେ ସାଫଲ୍ୟ ଅର୍ଜନ କରିପାରିଥିଲେ । ଜଣେ ଭାଷାବିତ୍ ଭାବରେ ତାଙ୍କର ଅଗାଧ ପାଣ୍ଡିତ୍ୟ ତାଙ୍କୁ ବେଶ୍ ଯଶସ୍ୱୀ କରିପାରିଥିଲା ।

ଜ୍ଞାନବିତରଣ ସଂପର୍କରେ ଆଲୋକପାତ କରିବାବେଳେ ଜଣେ ଅଧ୍ୟାପକଙ୍କର ଶିକ୍ଷାଦାନ ପଦ୍ଧତି, ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ ପ୍ରଭାବିତ କରିବା ଏକ ସ୍ୱତନ୍ତ୍ର ଦିଗ । ଅନେକ ଶିକ୍ଷକ ଅଛନ୍ତି ଯେଉଁମାନଙ୍କ ନିକଟରେ ରହିଛି ଜ୍ଞାନର ଭଣ୍ଡାର ହେଲେ ତାଙ୍କୁ ଉପଯୁକ୍ତ ଭାବେ ପରିବେଷଣ କରିବାର ପଦ୍ଧତି ତାଙ୍କ ନିକଟରେ ନଥାଏ । ହେଲେ ଡକ୍ଟର ବାସୁଦେବ ସାହୁ ଏ କ୍ଷେତ୍ରରେ ଥିଲେ ଅନନ୍ୟ ପ୍ରତିଭାର ଅଧିକାରୀ । ଅଧ୍ୟାପନା ସମୟରେ ସେ ଛାତ୍ରଛାତ୍ରୀମାନଙ୍କୁ ମନ୍ତ୍ରମୁଗ୍ଧ କଲାଭଳି ବିମୋହିତ କରିପାରୁଥିଲେ ।

ତାଙ୍କଠାରୁ ଶିକ୍ଷାଲାଭ କଲାପରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଖେଳି ଯାଉଥିଲା ଉତ୍ସାହ ଓ ଉଦ୍ଦୀପନା । ସତେ ଯେପରି ତାଙ୍କ ଛାତ୍ରଛାତ୍ରୀମାନେ ପ୍ରତିଶ୍ରୁତିବଦ୍ଧ ସେମାନେ ତାଙ୍କର ସେହି ପୂଜ୍ୟ ଶିକ୍ଷକଙ୍କର ପଦାଙ୍କ ଅନୁସରଣ କରି ଉଚ୍ଚମାନର ଶିକ୍ଷକ ହେବେ, ଓଡ଼ିଆ ଭାଷାକୁ ସମୃଦ୍ଧ କରିବେ ।

ଛାତ୍ରଛାତ୍ରୀମାନେ ଯଦି ଅଧ୍ୟାପକଙ୍କ ଅଧ୍ୟାପନାରେ ଉତ୍ସାହିତ ହୋଇ ଜ୍ଞାନଲାଭ କରି ଉଚିତ ମାର୍ଗଦର୍ଶନ କରିପାରନ୍ତି ତାହା ନିଶ୍ଚିନ୍ତ ଭାବେ ଜୀବନଧାରାର ଏକ ପରିବର୍ତ୍ତନ, ଛାତ୍ରଛାତ୍ରୀମାନଙ୍କୁ ତାଙ୍କର ନୀତି, ଆଦର୍ଶ, ସମୟାନୁବର୍ତ୍ତିତା, ଶ୍ରଦ୍ଧା, ସହାନୁଭୂତି ଓ ସର୍ବୋପରି ତାଙ୍କ ଜ୍ଞାନ ବିନିଯୋଗ ପୂର୍ବକ ସେ ପ୍ରଭାବିତ କରି ପରିବର୍ତ୍ତନ ଆଣିବାକୁ ସେ ସକ୍ଷମ ହୋଇପାରିଥିଲେ ।

ଡକ୍ଟର ବାସୁଦେବ ସାହୁଙ୍କର ସାହିତ୍ୟିକ ସୃଜନୀ ଶକ୍ତିର ଆକଳନ ଗୋଟିଏ କ୍ଷୁଦ୍ର ପ୍ରବଂଧ ମାଧ୍ୟମରେ ପରିପ୍ରକାଶ କରିବା ସମ୍ଭବ ନୁହେଁ । ସେ ଏକାଧାରାରେ ଥିଲେ ଜଣେ ଯଶସ୍ୱୀ ଅଧ୍ୟାପକ, ପ୍ରାବଂଧିକ, ସମାଲୋଚକ, ଭାଷାତତ୍ତ୍ୱବିତ୍, ନାଟ୍ୟକାର ଗୀତିକାର, କବି, ଗବେଷକ ତଥା ଅନେକ ଅନିସନ୍ଧିତ୍ସୁ ଗବେଷକଙ୍କର ମାର୍ଗ ଦର୍ଶକ । ସିନ୍ଧୁରୁ ବିନ୍ଦୁ ଦର୍ଶନ କଲା ଭଳି ତାଙ୍କର ଅଶେଷ ଗୁଣାବଳୀରୁ ଗୋଟିଏ ଦିଗକୁ ଆଧାର କରି ଆଲୋଚନା କରିବା ସମୀଚୀନ ମନେକରେ ।

ସେ ଥିଲେ ମୋ ଗବେଷଣାର ମାର୍ଗଦର୍ଶକ । ମୋର ଅନୁଭବ ତଥା ଉପଲବ୍ଧିରୁ କିୟଂଦଶ ପରିପ୍ରକାଶ କରିବାକୁ ପ୍ରୟାସ କରୁଛି । ଗବେଷଣାର ଦିଗ୍‌ଦର୍ଶକ ହେବାକୁ ହେଲେ ଦିଗ୍‌ଦର୍ଶକ ନିମ୍ନୋକ୍ତ ବିଷୟ ପ୍ରତି ବିଶେଷ ଧ୍ୟାନ ଦେଇଥାନ୍ତି, ତା' ନହେଲେ ଗବେଷକ ଗବେଷଣା କ୍ଷେତ୍ରରେ କୃତକାର୍ଯ୍ୟ ହୋଇପାରନ୍ତି ନାହିଁ ।

ସର୍ବପ୍ରଥମେ ଗବେଷଣା କରିବା ନିମିତ୍ତ ଇଚ୍ଛୁକ ବ୍ୟକ୍ତିଙ୍କର ଗବେଷଣା କ୍ଷେତ୍ରରେ ସାମର୍ଥ୍ୟ, ନିଷ୍ଠା ତଥା ଭବିଷ୍ୟତରେ ସେ ଗବେଷଣାରୁ ଉପଲବ୍ଧ ଉପାଧିର ଆବଶ୍ୟକତା

ଉପରେ ମାର୍ଗ ଦର୍ଶକ ବିଶେଷ ଗୁରୁତ୍ୱ ସହକାରେ ଅନୁଧାନ କରିବା ଉଚିତ୍ । ଅନେକ କ୍ଷେତ୍ରରେ ପରିଲକ୍ଷିତ ହୁଏ, ବହୁ ଗବେଷକ ଅନ୍ୟମାନଙ୍କୁ ଦେଖି ହାଲୁକା ଭାବରେ ଗବେଷଣା କରିବାକୁ ପ୍ରୟାସ କରନ୍ତି । ସେଥିରେ କୌଣସି ନିଷ୍ଠା ନଥାଏ । ଆଉ କେତେକ କ୍ଷେତ୍ରରେ ମୌଖିକ ଭାବରେ ଭବିଷ୍ୟତରେ ପିଏଚ୍.ଡ଼ି ଉପାଧିରେ ମଣ୍ଡିତ ହେବା ପାଇଁ ଆଶା ରଖି ଗବେଷଣା କରିବାକୁ ପ୍ରୟାସ କରନ୍ତି । ଅନ୍ୟଏକ ଦିଗ ହେଲା ଗବେଷଣାକୁ ଭବିଷ୍ୟତ କର୍ମକ୍ଷେତ୍ରରେ ପଦୋନ୍ନତି ନିମନ୍ତେ ଲକ୍ଷ୍ୟ ରଖି ଗବେଷଣା ଆରମ୍ଭ କରନ୍ତି, ସେମାନେ ଅଧିକ ତତ୍ପରତା ପ୍ରକାଶ କରିଥାନ୍ତି । ଅବଶ୍ୟ କେତେକ ଗବେଷକ ଅଛନ୍ତି ଶିକ୍ଷା ବୃତ୍ତିରେ ନଥାଇ ମଧ ଗବେଷଣା ମାଧମରେ ନୂତନ ତଥ୍ୟମାନ ପରିପ୍ରକାଶ କରିବା ପାଇଁ ଉଦ୍ୟମ ଚଳାଇଥାନ୍ତି । ଏ ପ୍ରକାରର ଗବେଷକଙ୍କ ସଂଖ୍ୟା କମ୍ ।

ଡକ୍ଟର ବାସୁଦେବ ସାହୁ ପ୍ରତ୍ୟେକ ଗବେଷକ ମାନଙ୍କର ମନସ୍ତତ୍ତ୍ୱକୁ ତନ୍ନତନ୍ନ କରି ଅନୁଧାନ କରିଥାନ୍ତି । ଗବେଷକଙ୍କର ନିର୍ଦ୍ଦିଷ୍ଟ ଗବେଷଣା କ୍ଷେତ୍ରରେ ପାଣ୍ଡିତ୍ୟ, ନିଷ୍ଠା ଏବଂ ଆବଶ୍ୟକତାକୁ ସେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ଅନେକ ପ୍ରାକ୍ତନ ଛାତ୍ର, ଛାତ୍ରୀ ଓ ଗବେଷଣା କ୍ଷେତ୍ରରେ ଆଗ୍ରହୀ ବ୍ୟକ୍ତି ତାଙ୍କୁ ମାର୍ଗ ଦର୍ଶକ କରିବା ନିମନ୍ତେ ଅନୁରୋଧ କଲାବେଳେ ସେ ଉପରୋକ୍ତ ଦିଗମାନ ପ୍ରତି ଦୃଷ୍ଟି ଦେଇ ସମ୍ମତି ପ୍ରକାଶ କରିଥାଆନ୍ତି ବା ସିଧାସଳଖ ମନା କରିଦେଇଥାନ୍ତି ।

ଗବେଷଣା ନିମନ୍ତେ ଉପଯୁକ୍ତ ବିଷୟ ଓ କ୍ଷେତ୍ର ଚୟନ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ଅନେକ କ୍ଷେତ୍ରରେ ଦେଖାଯାଏ ଗବେଷକଙ୍କର ସାମର୍ଥ୍ୟକୁ ବିଚାରକୁ ନ ନେଇ ମାର୍ଗଦର୍ଶକମାନେ ସ୍ୱୀୟ ଜ୍ଞାନର ପରିପ୍ରକାଶ ପୂର୍ବକ ଗୋଟିଏ ଗୋଟିଏ କଠିନ ବିଷୟବସ୍ତୁ ବା କ୍ଷେତ୍ର ନିର୍ବାଚନ କରିଥାନ୍ତି । ଆରମ୍ଭରେ ଗବେଷକମାନେ ଉତ୍ଫୁଲିତ ହୋଇ ସେହି ବିଷୟବସ୍ତୁକୁ ଗ୍ରହଣ କରିନେଇ ଗବେଷଣା କରିବାକୁ ଆଗେଇ ଯାଇଥାନ୍ତି । ହୁଏତ ସେଥିରେ ତାଙ୍କର ସାମର୍ଥ୍ୟ ନଥାଏ ବା ଆବଶ୍ୟକ ସହାୟକ ପୁସ୍ତକର ଅଭାବ ଇତ୍ୟାଦି କାରଣରୁ ଗବେଷକ ସଂପୂର୍ଣ୍ଣ ଭାବେ ନିରୁତ୍ସାହିତ ହୋଇ ସେଥିରୁ ନିବୃତ୍ତ ରହେ । ଅନେକ କ୍ଷେତ୍ରରେ ମାର୍ଗଦର୍ଶକମାନେ ବିଷୟବସ୍ତୁ ଚୟନ ପରେ ସେମାନଙ୍କର କର୍ତ୍ତବ୍ୟ ସରିଗଲା ବୋଲି ଭାବି ଅନାଶକ୍ତଭାବ ପ୍ରକାଶ କରିଥାଆନ୍ତି । କ୍ରମଶଃ ଗବେଷକ ମନରେ ବିତସ୍ପୃହ ଭାବ ଦେଖାଦିଏ । ଡକ୍ଟର ବାସୁଦେବ ସାହୁ ଥିଲେ କିନ୍ତୁ ଭିନ୍ନ ଶୈଳୀର ମାର୍ଗଦର୍ଶକ । ଗବେଷକର ସାମର୍ଥ୍ୟ, ମନସ୍ତାତ୍ତ୍ୱିକ ପରିବେଶ, ସହାୟକ ପୁସ୍ତକର ପ୍ରାପ୍ତି ତଥା ପ୍ରାପ୍ତିସ୍ଥାନ ଉପରେ ସଚେତନ ଥିଲେ । ମାର୍ଗଦର୍ଶକ ଗବେଷଣାର ବିଷୟବସ୍ତୁ ଚୟନ ସ୍ଥରେ ନିଜେ ଅଧ୍ୟାପନା ମାଧମରେ ନୂତନ ତଥ୍ୟର ଅନୁସନ୍ଧାନ, କେଉଁ ପତ୍ର ପତ୍ରିକାରେ ନୂତନ ତଥ୍ୟର ଅନୁସନ୍ଧାନ, କେଉଁ ପତ୍ର ପତ୍ରିକାରେ ସେ ସଂପର୍କୀତ ନୂତନ ତଥ୍ୟ ପ୍ରକାଶ ପାଇଛି ସେ ସଂପର୍କରେ ଯତ୍ନବାନ ହୋଇ ଗବେଷକଙ୍କୁ





ପରାମର୍ଶ ଦେଇ ପରମ ସହାୟକ ହୋଇଥାନ୍ତି । ମାର୍ଗଦର୍ଶକଙ୍କର ବିଚକ୍ଷଣତା, ପ୍ରଜ୍ଞା, ତଥା ସମୟୋପଯୋଗୀ ପରାମର୍ଶ ଗବେଷଣାର ପରିସମାପ୍ତ ପାଇଁ ବିଶେଷ ସହାୟକ ହୋଇଥାଏ । ଗବେଷଣାର ପରିସମାପ୍ତି ପରେ ସନ୍ଦର୍ଭ ପ୍ରସ୍ତୁତି ପାଇଁ ଉପଯୁକ୍ତ ସ୍ଥାନରେ ଉପଯୁକ୍ତ ଉପାଦେୟ ତଥ୍ୟ ସନ୍ନିକରଣ ନିମନ୍ତେ ମାର୍ଗଦର୍ଶକଙ୍କର ପରାମର୍ଶ ଅତ୍ୟନ୍ତ ମୂଲ୍ୟବାନ । ମୁଁ ମୋ ଗବେଷଣା କାଳରେ ଡକ୍ଟର ବାସୁଦେବ ସାହୁଙ୍କଠାରୁ ସମୟୋପଯୋଗୀ ପରାମର୍ଶମାନ ପାଇଛି । କୌଣସି ନୂତନ ପତ୍ର ପତ୍ରିକାରେ ମୋ ଗବେଷଣା ସଂପର୍କୀତ ଲେଖାଟିଏ ପ୍ରକାଶ ପାଇଲେ ସେ ରିକ୍ସାରେ ଆସି ଘରେ ପହଞ୍ଚି ଯାଆନ୍ତି । ଅନେକ ପରାମର୍ଶ ଦେଇ ଆସୁ ପରିସମାପ୍ତି ନିମନ୍ତେ ପରାମର୍ଶ ତଥା ତାଗିଦ୍ କରି ଫେରିଯାଆନ୍ତି । ମୋ କାର୍ଯ୍ୟ ତଦାରଖ ନିମନ୍ତେ ହଠାତ୍ ଆସି ବେଳେବେଳେ ପହଞ୍ଚିଯାଆନ୍ତି । ତାଙ୍କ ଚିନ୍ତାରେ ଗବେଷଣା ପାଇଁ ବେଳାଅବେଳାର ସ୍ଥାନ ନଥାଏ । ମୁଁ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତଥାଇ ଗବେଷଣା କାର୍ଯ୍ୟରେ ହେଳା କରୁଥିଲି । ସାର୍‌ଙ୍କ ପୂର୍ବ ତାଗିଦ୍ ଓ ପରାମର୍ଶ ଅନୁସାରେ ଗବେଷଣାର କିଛି ଅଂଶ ନେଇ ତାଙ୍କ ପାଖରେ ଯାଇଁ ନପହଞ୍ଚିଲେ ସେ ପୁଣି ଆମ ଘରେ ପହଞ୍ଚି ଯାଆନ୍ତି । ବେଳେବେଳେ ଲାଜରେ ମୁଁ ଘରେ ଥାଇ ମଧ୍ୟ ମନାକରିଦିଏ । ହେଲେ ତାଙ୍କ ଧୈର୍ଯ୍ୟ ଥିଲା ଅସୀମ । ସେ ଅପେକ୍ଷା କରି ବସନ୍ତି । ପିଲାମାନଙ୍କ ସହିତ ଓ ମୋ ବୋଉ ସହିତ ଦୁଃଖସୁଖ ହୁଅନ୍ତି । ଆଲୋଚନାବେଳେ କହନ୍ତି, ''ଦଶରଥ, ସବୁବେଳେ କାହାରିନା କାହାରି ଉପକାର କାମରେ ଯାଇଥିବ, ଫେରୁ ମୁଁ ତାକୁ ସାକ୍ଷାତ୍ କରି ନୂଆ ପତ୍ରିକା ଦେବି ଓ ତା' ଲେଖା ସଂଶୋଧନ କରି ଫେରିବି'' । ପଦ୍ମତୋଳା ଡାକରେ ନାଗ ସାପ ଗାତରୁ ବାହାରିଲା ପରି ମୁଁ କାନଧରି ବାହାରି ଦୁଃଖ ପ୍ରକାଶ କରେ । ସେ କେବେ ବିରକ୍ତି ହେବାର ମୁଁ ଲକ୍ଷ୍ୟ କରିନି । ବରଂ କହନ୍ତି 'ତମେ ବ୍ୟସ୍ତରେ ରହି ଲେଖିପାରି ନାହଁ, ଟିକିଏ ସମୟ ଦେଲେ ଶେଷ ହୋଇଯିବ, ତମେ ଏବେ ଅନୁଭବ କଲଣି, ବୁଝିଗଲଣି, ଏଥର ଗବେଷଣା ନିଶ୍ଚୟ ଶେଷ ହେବ ।'' ସବୁଠୁ ବଡ଼କଥା ହେଲା ସେ ଆସିଥିବା ରିକ୍ସା ଭଡ଼ା ସେ ନିଜେ ଦେଇ ଦିଅନ୍ତି । ଯେତେ ଅନୁନୟ ବିନୟ କଲେ ବି ମୋତେ ଦେବାକୁ ବାରଣ କରନ୍ତି । ବାଟରେ ଗଲାବେଳେ କେବେକେବେ ଜଳଖିଆ ଖାଉ, ସେ ଆଗେ ଉଠିପଡ଼ି ଅଇଁଠା ହାତରେ ପଇସା ବଢ଼ାଇ ଦିଅନ୍ତି । ମୁଁ ଯେତେ ଦେବାକୁ ଚେଷ୍ଟା କଲେ ସେ କହନ୍ତି ''ମୁଁ ବଡ଼ ଭାଇ, ଦେବାର ଅଧିକାର ମୋର, ତୁମେ ସାନ, ତୁମର ଦେବାର ପ୍ରଶ୍ନ ଉଠୁଛି କେଉଁଠି ?'' ଆଜିକାଲି ମାର୍ଗଦର୍ଶନ କ୍ଷେତ୍ରରେ ଏଭଳି ମାର୍ଗଦର୍ଶକଙ୍କ ସଂଖ୍ୟା ଅତି କମ୍ ।

ଗବେଷଣା ସନ୍ଦର୍ଭ ସଂଶୋଧନ ସମୟରେ ସେ ପ୍ରତ୍ୟେକ ଶବ୍ଦ ଓ କାବ୍ୟକୁ ତନ୍ନତନ୍ନ କରି ଦେଖନ୍ତି । ପ୍ରାଥମିକ ଅବସ୍ଥାରେ ସେ ନାଲି ନେଳି କଲମରେ କାଟିକୁଟି ସଂଶୋଧନ କରିବା ସହିତ ଏ ପରିଚ୍ଛେଦରୁ କିଛି ଅଂଶ ନେଇ ଆର ପରିଚ୍ଛେଦରେ ସଂଯୋଗ କରିବାର

ସାଙ୍କେତିକ ଚିହ୍ନମାନ ପ୍ରୟୋଗ କରିଥାନ୍ତି । ଅନେକ କ୍ଷେତ୍ରରେ ଦେଖୁଦେଖୁ ପାଠ ନକରି ମଧ୍ୟ ଏକ ସଂଗରେ ଅନେକ ଗୁଡ଼ିଏ ପୃଷ୍ଠାରେ ନାଲିଛକି ପକାଇ 'ଅନାବଶ୍ୟକ' ଲେଖି ଦେଇଥାନ୍ତି । ଆଗ୍ରହରେ କଷ୍ଟକରି ଲେଖିଥିବା ଅନେକ ପୃଷ୍ଠାକୁ 'ଅନାବଶ୍ୟକ' ଲେଖି ବାଦ୍ ଦେଲାବେଳେ ମନରେ ଦୁଃଖ ହୋଇଥିଲେ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ସନ୍ଦର୍ଭଟି·ପୂର୍ଣ୍ଣାଙ୍ଗ ହୋଇ ଆତ୍ମପ୍ରକାଶ କଲାବେଳେ ହୃଦ୍‌ବୋଧ ହୁଏ ଯେ ବାସ୍ତବରେ ବାଦ୍ ପଡ଼ିଥିବା ଲେଖାଗୁଡ଼ିକ ଅନାବଶ୍ୟକ ଥିଲା । ସନ୍ଦର୍ଭ ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ ହେବା ପୂର୍ବରୁ ସେ ଶେଷଥର ପାଇଁ ଆମୂଳଚୂଳ ପାଠ କରି ମାର୍ଗଦର୍ଶକଙ୍କ ଉଦ୍ଦିଷ୍ଟ ସୁପାରିଶରେ ଦସ୍ତଖତ କରନ୍ତି । ଗବେଷକମାନଙ୍କ ମଧ୍ୟରେ ଗଭୀର ଆତ୍ମବଳ ସୃଷ୍ଟିକରି ସଠିକ୍, ସୁନ୍ଦର ସନ୍ଦର୍ଭ ପ୍ରକାଶ କରିବାରେ ସେ ବିଶେଷ ସହାୟକ ହୋଇଥାନ୍ତି । ଡକ୍ଟର ବାସୁଦେବ ସାହୁଙ୍କର ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଥିଲା ପାଣ୍ଡିତ୍ୟ । ସେ ତାଙ୍କ ଜୀବଦଶା କାଳରେ ଷାଠିଏ ଜଣରୁ ଅଧିକ ଗବେଷକଙ୍କୁ ପିଏଚ୍.ଡ଼ି ଉପାଧି ଏବଂ ପାଞ୍ଚ ଜଣଙ୍କୁ ଡି.ଲିଟ୍ ଉପାଧିରେ ଭୂଷିତ କରାଇବାରେ ଥିଲେ ସଫଳ ମାର୍ଗଦର୍ଶକ । ପ୍ରତ୍ୟେକ ଗବେଷଣାର ବିଷୟବସ୍ତୁକୁ ଅନୁଶୀଳନ କଲେ ଜଣାପଡ଼େ ପ୍ରତ୍ୟେକ ଗବେଷଣାର କ୍ଷେତ୍ର ବା ବିଷୟବସ୍ତୁ ·ଭିନ୍ନଧର୍ମର ଭିନ୍ନକ୍ଷେତ୍ରର । ସେଥି ମଧ୍ୟରେ ରହିଛି ଆଧ୍ୟାତ୍ମିକ ଚେତନା, ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ,· ଭାଷା, କାବ୍ୟକବିତା, ବ୍ୟକ୍ତିବିଶେଷଙ୍କ ସୃଷ୍ଟି ଓ ସଂପାଦନା, ଅନୁବାଦ କଳା ଇତ୍ୟାଦି ଇତ୍ୟାଦି । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ତାଙ୍କର ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗରେ ଥିଲା ଅଗାଧ ପାଣ୍ଡିତ୍ୟ, ଯଦ୍ୱାରାକି ସେ ସବୁକ୍ଷେତ୍ରରେ ଜଣେ ସଫଳ ମାର୍ଗ ଦର୍ଶକ ହୋଇପାରିଛନ୍ତି । ତାଙ୍କର ମାର୍ଗଦର୍ଶନରେ ଗବେଷଣା ସନ୍ଦର୍ଭଗୁଡ଼ିକ ଓଡ଼ିଆ ସାହିତ୍ୟ ଓ ଭାଷା ପାଇଁ ଗୋଟିଏ ଗୋଟିଏ ମହାର୍ଘ୍ୟ ସଂପଦ । ତାଙ୍କର ଓଡ଼ିଆ ସାହିତ୍ୟରେ ଅଗାଧ ପ୍ରବେଶ ସହିତ, ଇଂରାଜୀ, ହିନ୍ଦୀ, ବଂଗଳା, ଆସାମୀ, ଉର୍ଦ୍ଦୁ ଭାଷାରେ ମଧ୍ୟ ଯଥେଷ୍ଟ ଜ୍ଞାନ ଥିଲା । ସେ ତୁଳନାତ୍ମକ ସାହିତ୍ୟ କ୍ଷେତ୍ରରେ ମାର୍ଗଦର୍ଶକ ହୋଇ ମଧ୍ୟ ଯଶସ୍ୱୀ ହୋଇପାରିଛନ୍ତି । ଗଛରୁ ଡାଳ, ଡାଳରୁ ଉପଡ଼ାଳ ଓ ଓହଳ ବାହାରି ପରିବ୍ୟାପ୍ତ ଓ ମଜଭୁତ ହେଲାଭଳି ତାଙ୍କର ମାର୍ଗଦର୍ଶନରୁ ଅନେକ ଗବେଷକ ଓ ଗବେଷିକା ଉପକୃତ ହୋଇ ଯଶସ୍ୱୀ ଓ ପ୍ରତିଷ୍ଠିତ ହେବା ସଂଗେ ସଂଗେ ଅନେକ ଗବେଷକଙ୍କୁ ମାର୍ଗଦର୍ଶନ ଦେଇ ଉପକୃତ କରିବାକୁ ସକ୍ଷମ ହୋଇପାରିଛନ୍ତି । ଡକ୍ଟର ବାସୁଦେବ ସାହୁ ସଶରୀରେ ନଥିଲେ ମଧ୍ୟ ସେ ଯେଉଁ ଲେଖାମାନ ଲେଖି ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି ଏବଂ ବିଶେଷତଃ ବିଭିନ୍ନ ବିଭାଗରେ ଯେଉଁ ଷାଠିଏଟି ଗବେଷଣା ସନ୍ଦର୍ଭ ଛାଡ଼ି ଯାଇଛନ୍ତି ସେଗୁଡ଼ିକ ଭବିଷ୍ୟତର ଗବେଷକମାନଙ୍କୁ ମାର୍ଗଦର୍ଶନ ଦେବା ସହିତ ପ୍ରେରଣାର ଉତ୍ସ ହୋଇ ରହିବ ।

ଡକ୍ଟର ବାସୁଦେବ ସାହୁଙ୍କ ପରି ମହାନ ନିଷ୍ଠଳଙ୍କ ନିଃସ୍ୱାର୍ଥପର, ତ୍ୟାଗୀ, ସ୍ନେହୀ, ଉଦାର, ସୃଜନଶୀଳ, ନିଜ ଗୋଡ଼ରେ ଛିଡ଼ା ହୋଇପାରିଥିବା ବ୍ୟକ୍ତିତ୍ୱ, କର୍ତ୍ତବ୍ୟ ପରାୟଣ, ଜ୍ଞାନୀ, ବଂଧୁପ୍ରେମୀ, ସହକର୍ମୀ, ବାପା, ଭାଇ, ମାମୁଁ, ଜ୍ଞାତି, କୁଟୁମ୍ବ ସର୍ବୋପରି ମାର୍ଗଦର୍ଶକ ଯୁଗେଯୁଗେ ସମସ୍ତଙ୍କୁ ପ୍ରାପ୍ତ ହେଉ-ଏହାହିଁ ମୋର ଅନୁଚିନ୍ତା ଓ ପରମ କାରୁଣିକ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।



ପ୍ଲଟ୍ ନଂ-୩୨, ପାତ୍ରପଡ଼ା
ଭୁବନେଶ୍ୱର-୭୫୧୦୧୯

# ସତ୍ୟାନୁସନ୍ଧାନୀ ପ୍ରାବନ୍ଧିକ ବାସୁଦେବ

ଡକ୍ଟର ତୀର୍ଥାନନ୍ଦ ମିଶ୍ର

ଡକ୍ଟର ବାସୁଦେବ ସାହୁ (ସୁବ୍ରତ) ଓଡ଼ିଶାର ସାରସ୍ୱତ ଆକାଶର ଜଣେ ଉଜ୍ଜ୍ୱଳତମ ପ୍ରତିଭାଦୀପ୍ତ ନକ୍ଷତ୍ର । ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଜଣେ ଛାତ୍ରବତ୍ସଳ, କର୍ତ୍ତବ୍ୟନିଷ୍ଠ, ଜ୍ଞାନପାଗଳ ତଥା ସମୟସଚେତନ ଆଚାର୍ଯ୍ୟ ଭାବେ ସେ ସୁପରିଚିତ । ତାଙ୍କ ଆୟୁଷ୍କାଳ (ଖ୍ରୀ ୧୯୪୦-ଖ୍ରୀ ୨୦୦୫) ମୁଖ୍ୟତଃ ସାରସ୍ୱତ ସାଧନାରେ ହିଁ ଅତିବାହିତ ହୋଇଥିଲା । ଜଣେ ଉତ୍ତମ ଛାତ୍ର ଭାବେ ସେ ଦୁଇ ଦୁଇଟି ସ୍ୱର୍ଣ୍ଣପଦକ ପାଇ ଯେତେ ଶ୍ରଦ୍ଧା ତଥା ସମ୍ମାନର ଅଧିକାରୀ ହୋଇଥିଲେ ଜଣେ ସାହିତ୍ୟ ସାଧକ ତଥା ନୀତିବାନ୍ ଅଧ୍ୟାପକ ଭାବରେ ମଧ ସେ ଛାତ୍ର ସମାଜରୁ ସେତିକି ସମ୍ମାନ ଲାଭ କରିପାରିଛନ୍ତି । ସାହିତ୍ୟ ସମାଲୋଚନା, ଗବେଷଣା, ସମ୍ପାଦନା, ଅନୁବାଦ, ପୋଥିପାଣ୍ଡୁଲିପି ସଂଗ୍ରହ ଏବଂ ସଂରକ୍ଷଣ ତଥା ପାଠୋଦ୍ଧାର ବିଶେଷକରି ଶୁଦ୍ଧପାଠ ନିର୍ଣ୍ଣୟରେ ତାଙ୍କର ପ୍ରତିଭା ଥିଲା ଅବିସମ୍ବାଦିତ । ଜଣେ ଶିକ୍ଷାବିତ୍ ଭାବରେ ସେ ଜାତୀୟ ସ୍ତରରେ ସ୍ୱୀକୃତ ତଥା ସମ୍ବର୍ଦ୍ଧିତ । ତାଙ୍କର ଗୁରୁଜନ ଭକ୍ତି, ବନ୍ଧୁପ୍ରୀତି, ଛାତ୍ରବତ୍ସଳତା ତଥା ଉତ୍ତମ ଅଧ୍ୟାପନା ନିମିତ୍ତ ସେ ଆପଣାର ସ୍ୱନାମକୁ ଧନ୍ୟ କରିଛନ୍ତି । ବିଶେଷକରି ଭାବ ବିଜ୍ଞାନ କ୍ଷେତ୍ରରେ ଭାବର ଉଚ୍ଚକୋଟୀର ଗବେଷଣା ସ୍ୱାଗତଯୋଗ୍ୟ । ଶ୍ରୀ ଜଗନ୍ନାଥଙ୍କ ମହିମା ବିଶେଷକରି ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥଙ୍କ ଅତୁଳନୀୟ ପ୍ରଭାବ ଉପରେ ତାଙ୍କର ଗବେଷଣା ପ୍ରକୃତରେ ଅଭିନନ୍ଦନୀୟ । ସାହିତ୍ୟ ସଂସ୍କୃତି ସଂଗଠନ କରିବା, ପାଠଚକ୍ର, କର୍ମଶାଳା ପ୍ରଭୃତି ଆୟୋଜନ କରି ଏହା ମାଧ୍ୟମରେ ଛାତ୍ରଛାତ୍ରୀଙ୍କୁ ଶିକ୍ଷାପ୍ରତି ଉତ୍ସାହୀ କରିବା ତାଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ । ପ୍ରାଥମିକ ପର୍ଯ୍ୟାୟରେ ଯଦିଓ କବିତା ରଚନା ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲା, ଯାହା ତାଙ୍କ 'ସଂବିତ୍' କବିତା ସଂକଳନରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ । ପରବର୍ତ୍ତୀ କାଳରେ ଜଣେ ଅଧ୍ୟାପକ ଭାବରେ ସେ ସାହିତ୍ୟ ସମାଲୋଚନାକୁ ନିଜ ବ୍ରତ ଭାବେ ଗ୍ରହଣ କରିନେଇଛନ୍ତି । ତାଙ୍କର ପଚିଶ ଗୋଟିରୁ ଅଧିକ ଗ୍ରନ୍ଥ ଅଦ୍ୟାବଧି ପ୍ରକାଶିତ ହୋଇଛି ଏବଂ ତାଙ୍କ ଶେଷ ଆଲୋଚନା ପୁସ୍ତକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଉପରେ ରଚିତ ତଥା ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ମନୋଗ୍ରାଫ୍‌କୁ ସେ ଜୀବଦ୍ଦଶାରେ ଦେଖିପାରି ନଥିଲେ ଯାହା ତାଙ୍କ ଶେଷ ଶଯ୍ୟାରେ ତାଙ୍କ କନ୍ୟା ଆୟୁଷ୍ମତୀ ଶାଶ୍ୱତୀ ତାଙ୍କ ନିକଟରେ ରଖି ଦେଇଥିଲେ । ଜଣେ କବି ଅଥବା ଗାଳ୍ପିକ (ତାଙ୍କ ରଚିତ

ଦୁଇଟି ଗଳ୍ପଗ୍ରନ୍ଥ ଭାବକୁ ନିକଟ ଅଭାବେ ଅଭେଟ ଓ ଜ୍ୱଳନରୁ ପୁନର୍ଜନ୍ମ) ଅପେକ୍ଷା ଓଡ଼ିଆ ସାହିତ୍ୟରେ ଜଣେ ପ୍ରାବନ୍ଧିକ ତଥା ସମୀକ୍ଷକ ଭାବେ ଅଧିକ ପରିଚିତ ହୋଇଛନ୍ତି ।

ଡଃ ବାସୁଦେବ ସାହୁ ସାହିତ୍ୟ ସମାଲୋଚନାର ବିଭିନ୍ନ ଦିଗରେ ଲେଖନୀ ଚାଳନା କରିଥିଲେ । ଆଧୁନିକ ଭାଷା ବିଜ୍ଞାନ ଓ ତୁଳନାତ୍ମକ ଭାଷାତତ୍ତ୍ୱ, ଭାଷାତତ୍ତ୍ୱର ସାଧାରଣ ନିୟମ, ଓଡ଼ିଆ ଭାଷା ଇତିହାସ, ଓଡ଼ିଆ ବ୍ୟାକରଣ, ଓଡ଼ିଆ ସାହିତ୍ୟର ଇତିହାସ, ବର୍ଣ୍ଣନାତ୍ମକ ପାଣ୍ଡୁଲିପି ସୂଚୀ, ସାହିତ୍ୟ ସମୀକ୍ଷା ସାହିତ୍ୟ ତତ୍ତ୍ୱ, ପ୍ରାଚୀନ, ମଧକାଳୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ, ବର୍ଣ୍ଣନାତ୍ମକ ପାଣ୍ଡୁଲିପି ସୂଚୀ, ସାହିତ୍ୟ ସମୀକ୍ଷା, ସାହିତ୍ୟ ତତ୍ତ୍ୱ, ପ୍ରାଚୀନ, ମଧକାଳୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟ, କାବ୍ୟାଳଙ୍କାର ତତ୍ତ୍ୱ ଏବଂ ସଂକଳନ-ସମ୍ପାଦନା କ୍ଷେତ୍ରରେ ତାଙ୍କର ଗଭୀର ପ୍ରବେଶ ଥିବାରୁ ତାଙ୍କ ସମୀକ୍ଷା ଦୃଷ୍ଟି ଏ ସମସ୍ତ ଦିଗରେ ପ୍ରସାରିତ ହୋଇଛି । ତାଙ୍କ ଆଲୋଚନା ଗ୍ରନ୍ଥମାନଙ୍କ ମଧରେ ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା (ପ୍ରଥମ ଓ ଦ୍ୱିତୀୟ ଭାଗ), ଭାଷା ବିଜ୍ଞାନର ରୂପରେଖ, ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ, ପୃଥିବୀର ଭାଷା ଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା, ଭାଷା ବିଜ୍ଞାନ ଓ ଭାଷା ବିଜ୍ଞାନୀ, ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ, ସାହିତ୍ୟିକ ଦିଗ୍‌ଦର୍ଶନ, ଅଳଙ୍କାର ତତ୍ତ୍ୱ, ଓଡ଼ିଆ ସାହିତ୍ୟରେ ଧର୍ମୀୟ ପରମ୍ପରା, ଆଧୁନିକ ସାହିତ୍ୟ ଭାଷ୍ୟ, ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ ଓ ଓଡ଼ିଆ ସାହିତ୍ୟର ସୃଷ୍ଟି ସଂପଦ ଆଦି ଅନ୍ୟତମ । ସମ୍ପାଦନା ଓ ସମୀକ୍ଷା କ୍ଷେତ୍ରରେ ବାସୁଦେବଙ୍କର ଚଣ୍ଡୀପୁରାଣ ସମ୍ପାଦନା ଓ ସମୀକ୍ଷା, ଭକ୍ତ ଚରଣ ଓ ମଥୁରାମଙ୍ଗଳ, ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଓ ଘର ସଂସାର ଏବଂ ଅଭିମନ୍ୟୁଙ୍କ ସୁଲକ୍ଷଣା ସମ୍ପାଦନା ଓ ସମୀକ୍ଷା ଆଦି ଗ୍ରନ୍ଥ ତାଙ୍କ ବଳିଷ୍ଠ ସମ୍ପାଦନା କୌଶଳର ପରିଚୟ ପ୍ରଦାନ କରେ ।

ଭାଷା ବିଜ୍ଞାନ କ୍ଷେତ୍ରରେ ବାସୁଦେବଙ୍କ ଭୂମିକାକୁ ଅସ୍ୱୀକାର କରିବାର ନୁହେଁ । ଏହି ବିଷୟରେ ସେ ତାଙ୍କ ପି.ଏଚ୍‌ଡ଼ି ଉପାଧି ଲାଭ କରିବା ସଂଗେସଂଗେ ପରବର୍ତ୍ତୀ ପର୍ଯ୍ୟାୟରେ ଭାଷା ବିଜ୍ଞାନର ରୂପରେଖ, ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ, ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା, ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ ଏବଂ ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ ଆଦି ଗ୍ରନ୍ଥ ରଚନା କରି ଏ ବିଭାଗରେ ତାଙ୍କର ବିଦ୍‌ବତ୍ତା ପ୍ରତିପାଦନ କରିଛନ୍ତି । ବଳିଷ୍ଠ ସାହିତ୍ୟ ସୃଷ୍ଟି ପାଇଁ ଭାଷା ସଂପର୍କିତ ଜ୍ଞାନ ଏକାନ୍ତ ଅପରିହାର୍ଯ୍ୟ । ବିଶେଷକରି ସାରସ୍ୱତ ସୃଷ୍ଟିର ନିର୍ଭୁଲ ପରିପ୍ରକାଶ ପାଇଁ ଏହି ଭାଷାଲୋଚନାର ଉପାଦେୟତାକୁ ଅସ୍ୱୀକାର କରାଯାଇ ନପାରେ । ଡକ୍ଟର ସାହୁଙ୍କ ପୂର୍ବରୁ ଯଦିଓ କେତେକ ଓଡ଼ିଆ ବିଦ୍ୱାନ୍ ଭାଷା ତତ୍ତ୍ୱରେ ନିପୁଣ ଥିଲେ ତଥାପି ଭାଷା ସଂପର୍କିତ ବ୍ୟବସ୍ଥିତ ଗ୍ରନ୍ଥ ବିଶେଷ କରି ସ୍ନାତକୋତ୍ତର ଓ ଉଚ୍ଚତର ଗବେଷଣା ପାଇଁ ଆବଶ୍ୟକୀୟ ଭାଷାତତ୍ତ୍ୱ ଭିତ୍ତିକ ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ପ୍ରାୟତଃ ରଚିତ ହୋଇନଥିଲା । ଏହି ଅଭାବର ପରିପୂରଣ ପାଇଁ ପ୍ରଫେସର ସାହୁ

'ଭାଷାବିଜ୍ଞାନର ରୂପରେଖ' ଗ୍ରନ୍ଥ ରଚନା କରିଥିଲେ । ଭାଷାବିଜ୍ଞାନର ସାଧାରଣ ନିୟମାବଳୀକୁ ଛାତ୍ରଛାତ୍ରୀ ତଥା ଆଗ୍ରହୀ ଅନୁସନ୍ଧିତ୍ସୁଙ୍କୁ ଅବଗତ କରାଇବା ପାଇଁ ସେ 'ଭାଷା ବିଜ୍ଞାନର ରୂପରେଖ' ଗ୍ରନ୍ଥ ରଚନା କରିଥିଲେ । ଏହି ଗ୍ରନ୍ଥରେ ସେ ଭାଷାର ସଂଜ୍ଞା ଓ ସ୍ୱରୂପ ସଂପର୍କରେ ଆଲୋଚନା କରି ପରବର୍ତ୍ତୀ ପର୍ଯ୍ୟାୟରେ ଭାଷାର ଉତ୍ପତ୍ତି ସମ୍ପର୍କୀୟ ବିଭିନ୍ନ ସିଦ୍ଧାନ୍ତ ଉପରେ ଆଲୋଚନା କରିଛନ୍ତି । ଧ୍ୱନିବିଜ୍ଞାନର ଆଲୋଚନା କରି ବାସୁଦେବ ଏହାର ସଂଜ୍ଞା, ସ୍ୱରୂପ ଏବଂ ବର୍ଗୀକରଣର ବ୍ୟବସ୍ଥିତ ଆଲୋଚନା ଏ ଗ୍ରନ୍ଥରେ କରିଛନ୍ତି । ରୂପ ବିଜ୍ଞାନ, ଅର୍ଥବିଜ୍ଞାନ, ବାକ୍ୟ ବିଜ୍ଞାନ ଆଦି ସଂପର୍କରେ ସଂକ୍ଷିପ୍ତ ଆଲୋଚନା କରି ସେ ଶେଷରେ ଭାଷା ବିଜ୍ଞାନ ଅଧ୍ୟୟନର ଇତିହାସ ଉପରେ ଆଲୋକପାତ କରିଛନ୍ତି । ଭାଷା ସଂପର୍କିତ ଆଲୋଚନାର ଦ୍ୱିତୀୟ ଦିଗଟି ବାସୁଦେବଙ୍କ 'ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା' ଗ୍ରନ୍ଥରେ ଉପଲବ୍ଧ ହୁଏ । ଏଥିରେ ସେ ଆକୃତି ଓ ବଂଶଲତା ଦୃଷ୍ଟିରୁ ପୃଥିବୀର ମୁଖ୍ୟ ଭାଷାମାନଙ୍କର ଅଧ୍ୟୟନ କରିଛନ୍ତି । 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ' ଗ୍ରନ୍ଥରେ ଓଡ଼ିଆ ଭାଷା ସୃଷ୍ଟିର ପୃଷ୍ଠଭୂମି, ପରମ୍ପରା, ପ୍ରବାହ ଓ ଓଡ଼ିଆ ଭାଷାର ବ୍ୟାକରଣ ସମ୍ପର୍କରେ ଆଲୋଚନା କରାଯାଇଛି । 'ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ'ରେ ବିଭିନ୍ନ ଓଡ଼ିଆ ଶବ୍ଦମାନଙ୍କର ସୃଷ୍ଟିର ଇତିହାସ ସମ୍ପର୍କରେ ବୈଜ୍ଞାନିକ ଦୃଷ୍ଟିକୋଣରୁ ଆଲୋଚନା କରାଯାଇଛି । ବାସୁଦେବଙ୍କ ଭାଷାବିଜ୍ଞାନ ସଂପର୍କିତ ପ୍ରତିଟି ଗ୍ରନ୍ଥ ପ୍ରାୟତଃ ଛାତ୍ରଛାତ୍ରୀ ତଥା ଗବେଷକମାନଙ୍କ ପାଇଁ ଉଦ୍ଦିଷ୍ଟ । ନିଜେ ଜଣେ ନିଷ୍ଠାପର ଶିକ୍ଷକ ଥିବାରୁ ଛାତ୍ରଛାତ୍ରୀଙ୍କ ଅଭାବ ଅସୁବିଧାକୁ ଆଖି ଆଗରେ ରଖି ସେ ଏ ଗ୍ରନ୍ଥ ରଚନା କରିଥିଲେ । ଓଡ଼ିଆ ଭାଷା ବିଜ୍ଞାନର ଆଲୋଚକମାନଙ୍କ ମଧ୍ୟରେ ପ୍ରଫେସର ସାହୁ ଏକ ଅମ୍ଳାନ କୀର୍ତ୍ତିସ୍ତମ୍ଭ ହୋଇ ଚିରକାଳ ବିଦ୍ୟମାନ ରହିବେ । ଏଥିରେ ସନ୍ଦେହର ଅବକାଶ ନାହିଁ ।

ଭାଷା ବିଜ୍ଞାନ ପରି ଓଡ଼ିଆ ବ୍ୟାକରଣ ରଚନା କ୍ଷେତ୍ରରେ ବାସୁଦେବ ମଧ୍ୟ କୁଣ୍ଠା ପ୍ରଦର୍ଶନ କରିନଥିଲେ । ତାଙ୍କର 'ଓଡ଼ିଆ ବ୍ୟାକରଣର ପରମ୍ପରା' ଏବଂ 'ଓଡ଼ିଆ ଭାଷା ଶୁଦ୍ଧିପୁତ୍ର' ଓଡ଼ିଆ ବ୍ୟାକରଣକୁ ମହାର୍ଘ୍ୟ ଅବଦାନ । ଓଡ଼ିଆରେ ବ୍ୟାକରଣ ରଚନା ଖୁବ୍ କମ୍ । ପଣ୍ଡିତ ଗୋପୀନାଥ ନନ୍ଦଙ୍କଠାରୁ ଆରମ୍ଭ ହୋଇଥିବା ଏହି ପରମ୍ପରା ମୁଖ୍ୟତଃ ସଂସ୍କୃତ ବ୍ୟାକରଣର ଭିତ୍ତି ପ୍ରସ୍ତର ଉପରେ ପ୍ରତିଷ୍ଠିତ । ଓଡ଼ିଆ ଭାଷାଚର୍ଚ୍ଚାର ପରମ୍ପରା ଯାହା ପ୍ରଥମେ ବ୍ୟାକରଣ ଓ ଅଭିଧାନ ମାଧ୍ୟମରେ ଆରମ୍ଭ ହୋଇଥିଲା ତାହା ମୁଖ୍ୟତଃ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ଶେଷଦଶକରୁ ହିଁ ଆତ୍ମପ୍ରକାଶ କରିଥିଲେ । ୧୮୪୩ ଖ୍ରୀ.ରେ ପ୍ରଥମ କରି ଆମ୍‌ସଟନ୍ ଏବଂ ଭୁବନାନନ୍ଦ ନ୍ୟାୟାଳଙ୍କାର 'ଉତ୍କଳ ଭାଷାର୍ଥଭିଧାନ' ନାମକ ଏକ ଅଭିଧାନ ଗ୍ରନ୍ଥ ରଚନା କରିଥିଲା । ଏହା ଥିଲା ୨୯୫ ପୃଷ୍ଠାବିଶିଷ୍ଟ ଏବଂ ଏଥିରେ ମୋଟ ୧୭ଟି ଶବ୍ଦ ଉପରେ ଆଲୋଚନା କରାଯାଇଥିଲା । ଏହାପରେ ବ୍ୟାକରଣ ଗ୍ରନ୍ଥ ସବୁ ରଚିତ ହେବାକୁ ଗଲେ । ବ୍ୟାକରଣ ରଚନାର ପୃଷ୍ଠଭୂମି ଭାବେ ଚାରିଗୋଟି

ଉପାଦାନକୁ ଗ୍ରହଣ କରାଯାଇପାରେ । ପ୍ରଥମତଃ ଓଡ଼ିଆ ସ୍କୁଲଗୁଡ଼ିକୁ ଆଖି ଆଗରେ ରଖି ଏହି ବ୍ୟାକରଣ ଗ୍ରନ୍ଥ ରଚିତ ହୋଇଥିଲା । ଦ୍ୱିତୀୟତଃ କିଛି ପରିମାଣରେ ଏହି ଗ୍ରନ୍ଥଗୁଡ଼ିକୁ ସରକାରୀ ପୃଷ୍ଠପୋଷକତା ଅଥବା ଆର୍ଥିକ ସହାୟତା ମିଳୁଥିଲା । ତୃତୀୟତଃ ଏହି ଗ୍ରନ୍ଥମାନରେ ମୁଦ୍ରଣ ପାଇଁ କଲିକତାର ବାପ୍‌ଟିଷ୍ଟ ମିଶନ୍ ପ୍ରେସ୍ ଏବଂ କଟକର ଓଡ଼ିଶା ମିଶନ୍ ପ୍ରେସ୍ ହୋଇସାରିଥିଲା । ଚତୁର୍ଥତଃ ସ୍କୁଲ ବୁକ୍ ସୋସାଇଟି ଭଳି ଅନୁଷ୍ଠାନ ଦ୍ୱାରା ଏହି ପୁସ୍ତକର ପ୍ରସାର ହେଉଥିଲା । ବାସୁଦେବଙ୍କର 'ଓଡ଼ିଆ ବ୍ୟାକରଣର ପରମ୍ପରା' ଓଡ଼ିଆ ବ୍ୟାକରଣ ରଚନାର ଇତିହାସ ସମ୍ପର୍କରେ ଆଲୋକପାତ କରିବା ସଂଗେସଂଗେ ଓଡ଼ିଆ ଶବ୍ଦତତ୍ତ୍ୱର ବିଭିନ୍ନ ଦିଗକୁ ବିଶ୍ଳେଷଣ କରିବାରେ ମୁଖ୍ୟଭୂମିକା ଗ୍ରହଣ କରିଛି ।

ସାହିତ୍ୟ ତତ୍ତ୍ୱ ସମ୍ପର୍କିତ ପୁସ୍ତକଭାବରେ ଡଃ ବାସୁଦେବ ସାହୁଙ୍କର 'ଅଳଙ୍କାର ତତ୍ତ୍ୱ' ଗ୍ରନ୍ଥକୁ ଗ୍ରହଣ କରାଯାଇପାରେ । କାବ୍ୟର ଶୋଭାକାରକ ଧର୍ମକୁ ଅଳକାଂର ବୋଲି କୁହାଯାଏ । ଅଳଙ୍କାର ବ୍ୟତୀତ କାବ୍ୟର ଶ୍ରୀବୃଦ୍ଧି ହୋଇପାରେ ନାହିଁ । ପ୍ରାଚୀନ ତଥା ମଧ୍ୟକାଳୀନ କାବ୍ୟ କବିତାରେ ଏହି ଅଳଙ୍କାରର ସ୍ଥାନ ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ସଂସ୍କୃତ ସାହିତ୍ୟରେ ଅନେକ ଅଳଙ୍କାର ଗ୍ରନ୍ଥ ରଚିତ ହୋଇ କାବ୍ୟଶାସ୍ତ୍ର ପରମ୍ପରାର ସୁଦୃଢ଼ ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଛି । ମଧ୍ୟକାଳୀନ ଓଡ଼ିଆ କାବ୍ୟ ମୁଖ୍ୟତଃ ଅଳଙ୍କାର ସର୍ବସ୍ୱ । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ କାବ୍ୟରସିକ ତଥା ସହୃଦୟମାନଙ୍କର ସଂଜ୍ଞା ନିରୂପଣ କରିବାକୁ ଯାଇ କହିଥିଲେ-''ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ/ଯେହୁ ଜାଣେ ଅଳଙ୍କାର ଲକ୍ଷଣ' । ଶବ୍ଦ ଓ ଅର୍ଥାଳଙ୍କାର ଭେଦରେ ଏହା ଦ୍ୱିବିଧ । ବାସୁଦେବଙ୍କ 'ଅଳଙ୍କାର ତତ୍ତ୍ୱ' ଗ୍ରନ୍ଥରେ ଓଡ଼ିଆ ସାହିତ୍ୟରେ ଅଳଙ୍କାରର ପ୍ରୟୋଜନୀୟତା, ଅଳଙ୍କାରର ସଂଜ୍ଞା, ସ୍ୱରୂପ ଓ ପ୍ରକାରଭେଦ ସଂପର୍କରେ ପ୍ରସଙ୍ଗୋଗଯୋଗୀ ଆଲୋଚନା କରାଯାଇଛି । ବିଶେଷ କରି ଉପାଧି ଓ ଉପାଧ୍ୟୁତର ସାହିତ୍ୟ ଛାତ୍ରଛାତ୍ରୀଙ୍କ ପାଇଁ ଏହି ଗ୍ରନ୍ଥଟି ଅତ୍ୟନ୍ତ ଉପାଦେୟ, ଏଥିରେ ଦ୍ୱିରୁକ୍ତି ହେବାର ଅବକାଶ ନାହିଁ ।

ସାହିତ୍ୟକୃତିର ଆଲୋଚନାକୁ ଭିତ୍ତି କରି ଡଃ ବାସୁଦେବ ସାହୁଙ୍କର ସାହିତ୍ୟିକ ଦିଗ୍‌ଦର୍ଶନ, ଆଧୁନିକ ସାହିତ୍ୟିକ ଭାଷ୍ୟ, ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ, ଓଡ଼ିଆ ସାହିତ୍ୟର ସୃଷ୍ଟି ସମ୍ପଦ ଏବଂ ଓଡ଼ିଆ ସାହିତ୍ୟରେ ଧର୍ମୀୟ ପରମ୍ପରା ଆଦି ଗ୍ରନ୍ଥକୁ ଗ୍ରହଣ କରାଯାଇପାରେ । ଓଡ଼ିଆ ସାହିତ୍ୟର ଅଧ୍ୟାପକଭାବେ ସାହିତ୍ୟର ବିଭିନ୍ନ ପ୍ରସ୍ଥକୁ ସମୟକ୍ରମେ ବାସୁଦେବ ସ୍ପର୍ଶ କରିଛନ୍ତି । ଫଳରେ ପ୍ରାଚୀନଠାରୁ ମଧ୍ୟକାଳୀନ ଏବଂ ଆଧୁନିକ ସବୁ ବିଭାଗକୁ ତାଙ୍କୁ ଅଧ୍ୟୟନ କରିବାକୁ ପଡ଼ିଛି । ସାହିତ୍ୟର ବିଭିନ୍ନ ବିଭାଗ ଯଥା-ପ୍ରବନ୍ଧ, କବିତା, ନାଟକ, ରମ୍ୟରଚନା, ଉପନ୍ୟାସ ଏସବୁକୁ ଉଣାଅଧିକେ ସେ ଅଧ୍ୟୟନ କରିଛନ୍ତି । ତାଙ୍କ 'ସାହିତ୍ୟିକ ଦିଗ୍‌ଦର୍ଶନ' ହେଉ ଅଥବା 'ଓଡ଼ିଆ ସାହିତ୍ୟର ସୃଷ୍ଟିସଂପଦ ହେଉ ସବୁଥିରେ ପ୍ରାଚୀନ କାଳଠାରୁ ଆରମ୍ଭ କରି ଆଧୁନିକ କାଳ, ପଦ୍ୟଠାରୁ ଆରମ୍ଭ କରି ଗଦ୍ୟର ବିଭିନ୍ନ ବିଭାଗ ତଥା ଉପବିଭାଗ ଉପରେ ସେ ଲେଖନୀ ଚାଳନା କରିଛନ୍ତି ।' 'ଓଡ଼ିଆ ସାହିତ୍ୟର

ସୃଷ୍ଟି ସମ୍ପଦ' (୧୯୭୫)ରେ ମୋଟ ସାତଗୋଟି ପ୍ରବନ୍ଧ ସନ୍ନିବେଶିତ । ଏଥିମଧ୍ୟରୁ ଗୋଟିଏ ପ୍ରାଚୀନ ସାହିତ୍ୟ ଉପରେ ଆଧାରିତ ହୋଇଥିବାବେଳେ, ଦୁଇଟି ମଧ୍ୟକାଳୀନ ସାହିତ୍ୟ ଉପରେ ଆଧାରିତ । ତିନୋଟି ଆଧୁନିକ କାଳର ସାହିତ୍ୟ ଉପରେ ଆଧାରିତ ଏବଂ ଏହି ତିନୋଟି ପ୍ରବଂଧରେ କବିତା (ପାଣ୍ଡୁଲିପି) ରମ୍ୟରଚନା (ଭାଗବତ ଟୁଙ୍ଗୀରେ ସନ୍ଧ୍ୟା) ଓ ଉପନ୍ୟାସ (କଣା ମାମୁ) ଉପରେ ଆଲୋକପାତ କରାଯାଇଛି ।

ପ୍ରଥମ ପ୍ରବନ୍ଧଟି ପ୍ରାଚୀନ କବିତା କଳସା ଚଉତିଶାକୁ ଭିତ୍ତିକରି । ଶୀର୍ଷକ 'କଳସା ଚଉତିଶାର କାଳ ଓ କଳା : ଏକ କଳନା' । ପ୍ରଥମତଃ ପ୍ରାବନ୍ଧିକ ବାସୁଦେବ ପ୍ରମାଣ କରିବାକୁ ଚାହିଛନ୍ତି ଯେ ଏହି 'ଚଉତିଶା' ରଚନାକୁ ଚଉତିଶା ବୋଲି ନାମିତ କରିବା କେତେଦୂର ଯୁକ୍ତିଯୁକ୍ତ । ଙ, ଞ ଏ ବଂଶ ଅକ୍ଷର ପାଇଁ ଅକ୍ଷର ବ୍ୟବହୃତ ହୋଇଥିବାରୁ ଏବଂ 'ବ' ଓ 'ଓ୍ୱ' ପାଇଁ କେବଳ 'ବ' ଅକ୍ଷର ବ୍ୟବହୃତ ହୋଇଥିବାରୁ ଏହାକୁ ଚଉତିଶା ନାମରେ 'ତିରିଶା' କହିବାକୁ ସେ ଯୁକ୍ତି ବାଢ଼ିଛନ୍ତି । କଳସା ଚଉତିଶାର କାଳ କଳନା କରିବାକୁ ଯାଇ ଡଃ ବାସୁଦେବ ସାହୁ ଏହାକୁ ସାରଳାଙ୍କ ପୂର୍ବବର୍ତ୍ତୀ ବୋଲି ଗ୍ରହଣ କରିପାରି ନାହାନ୍ତି । ଅତୀତରେ କଳସାର କାଳକଳନାକୁ ଭିତ୍ତି କରି ସୃଷ୍ଟି ହୋଇଥିବା ସକାଳ ବିବାଦକୁ ଆଲୋଚନା କରି ସେ ଶେଷରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ସେ ଯେ ଏହା ସାରଳା ଓ ପଞ୍ଚସଖାଙ୍କ ମଧ୍ୟବର୍ତ୍ତୀ କାଳୀନ ରଚନା । ସାରଳା ଯଦିଓ 'ବେଦ ମନ୍ତ୍ର ଯୁଗତେ ସେ ପଢ଼ନ୍ତି କଳଦ୍ୱା' ବୋଲି ମହାଭାରତରେ ଲେଖିଛନ୍ତି, ମାତ୍ର ଏ କଳସା ବଚ୍ଛାଦାସଙ୍କ କଳସା ଚଉତିଶା ନୁହେଁ । ଏହା ବେଦପରି ଏକ ପବିତ୍ର ରଚନା ବା ଅଂଶ ବିଶେଷ । କଳସା ଚଉତିଶାର ସାହିତ୍ୟିକ ମୂଲ୍ୟ ନିରୂପଣ କରିବା ଅବସରରେ ପ୍ରଫେସର ବାସୁଦେବ ସାହୁ କନ୍ନଡ଼, ମୈଥିଳି, ଆସାମୀ ତଥା ହିନ୍ଦୀ ସାହିତ୍ୟର ପ୍ରାଚୀନ କାବ୍ୟ କବିତାରୁ ଶିବ ପାର୍ବତୀଙ୍କ ପ୍ରସଙ୍ଗରେ ଲୌକିକତାର ପ୍ରୟୋଗ ଉପରେ ଏକ ତୁଳନାତ୍ମକ ଆଲୋଚନା କରିଛନ୍ତି । ଓଡ଼ିଆ ଲୋକ ଗୀତରେ ଈଶ୍ୱର ପାର୍ବତୀକୁ ନେଇ ସୃଷ୍ଟି ହୋଇଥିବା କୌତୁକ ମାଧ୍ୟମରେ ଏହି ଚଉତିଶା ଯେ ଲୋକ ପରମ୍ପରା ଉପରେ ପ୍ରତିଷ୍ଠିତ ଏହାକୁ ପ୍ରତିପାଦନ କରିବାକୁ ପ୍ରୟାସ କରିଛନ୍ତି ବାସୁଦେବ । ସାରଳା ମହାଭାରତରେ ବନ ପର୍ବର ହିମବନ୍ତ ରାଜାଙ୍କ ପୁଅ ଚକ୍ରଧ୍ୱଜ ଓ ଶିବଙ୍କ ପୁଅ କାର୍ତ୍ତିକେୟଙ୍କ କଳହରୁ ଏହି ଚଉତିଶାର କଥାବସ୍ତୁ ବଚ୍ଛାଦାସଙ୍କ ଦ୍ୱାରା ପରବର୍ତ୍ତୀ ପର୍ଯ୍ୟାୟରେ ପଲ୍ଲବିତ ହୋଇଥିବ ବୋଲି ପ୍ରାବନ୍ଧିକ ବିଶ୍ୱାସ କରିଛନ୍ତି ।

ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ଆଲୋଚନା ସମ୍ବନ୍ଧୀ ପ୍ରବନ୍ଧଭାବେ 'ଭଞ୍ଜଙ୍କ ରସାଳ ଲେଖନୀରୁ ରସଲେଖା' ଓ 'ବ୍ରଜନାଥଙ୍କ ସାହିତ୍ୟରେ ପରମ୍ପରା ଓ ପୁରୋଦୃଷ୍ଟି' କୁ ଗ୍ରହଣ କରାଯାଇପାରେ । ପ୍ରଥମ ପ୍ରବନ୍ଧଟି ଏକ ନିର୍ଦ୍ଦିଷ୍ଟ କବି (ଉପେନ୍ଦ୍ର ଭଞ୍ଜ)ଙ୍କ ଏକ ନିର୍ଦ୍ଦିଷ୍ଟ କାବ୍ୟ (ରସଲେଖା) ଉପରେ ପ୍ରାୟୋଗିକ ଆଲୋଚନା ହୋଇଥିବା ବେଳେ ଅନ୍ୟ ପ୍ରବନ୍ଧଟି ଏକ ନିର୍ଦ୍ଦିଷ୍ଟ କବି (ବ୍ରଜନାଥ ବଡ଼ଜେନାଙ୍କ ସାମଗ୍ରିକ କାବ୍ୟକୃତି ଉପରେ ଆଲୋକପାତ





କରାଯାଇଛି । 'ରସଲେଖା' ଉପେନ୍ଦ୍ରଙ୍କର ଏକ କ୍ଷୁଦ୍ର ରଚନା । ବୈଦେହୀଶ ବିଳାସ, କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ ଅଥବା ଲାବଣ୍ୟବତୀ ପରି ଏହାର କଳେବର ଏତେ ଦୀର୍ଘ ନୁହେଁ ଏବଂ ଏତେ ଏ କାବ୍ୟମାନଙ୍କ ସହ ପ୍ରସିଦ୍ଧ ମଧ ନୁହେଁ । ତଥାପି ଭଞ୍ଜଙ୍କ କାବ୍ୟକୌଶଳର ଅପୂର୍ବ ଛଟାରେ 'ରସକଳା' କିପରି ଅପୂର୍ବ ଲାବଣ୍ୟମୟୀ ହୋଇଉଠିଛି, ତାହାକୁ ଏ ପ୍ରବନ୍ଧରେ ବାସୁଦେବ ପ୍ରମାଣିତ କରିଛନ୍ତି । ରସଲେଖାର ଗଳ୍ପଭାଗ ପରିକଳ୍ପନା, କାବ୍ୟରେ ନାୟକ ନାୟିକାଙ୍କ ମନସ୍ତାତ୍ତ୍ୱିକ ବିଶ୍ଳେଷଣ, କାବ୍ୟରେ ଅନେକତ୍ର ଅଲୌକିକ ଘଟଣାର ସମାବେଶ, ପାରମ୍ପରିକ ଋତୁ ବର୍ଣ୍ଣନା ମଧ୍ୟରେ ଭଞ୍ଜଙ୍କ ବୈଶିଷ୍ଟ୍ୟ, ଶବ୍ଦ ପ୍ରୟୋଗରେ ସରଳତା ତଥା ସ୍ୱଚ୍ଛତା ଆଦି ବିଭିନ୍ନ ବିଭାଗ ଉପରେ ଆଲୋଚନା କରି ପ୍ରଫେସର ବାସୁଦେବ ଏହି କାବ୍ୟର ଶ୍ରେଷ୍ଠତ୍ୱ ଏ ପ୍ରବନ୍ଧରେ ପ୍ରତିପାଦନ କରିଛନ୍ତି । ଅନ୍ୟପକ୍ଷରେ 'ବ୍ରଜନାଥଙ୍କ ସାହିତ୍ୟରେ ପରମ୍ପରା ଓ ପୁରୋଦୃଷ୍ଟି' ପ୍ରବନ୍ଧରେ ବ୍ରଜନାଥଙ୍କ ସାମଗ୍ରିକ କାବ୍ୟକୃତିର ଏକ ବିହଙ୍ଗାବଲୋକନ ମାଧ୍ୟମରେ ଏଥିରେ ପ୍ରତିଫଳିତ ହୋଇଥିବା ସାହିତ୍ୟିକ ପରମ୍ପରା ଏବଂ ବ୍ରଜନାଥଙ୍କ କାଳୋତ୍ତୀର୍ଣ୍ଣ ଉନ୍ନତ କାବ୍ୟ ମାନସର ଚିତ୍ର ପ୍ରଦାନ କରାଯାଇଛି । କୋଟି କଳାନିଧି, ଶ୍ୟାମରାସୋତ୍ସବ, ଅମ୍ବିକା ବିଳାସ ଓ ବିଚକ୍ଷଣା ଆଦି କାବ୍ୟରେ ବ୍ରଜନାଥ କିପରି ବ୍ରଜନାଥଙ୍କ କାବ୍ୟ ପରମ୍ପରାକୁ ଗ୍ରହଣ କରି ନିଜ କାବ୍ୟ ସୌଧ ନିର୍ମାଣ କରିଛନ୍ତି ସେ ବିଷୟରେ ଉକ୍ତ ପ୍ରବନ୍ଧରେ ସର୍ବଶେଷ ବର୍ଣ୍ଣନା କରାଯାଇଛି । ଏ ପ୍ରସଙ୍ଗରେ କେଳି କଳାନିଧି କିପରି ପ୍ରେମ ସୁଧାନିଧିର ଅନୁସରଣ ପ୍ରଫେସର ବାସୁଦେବ ଆପଣାର ସରସ ବର୍ଣ୍ଣ ବିନ୍ୟାସରେ ଏହିପରି କହନ୍ତି, ''କେବଳ ନାମରେ, କଳାରେ, କୌଶଳରେ, ଶ୍ରୀରେ, ସଂଭୂଷଣରେ, ଛନ୍ଦରେ. ଭାବରେ, ଭାବରେ ସାମ୍ୟ ନେଇ ନୁହେଁ, କେଳିକଳାନିଧି ଜନ୍ମ ନେଇଛି ପ୍ରେମସୁଧା ନିଧିର ଆତ୍ମା ପରି ଏ କେଳିର କଳାନିଧି, ସେ ପ୍ରେମର ସୁଧାନିଧି । ଉଭୟ ଷୋହଳ କଳାରେ ଏକ ଏକ ପୂର୍ଣ୍ଣଚନ୍ଦ୍ର ।'' (ସାହୁ : ଓଡ଼ିଆ ସାହିତ୍ୟର ସୃଷ୍ଟି ସମ୍ପଦ , ପୃ-୫୫) । କେବଳ ପରମ୍ପରା ନୁହେଁ ବ୍ରଜନାଥଙ୍କ କାବ୍ୟରେ ପ୍ରତିଫଳିତ 'ପୁରୋଦୃଷ୍ଟି' କୁ ବାସୁଦେବ 'ନୂତନର ପଦଧ୍ୱନି' ଶୀର୍ଷକରେ ଆଲୋଚନା କରିଛନ୍ତି । ବ୍ରଜନାଥ 'ଗୋପୀ ବିଳାପ' କିପରି ନିଗଡ଼ ରୀତି ପରମ୍ପରାରୁ ଓଡ଼ିଆ କାବ୍ୟକୁ ମୁକ୍ତ କରି ନୂତନ ଏକ ମାର୍ଗ ଦର୍ଶନ କରାଇଛି ତାର ସଦୃଷ୍ଟାନ୍ତ ପ୍ରମାଣ ପ୍ରଦାନ କରିଛନ୍ତି ପ୍ରଫେସର ବାସୁଦେବ । 'ସମର ତରଙ୍ଗ' ମାଧ୍ୟମରେ ବ୍ରଜନାଥ କିପରି ପରମ୍ପରାକୁ ଅତିକ୍ରମଣ କରି ନୂତନ ଏକ ମାର୍ଗ ଓଡ଼ିଆ ସାହିତ୍ୟକୁ ପ୍ରଦାନ କରିଛନ୍ତି ତାର ପ୍ରମାଣ ମଧ ସେ ଦେଇଛନ୍ତି । ତୃତୀୟତଃ କାବ୍ୟରେ ମଧୁର ହାସ୍ୟ ତଥା ବ୍ୟଙ୍ଗର ପ୍ରୟୋଗ ମଧ ବ୍ରଜନାଥଙ୍କ ସମୟରେ ଅନୁଭୂତ ହୋଇଥିଲା । ଅବଶ୍ୟ ଦୀନକୃଷ୍ଣଙ୍କ ରସକଲ୍ଲୋଳରେ ଏହାର ଉପସ୍ଥିତି ଦେଖିବାକୁ ମିଳେ । ମାତ୍ର ବ୍ରଜନାଥଙ୍କ କାବ୍ୟରେ ପ୍ରତିଫଳିତ ହାସ୍ୟ ଓ ବ୍ୟଙ୍ଗପରି ନୂତନତ୍ୱର ସଂଯୋଜନାରେ ନୈପୁଣ୍ୟ ପ୍ରଦର୍ଶନ କରିଛନ୍ତି । ସାହିତ୍ୟରେ କେଳବ ନିରୁତା ସଂସ୍କୃତ ତଥା ଓଡ଼ିଆ ଭାଷାର ପ୍ରୟୋଗ ନକରି ବ୍ରଜନାଥ 'ଦ୍ୱାଦଶ ଭାଷା ବିଳାସିନୀ ଭୁଜଙ୍ଗ' ପରି

ଏକାଧିକ ଭାଷା ବିଶେଷ କରି ବିଦେଶୀ ଭାଷାର ପ୍ରୟୋଗରେ ଆପଣାର ଯେଉଁ କଳାକୁଶଳତା ପ୍ରଦର୍ଶନ କରିଛନ୍ତି ତାହାକୁ ତାଙ୍କର ଏକ ବିଶେଷ ନୂତନତ୍ୱର ଅନୁବର୍ତ୍ତକ ଦିଗ ବୋଲି ଗ୍ରହଣ କରିଛନ୍ତି ସେ । ବ୍ରଜନାଥଙ୍କ କାବ୍ୟପ୍ରତିଭାର ବିଲକ୍ଷଣତା ପ୍ରଦର୍ଶନ କରିବା ଏହି ପ୍ରବନ୍ଧର ମୂଳ ଉଦ୍ଦେଶ୍ୟ । ପରମ୍ପରା ସହିତ ବ୍ରଜନାଥଙ୍କ ପୁରୋଦୃଷ୍ଟି କିପରି ତାଙ୍କ କାବ୍ୟରେ ମହାମିଳନ ଘଟିଛି, ଏହା ଏହି ପ୍ରବନ୍ଧରେ ପ୍ରତିପାଦିତ ହୋଇଛି ।

ଆଧୁନିକ ସାହିତ୍ୟର କବିତା, ରମ୍ୟରଚନା ଓ ଉପନ୍ୟାସ ଏ ତିନୋଟି ବିଭାଗ ଉପରେ ଆଧାରିତ ବାସୁଦେବଙ୍କ ତିନୋଟି ପ୍ରବନ୍ଧ ତାଙ୍କ ଅଧ୍ୟୟନର ବ୍ୟାପ୍ତି ଓ ବିଭୂତିର ପରିଚୟ ଦିଏ । ଆଧୁନିକ ଓଡ଼ିଆ କବିତାକୁ ନେଇ ତାଙ୍କ ପ୍ରବଂଧଟି ହେଉଛି 'ପାଣ୍ଡୁଲିପିରେ ସମୟର ସ୍ପନ୍ଦନ' । ସଚ୍ଚି ରାଉତରାୟଙ୍କ 'ପାଣ୍ଡୁଲିପି' ଯେଉଁ ସମୟର ଚିନ୍ତା ସଂଘର୍ଷରୁ ସୃଷ୍ଟ ତାର ବିଶଦ ବର୍ଣ୍ଣନା କରିସାରିବା ପରେ ବାସୁଦେବ ତତ୍କାଳୀନ ସମୟର ପରିବର୍ତ୍ତନକାମୀ ରୁଦ୍ରରୂପ ଯାହା 'ଝଡ଼' ଭାବେ ସଚ୍ଚି ରାଉତରାୟଙ୍କ ଲେଖନୀରେ ଚିତ୍ରିତ ତାର ବର୍ଣ୍ଣନା ପ୍ରଦାନ କରିଛନ୍ତି । ଏକପକ୍ଷରେ ଉଦର କ୍ଷୁଧା ଅନ୍ୟପକ୍ଷରେ ଏକ ଅସମଞ୍ଜସ ସାମାଜିକ ସ୍ଥିତି ସେଇ ଦୋଛକି ମଧ୍ୟରେ ସନ୍ତାପିତ କବି ଚିତ୍ତ କିପରି ସର୍ବହରା ଖଟିଖିଆ ମଣିଷର ସ୍ୱାର୍ଥକୁ ଜଗି ଆସିଛି ତାର ସପ୍ରମାଣ ଉପସ୍ଥାପନ କରିଛନ୍ତି । ସାଧାରଣ ଜନତା ପ୍ରତି କବିଙ୍କ ଦରଦ ତଥା ରମ୍ୟ କଳାନୁହେଁ ମଣିଷକୁ ଚିହ୍ନିବାର ପ୍ରବଣତା କିପରି ପାଣ୍ଡୁଲିପିର ପ୍ରତିଟି କବିତାକୁ କାଳୋତ୍ତୀର୍ଣ୍ଣ କରିପାରିଛି । ଏହା ବାସୁଦେବ ଅତ୍ୟନ୍ତ ପରିଚ୍ଛନ୍ନ ଭାବେ ପ୍ରତିପାଦନ କରିଛନ୍ତି । ଓଡ଼ିଆ ରମ୍ୟ ରଚନାକୁ ନେଇ ତାଙ୍କ ପ୍ରବନ୍ଧ 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା : ଏକ ଅଧ୍ୟୟନ' । ଓଡ଼ିଆ ରମ୍ୟରଚନାର ସଂକ୍ଷିପ୍ତ ପରିଚୟ ଦେବା ସଂଗେସଂଗେ ଗୋପାଳ ପ୍ରହରାଜଙ୍କ ରମ୍ୟରଚନା 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା'ର ସବିଶେଷ ଆଲୋଚନାରେ ସଫଳ ହୋଇପାରିଛି । ପ୍ରହରାଜଙ୍କ ଏହି ଗଦ୍ୟଶୈଳୀ କିପରି ଫକୀରମୋହନ ଏବଂ ପାଶ୍ଚାତ୍ୟ ଗଦ୍ୟକାର ସାର୍ ଅଲିଭର ୱେଣ୍ଡେଲ ହୋମସ୍‌ଙ୍କ ରଚନା ଦ୍ୱାରା ପ୍ରଭାବିତ ଏହା ପ୍ରତିପାଦନ କରିସାରିବା ପରେ ପ୍ରାବନ୍ଧିକ ବାସୁଦେବ ପ୍ରହରାଜଙ୍କ ଏହି ପ୍ରଥମ ରମ୍ୟରଚନାଟିକୁ ଚରିତ୍ର ଚିତ୍ରଣ, ତତ୍କାଳୀନ ସାମାଜିକ ଦୋଷ ଦୁର୍ବଳତାର ପ୍ରଦର୍ଶନ, ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ପ୍ରହରାଜଙ୍କ ଦୃଷ୍ଟିକୋଣ, ଧର୍ମ ଓ ସଂସ୍କୃତି ପ୍ରତି ତାଙ୍କର ଦୃଷ୍ଟିକୋଣ, ପ୍ରହରାଜଙ୍କ ଜାତୀୟବାଦୀ ଚେତନା, ତାଙ୍କ ଅପୂର୍ବ କବିତ୍ୱ, ଅପୂର୍ବ ହାସ୍ୟରସିକତା ଏବଂ ଗ୍ରନ୍ଥକୁ ପାଠକମାନଙ୍କର ପ୍ରିୟ କରିବାକୁ ଉତ୍କଣ୍ଠା ସୃଷ୍ଟି ଆଦି ଦୃଷ୍ଟିକୋଣରୁ ଆଲୋଚନା କରି ରମ୍ୟରଚନା କ୍ଷେତ୍ରରେ ପ୍ରହରାଜଙ୍କ ସ୍ଥାନଯେ ଅପୂରଣୀୟ ଏହା ପ୍ରତିପାଦନ କରିଛନ୍ତି । ବାସୁଦେବଙ୍କ 'କଣାମାମୁ ଏକ ଦୃଷ୍ଟିପାତ' ଓଡ଼ିଆ ଉପନ୍ୟାସ ସାହିତ୍ୟ ଆଲୋଚନାର ଏକ ବଳିଷ୍ଠ ନିଦର୍ଶନ । ପ୍ରାବନ୍ଧିକ ବାସୁଦେବଙ୍କ ବିଚାରରେ ଏହି ଉପନ୍ୟାସ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ 'ଏକ ଚିରସ୍ଥାୟୀ ମାଇଲ ସ୍ତମ୍ଭ' (ପୃ ୧୨୩) । କଣାମାମୁ ନାମକ ଏକ କାଳ୍ପନିକ ଚରିତ୍ରକୁ କେନ୍ଦ୍ର କରି ଏହାର କଥାଭାଗ

ଗତିଶୀଳ । ଏହା ଅସମ୍ପୂର୍ଣ୍ଣ ହେଲେ ମଧ୍ୟ ଲେଖକ କିପରି ଏହି ମୁଖ୍ୟ ଚରିତ୍ର ମଧ୍ୟରେ (କଣାମାମୁ) ଏକ ସଂସ୍କାରବାଦୀ ପରୋପକାରୀ ବ୍ୟକ୍ତିସତ୍ତାର ଆରୋପ କରି ଅତି ସଫଳତାର ସହ ପ୍ରାବନ୍ଧିକ ବାସୁଦେବ ଏ ପ୍ରବନ୍ଧରେ ଉପସ୍ଥାପନ କରିଛନ୍ତି । ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଶାର ସ୍ଥିତି ଏହି ଉପନ୍ୟାସରେ ଅତ୍ୟନ୍ତ କଳାତ୍ମକ ଭାବେ ରୂପ ପାଇଛି ବୋଲି ପ୍ରାବନ୍ଧିକ ଉଲ୍ଲେଖ କରିଛନ୍ତି । ଓଡ଼ିଆର ପ୍ରିୟ ଖାଦ୍ୟ ପଖାଳର ମହିମା କିପରି କଣାମାମୁଙ୍କ ବକ୍ତବ୍ୟରେ ପ୍ରକାଶିତ ହୋଇଛି ତାହା ପ୍ରକାଶ କରିବାରେ ପ୍ରାବନ୍ଧିକ ଆଗ୍ରହ ପ୍ରକାଶ କରିଛନ୍ତି । କାନ୍ତ ସାହିତ୍ୟରେ କିପରି ଜାତୀୟ ଜୀବନର ପ୍ରତିଫଳନ ଘଟିଛି ପ୍ରାବନ୍ଧିକ ଏହା ଦୃଢ଼ଭାବେ ଉପସ୍ଥାପନ କରିଛନ୍ତି ତାଙ୍କର ଅନ୍ୟଏକ ପ୍ରବନ୍ଧ 'ଓଡ଼ିଆ କବି ମାନସରେ ବସନ୍ତ' ରେ ବସନ୍ତ କୁ ନେଇ ପ୍ରାଚୀନ, ମଧ୍ୟକାଳୀନ ତଥା ଆଧୁନିକ ଯୁଗର କବିମାନଙ୍କ କାବ୍ୟମାନସର ଚମତ୍କାର ବିଶ୍ଳେଷଣ କରାଯାଇଛି ।

ପ୍ରାଚୀନ ପୁସ୍ତକର ସଂପାଦନା ତଥା ଆଧୁନିକ କାଳର ପୁସ୍ତକର ସମ୍ପାଦନା ତଥା ସମୀକ୍ଷାକ୍ଷେତ୍ରରେ ବାସୁଦେବଙ୍କ ଭୂମିକା ପ୍ରଣିଧାନଯୋଗ୍ୟ । ସାରଳା ଦାସଙ୍କ ଚଣ୍ଡୀପୁରାଣ ଏବଂ ଅଭିମନ୍ୟୁ ସାମନ୍ତସିଂହାରଙ୍କ 'ସୁଲକ୍ଷଣା' ର ସମ୍ପାଦନା ତଥା ସମୀକ୍ଷା କରିଛନ୍ତି ସେ । ଏତଦ୍ ବ୍ୟତୀତ ଭକ୍ତଚରଣ ଦାସଙ୍କ ମଥୁରା ମଙ୍ଗଳ ଉପରେ ଏକ ଆଲୋଚନା ଗ୍ରନ୍ଥ ମଧ୍ୟ ସେ ରଚନା କରିଛନ୍ତି । ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କ 'ଘର ସଂସାର' ଉପରେ ତାଙ୍କର ଆଲୋଚନା ମଧ୍ୟ ଏ କ୍ଷେତ୍ରରେ ଆଲୋଚନାର ଅପେକ୍ଷା ରଖେ । ସୁଲକ୍ଷଣା ଓ ଚଣ୍ଡୀପୁରାଣର ସମୀକ୍ଷା କରିବାବେଳେ ସେ ପ୍ରାଚୀନ ଗ୍ରନ୍ଥର ସଂପାଦନାକଳାର ସମସ୍ତ ନୀତିନିୟମକୁ ଅନୁସରଣ କରିଥିବା ପରି ଜଣାଯାଏ । ପ୍ରାଚୀନ ଓଡ଼ିଶାର ଉପାଦେୟ ସାଂସ୍କୃତିକ ଉପାଦାନ ଭାବେ ତାଳପତ୍ର ପୋଥିର ମହତ୍ତ୍ୱକୁ ଅସ୍ୱୀକାର କରାଯାଇନପାରେ । ଏହା ପ୍ରାଚୀନ ତଥା ମଧ୍ୟକାଳୀନ ଓଡ଼ିଶାର ଅସରନ୍ତି ଜ୍ଞାନକୋଷ । ଓଡ଼ିଶାର ପୁରାଣ, ସାହିତ୍ୟ, ଇତିହାସ, ଭୂଗୋଳ, ଚିତ୍ରକଳା ଏ ସବୁକିଛି ଏହି ତାଳପତ୍ର ପୋଥିରେ ଲିଖିତ ହୋଇରହିଛି । ମାତ୍ର କୀଟପତଙ୍ଗ, ଅଗ୍ନି ଏବଂ ମଣିଷର ଅବହେଳାରୁ ଏହା କ୍ରମେ କ୍ରମେ ଲୁପ୍ତ ହେବାକୁ ବସିଲାଣି । ବିଂଶ ଶତକରେ ଏହି ପ୍ରାଚୀନ ପୋଥିର ସଂରକ୍ଷଣ, ଶୁଦ୍ଧ ସମ୍ପାଦନା ତଥା ପ୍ରକାଶ କରିବା ପାଇଁ ଇଂରେଜ ବୁଦ୍ଧିଜୀବୀମାନଙ୍କ ପ୍ରେରଣାରେ ଏକ ଶିକ୍ଷିତ ଓଡ଼ିଆ ଗୋଷ୍ଠୀ ବାହାରି ପଡ଼ିଥିଲେ । ପ୍ରଫେସର ବାସୁଦେବ ସାହୁ ସେହି ପରମ୍ପରାର ପଥିକୃତ ଭାବେ ସାରଳା ଦାସଙ୍କ 'ଚଣ୍ଡୀପୁରାଣ' ଏବଂ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ 'ସୁଲକ୍ଷଣା'ର ଶୁଦ୍ଧପାଠ ତଥା ସମ୍ପାଦନା ପାଇଁ ପ୍ରୟାସ କରିଥିଲେ ଏବଂ ଏହି ପ୍ରୟାସ ଶେଷରେ ଫଳବତୀ ମଧ୍ୟ ହୋଇଥିଲା । ବାସୁଦେବ ପ୍ରଥମତଃ ଉଭୟ ଗ୍ରନ୍ଥର ଶୁଦ୍ଧପାଠ ନିରୂପଣ ପାଇଁ ଗୋଟିଏ ପ୍ରତିକୁ ମୁଖ୍ୟଗ୍ରନ୍ଥ ଭାବେ ଗ୍ରହଣ କରି ଅନ୍ୟ ପ୍ରତି (Copy) ଗୁଡ଼ିକୁ ଏହାର ସହାୟକ ଭାବେ ଗ୍ରହଣ କରିଛନ୍ତି । ଯାହା ପ୍ରାୟତଃ ପ୍ରାଚୀନ ଓ ଲେଖକଙ୍କ ଜନ୍ମସ୍ଥାନର ନିକଟବର୍ତ୍ତୀ ତାହାକୁ ସେ ପ୍ରାରମ୍ଭିକ ପ୍ରତି

(Primary copy) ବୋଲି ଗ୍ରହଣ କରିଛନ୍ତି ସଂପାଦନା କ୍ଷେତ୍ରରେ ମୁଖ୍ୟତଃ ସେ ତିନିଗୋଟି ସମସ୍ୟାକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ପ୍ରଥମତଃ ମୂଳପାଠର ପଠନ, ଦ୍ୱିତୀୟତଃ ପାଠର ପୁନର୍ଗଠନ ଓ ତୃତୀୟତଃ ଉପଯୁକ୍ତ ପାଠର ନିର୍ବାଚନ । ଚଣ୍ଡୀପୁରାଣ ତଥା ସୁଲକ୍ଷଣାର ସଂପାଦନା ତଥା ଶୁଦ୍ଧପାଠ ନିର୍ଣ୍ଣୟରେ ବାସୁଦେବଙ୍କ ଶ୍ରମ ତଥା ସାଧନାକୁ ଅସ୍ୱୀକାର କରାଯାଇନପାରେ । ମଥୁରାମଙ୍ଗଳ କାବ୍ୟ ତଥା ଘରସଂସାର ନାଟକର ଆଲୋଚନାରୁ ତାଙ୍କ ନିର୍ଦ୍ଦିଷ୍ଟ ପୁସ୍ତକ ସଂପର୍କିତ ଆଲୋଚନାର ବିଦ୍‌ବତ୍ତା ସହଜରେ ପ୍ରତିପନ୍ନ ହୋଇଥାଏ । ମୁଖ୍ୟତଃ ସଂପାଦନା ତଥା ସମୀକ୍ଷା କ୍ଷେତ୍ରରେ ବାସୁଦେବଙ୍କ ପ୍ରତିଭାକୁ ଅସ୍ୱୀକାର କରାଯାଇ ନପାରେ ।

ଗ୍ରନ୍ଥ ଆକାରରେ ସଂକଳିତ ନହୋଇ ପ୍ରାବନ୍ଧିକ ବାସୁଦେବଙ୍କର ଅନେକ ପ୍ରବନ୍ଧ ଅନେକ ପତ୍ରପତ୍ରିକା ତଥା ବିଭିନ୍ନ ସଂକଳନରେ ସ୍ଥାନିତ ହୋଇଛି ଯାହାର ଉପଯୁକ୍ତ ସଂଗ୍ରହ ତଥା ସଂପାଦନା ବଳରେ ତାଙ୍କର ଅସାମାନ୍ୟ ସାରସ୍ୱତ ପ୍ରତିଭାର ପରିଚୟ ମିଳିପାରନ୍ତା । ଉଦାହରଣ ସ୍ୱରୂପ ତାଙ୍କର ବିଭିନ୍ନ ପତ୍ରପତ୍ରିକା ତଥା ସଂକଳନରେ ପ୍ରକାଶିତ ପାଞ୍ଚଗୋଟି ପ୍ରବନ୍ଧକୁ ଆଲୋଚନାର ପରି ସରଭୁକ୍ତ କରାଯାଇପାରେ । ଏହି ପ୍ରବନ୍ଧଗୁଡ଼ିକ ହେଲେ 'ସେନାପତିଙ୍କ ସ୍ୱାଭିମାନ', 'ମଣିଷପରି ମଣିଷ', 'ଭାଷାତତ୍ତ୍ୱବିଦ୍ ପ୍ରଫେସର୍ ଗୋଲକବିହାରୀ ଧଳ;'ଓଡ଼ିଆ ଉପନ୍ୟାସରେ ସୁସ୍ଥ ସମାଜ ଗଠନର ଆହ୍ୱାନ' ଏବଂ 'ସତ୍ୟଚେତନା ତତ୍ତ୍ୱ ଜିଜ୍ଞାସା' । ଏହା ମଧ୍ୟରୁ ପ୍ରଥମ ତିନୋଟି ପ୍ରବନ୍ଧ ସାରସ୍ୱତ ବ୍ୟକ୍ତିତ୍ୱକୁ ଆଧାର କରି ରଚିତ ହୋଇଥିବାବେଳେ ଚତୁର୍ଥ ପ୍ରବନ୍ଧଟି ସାହିତ୍ୟର ଏକ ବିଶିଷ୍ଟ ବିଭାଗ ଉପନ୍ୟାସର ସାମାଜିକ ଆବେଦନ ଉପରେ ନିର୍ଭରଶୀଳ । ମାତ୍ର ଶେଷୋକ୍ତ ପ୍ରବନ୍ଧଟି ସାହିତ୍ୟରେ ସତ୍ୟ ତଥା ତତ୍ତ୍ୱର ସ୍ୱରୂପ ଉପରେ ଆଧାରିତ । ପ୍ରଥମ ତିନୋଟି ପ୍ରବନ୍ଧରେ ପ୍ରାବନ୍ଧିକ ବାସୁଦେବ ତିନୋଟି ଭିନ୍ନ ପୀଢ଼ିର ତଥା ମାନସିକତାର ସାରସ୍ୱତ ବ୍ୟକ୍ତିତ୍ୱଙ୍କ ଉପରେ ଆଲୋକପାତ କରିଛନ୍ତି । ପ୍ରଥମଟି ଜଣେ ସ୍ରଷ୍ଟା ପୁରୁଷ । ଦ୍ୱିତୀୟଟି ଜଣେ ପୃଷ୍ଟପୋଷକ, ତୃତୀୟଟି ଜଣେ ଆଲୋଚକ । ସ୍ରଷ୍ଟା ପୁରୁଷ ଜଣକ ହେଉଛନ୍ତି ବ୍ୟାସକବି ଫକୀରମୋହନ ସେନାପତି । ପ୍ରାବନ୍ଧିକ ବାସୁଦେବ ଫକୀରମୋହନଙ୍କୁ ଜଣେ ସଫଳ ସେନାପତି ବୋଲି କହିଛନ୍ତି ଓଡ଼ିଆ ସାହିତ୍ୟର । ଜାତୀୟ ସ୍ୱାଭିମାନ କିପରି ଫକୀରମୋହନଙ୍କ ସାହିତ୍ୟକୁ ବଳିଷ୍ଠ କରିଥିଲା ତଥା ତାଙ୍କ ସାହିତ୍ୟ କିପରି ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ତଥା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା ସେ ଏହାର ବ୍ୟବସ୍ଥିତ ବର୍ଣ୍ଣନା କରିଛନ୍ତି । ନିଜ ଜନ୍ମଭୂମି ବାଲେଶ୍ୱର, ପ୍ରଦେଶ ଉତ୍କଳ ବା ଓଡ଼ିଶା ଓ ମାତୃଭୂମି ଭାରତ ପ୍ରତି ତାଙ୍କ ମମତାର ଅନ୍ତ ନଥିଲା ବୋଲି ପ୍ରକାଶ କରିବା ସହିତ ଅନ୍ୟାନ୍ୟ ଶିଳ୍ପୋନ୍ନତ ଦେଶମାନଙ୍କ ଅଧିବାସୀଙ୍କଠାରୁ ଭାରତୀୟମାନେ ଦେଶପ୍ରେମ ଶିକ୍ଷା କରିବା ଉଚିତ୍ ବୋଲି ସେ କହିଛନ୍ତି । ଏଥିପାଇଁ ସେ ଫକୀରମୋହନଙ୍କ 'ଜାପାନ' କବିତାର ଏକ ପଂକ୍ତି (ହେ ଜାପାନ ଦେଶପ୍ରେମ

ଦିଅ ଶିକ୍ଷାଦାନ/ ନ ଭୁଲ ଭାରତବର୍ଷ ବୁଦ୍ଧ ଜନ୍ମସ୍ଥାନ) କୁ ମଧ୍ୟ ଉଦ୍ଧାର କରିଛନ୍ତି । କେବଳ ମାତୃଭୂମି ନୁହେଁ ମାତୃଭାଷାର ଉନ୍ନତିକୁ ଫକୀରମୋହନଙ୍କ ସହାୟତାରେ ଜନ୍ ବୀମ୍ସ କିପରି ଉତ୍କଳ ବିଦ୍ୱେଶୀ ରାଜେନ୍ଦ୍ର ଲାଲ ମିତ୍ରଙ୍କ ଉକ୍ତିକୁ ଖଣ୍ଡନ କରି ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ, ମହତ୍ତ୍ୱ ତଥା କ୍ଷମତାର ଶୁଭାଭିଷେକ କରିଥିଲେ ସେ ବିଷୟରେ ପ୍ରାବନ୍ଧିକ ବାସୁଦେବ ମଧ୍ୟ ବର୍ଣ୍ଣନା କରିଛନ୍ତି । ଫକୀରମୋହନଙ୍କ 'ଉତ୍କଳ ଭ୍ରମଣ'ର କେତେକ ପଂକ୍ତି ଉଦ୍ଧାର କରି ସେ ତାଙ୍କ ଓଡ଼ିଆ ଭାଷା ପ୍ରୀତିର ପରିଚୟ ପ୍ରଦାନ କରିବା ସଂଗେସଂଗେ ଉତ୍କଳ ତଥା ଉତ୍କଳୀୟମାନଙ୍କୁ ସ୍ୱାଭିମାନର ସହ ବଞ୍ଚିବା ଲାଗି ଫକୀର ମୋହନଙ୍କ ଉପଦେଶର ଭୂୟସୀ ପ୍ରଶଂସା କରିଛନ୍ତି ।

ପ୍ରାବନ୍ଧିକ ବାସୁଦେବଙ୍କ ଅନ୍ୟ ଏକ ପ୍ରବନ୍ଧ ହେଉଛି 'ମଣିଷ ପରି ମଣିଷ' । ଏହି ପ୍ରବନ୍ଧରେ ସେ ମୟୂରଭଞ୍ଜର ରାଜା ସ୍ୱର୍ଗତ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଉନ୍ନତ ମାନବିକତା ତଥା ଉତ୍କଳୀୟ ସ୍ୱାଭିମାନର ପରିଚୟ ପ୍ରଦାନ କରିଛନ୍ତି । 'ସ୍ୱ' କୁ ସର୍ବସ୍ୱ'ରେ ଅର୍ପଣ କରିଥିବାରୁ ସେ ଯେ 'ପୁରୁଷୋତ୍ତମ' ହେବେ ଏହା ସେ ସ୍ପଷ୍ଟଭାବରେ କହିଛନ୍ତି । ବାଲ୍ୟକାଳରୁ ଶ୍ରୀରାମଚନ୍ଦ୍ର ଭଂଜଙ୍କ ନିକଟରେ ଏହି 'ପୁରୁଷୋତ୍ତମ' ପଣିଆକୁ ପ୍ରମାଣିତ କରିବାକୁ ଚାହିଁଛନ୍ତି ପ୍ରାବନ୍ଧିକ । ରାଜା ହେବାପରେ ରାଜତନ୍ତ୍ର ନୁହେଁ ଗଣତନ୍ତ୍ରରେ ବିଶ୍ୱାସ କରୁଥିବାରୁ ସେ ପରବର୍ତ୍ତୀ ପର୍ଯ୍ୟାୟରେ ଲୋକପ୍ରିୟ ହୋଇପାରିଛନ୍ତି । ଏକାଧାରାରେ ରାଜ୍ୟରେ କୃଷି, ଶିଳ୍ପର ପ୍ରସାର ପାଇଁ ତାଙ୍କର ପ୍ରଚେଷ୍ଟା ତଥା ରାଜସ୍ୱର ବହୁଭାଗ ଜନକଲ୍ୟାଣ ହିତରେ ବ୍ୟୟ କରୁଥିବାରୁ ତାଙ୍କର ପ୍ରଜାବତ୍ସଳତା ଅନନ୍ୟ ଥିଲା ବୋଲି ପ୍ରାବନ୍ଧିକ କହିଛନ୍ତି । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଏବଂ ଜ୍ଞାନେନ୍ଦ୍ର ନିୟୋଗୀଙ୍କ ପରି ଦେଶସେବୀ ତଥା ସଚୋଟ ମଣିଷଙ୍କୁ ଆପଣାର ରାଜକର୍ମଚାରୀ ଭାବେ ନିଯୁକ୍ତ କରିବା ରାମଚନ୍ଦ୍ରଙ୍କ ବ୍ୟକ୍ତିତ୍ୱର ଏକ ମହନୀୟ ଗୁଣ ବୋଲି ପ୍ରାବନ୍ଧିକ ପ୍ରମାଣିତ କରିଛନ୍ତି । ସର୍ବୋପରି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣରେ ସର୍ବବୃହତ୍ ଗଡ଼ଜାତର ଲୋକପ୍ରିୟ ମହାରାଜା ଭାବେ ରାମଚନ୍ଦ୍ରଙ୍କ ଅବଦାନ ଯେ ଅବିସ୍ମରଣୀୟ ଥିଲା ଏବଂ ସଦାସର୍ବଦା ସେ ଏକ ବୃହତ୍ ଓଡ଼ିଶା ପ୍ରଦେଶ ଗଠନର ସ୍ୱପ୍ନ ଦେଖୁଥିଲେ ଏହା ପ୍ରାବନ୍ଧିକ ସ୍ପଷ୍ଟଭାବେ ପ୍ରକାଶ କରିଛନ୍ତି । ତାଙ୍କର 'ଉତ୍କଳସମ୍ମିଳନୀ' ପ୍ରତି ଅକୁଣ୍ଠ ଦାନ, ଉତ୍କଳପ୍ରଭା ପତ୍ରିକାର ପ୍ରକାଶ ମାଧ୍ୟମରେ ଓଡ଼ିଆ ଭାଷାର ଉନ୍ନତି ପାଇଁ ପ୍ରୟାସ ଏବଂ ଏହି ପତ୍ରିକାରେ ଉତ୍କୃଷ୍ଟ ପ୍ରବନ୍ଧ ଓ ଗଦ୍ୟ ରଚନା ପାଇଁ ପୁରସ୍କାର ଘୋଷଣା ତାଙ୍କର ଉତ୍କଳ ପ୍ରୀତିର ସାର୍ଥକ ପ୍ରମାଣ ବୋଲି ପ୍ରାବନ୍ଧିକ କହିଛନ୍ତି । ସେ ଯଥାର୍ଥରେ ଥିଲେ ଓଡ଼ିଶାର ଉନ୍ନତି ଅଭିଳାଷୀ ବ୍ୟକ୍ତି । ଶେଷରେ ଶ୍ରୀରାମଚନ୍ଦ୍ରଙ୍କୁ ପୁରୁଷୋତ୍ତମ ବା 'ମହାମଣିଷ' ଭାବେ ପ୍ରତିପାଦିତ କରି ପ୍ରାବନ୍ଧିକ ବାସୁଦେବ ଏକ ପଂକ୍ତିର ଉଦ୍ଧାର କରିଛନ୍ତି, ଯାହା ହୁଏତ ତାଙ୍କର ନିଜ ସୃଷ୍ଟି ମଧ୍ୟ ହୋଇପାରେ-''ମଣିଷ ପାଇଁକି ଜୀବନ ଜାଳିଛି ମଣିଷ ଭିତରେ ମଣି/ ଓଡ଼ିଶା ରାଇଜ ମଉଡ଼ମଣି ସେ 'ମହାମଣିଷ'ରେ ଗଣି ।'' ଯଥାର୍ଥରେ ମହାରାଜ

ଶ୍ରୀରାମଚନ୍ଦ୍ର ଭଂଜ ଯେ ଓଡ଼ିଶା ଜାତିର ମହାମହିମ ମଉଡ଼ମଣି ଥିଲେ ଏହା ପ୍ରାବନ୍ଧିକ ବାସୁଦେବ ଏହି ପ୍ରବନ୍ଧରେ ପ୍ରତିପାଦନ କରିଛନ୍ତି ।

ତାଙ୍କର ଅନ୍ୟଏକ ପ୍ରବନ୍ଧ ହେଉଛି 'ଭାଷାତତ୍ତ୍ୱବିଦ୍ ପ୍ରଫେସର ଗୋଲକ ବିହାରୀ ଧଳ' (ମନସ୍ୱୀ : ମୃଣ୍ମୟୀ, ଚତୁର୍ଥ ବର୍ଷ, ପ୍ରଥମ ସଂଖ୍ୟା, ଏପ୍ରିଲ ୨୦୦୩, ପୃ.୫-୧୦) । ଏହି ପ୍ରବନ୍ଧଟିର ପ୍ରଥମ ପର୍ଯ୍ୟାୟରେ ପ୍ରଫେସର ଧଳଙ୍କ ପ୍ରଶସ୍ତି ଯାହା ଓଡ଼ିଶା ଓ ଓଡ଼ିଶା ବାହାରର ବିଦ୍ୱାନ୍‌ମାନେ କରିଛନ୍ତି ତାର ସଂକଳନ କରିଛନ୍ତି ପ୍ରାବନ୍ଧିକ । ପ୍ରଶସ୍ତିକାରଙ୍କ ମଧ୍ୟରେ ଡଃ ସୁନୀତି କମାର ଚଟ୍ଟୋପାଧ୍ୟାୟ, ଡଃ ସୁକୁମାର ସେନ୍, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ପ୍ରଫେସର ସର୍ବେଶ୍ୱର ଦାସ, ପ୍ରଫେସର ଡଃ ମନ୍ମଥନାଥ ଦାସ, ପ୍ରଫେସର ଡଃ ଶ୍ରୀରାମଚନ୍ଦ୍ର ଦାସ, ପ୍ରଫେସର ଦୁର୍ଗାଚରଣ କୁଅଁର, ପ୍ରଫେସର ଡଃ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର, ପଣ୍ଡିତ ଗୋଦାବରୀଶ ମିଶ୍ର, ଡଃ ହରେକୃଷ୍ଣ ମହତାବ, ଶ୍ରୀମତୀ ନନ୍ଦିନୀ ଶତପଥୀ, ପ୍ରଫେସର ଚିତ୍ତରଂଜନ ଦାସ ଏବଂ ପ୍ରଫେସର ଗୌରୀକୁମାର ବ୍ରହ୍ମାଙ୍କ ନାମୋଲ୍ଲେଖ କରିଛନ୍ତି ପ୍ରାବନ୍ଧିକ । ପ୍ରବନ୍ଧର ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରଫେସର ଧଳଙ୍କ ଲିଖିତ ଗ୍ରନ୍ଥମାନଙ୍କର ତାଲିକା ଓ ସଂକ୍ଷିପ୍ତ ସୂଚନା ପ୍ରଦାନ କରିଛନ୍ତି ପ୍ରାବନ୍ଧିକ । ପ୍ରଫେସର ଧଳ କିପରି ଆଧୁନିକ ଭାଷା ଚର୍ଚ୍ଚାର ପରମ୍ପରାର ଶୁଭ ଆବାହକ ଥିଲେ ଏବଂ ତାଙ୍କ ଆଲୋଚନା କିପରି ପୂର୍ବସୂରୀଙ୍କଠାରୁ ସମ୍ପୂର୍ଣ୍ଣ ଭିନ୍ନ ପ୍ରାବନ୍ଧିକ ବାସୁଦେବ ଏହି ପ୍ରବନ୍ଧର ଦ୍ୱିତୀୟାର୍ଦ୍ଧରେ ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ପ୍ରାବନ୍ଧିକଙ୍କ ବିଚାରରେ ପ୍ରଫେସର ଧଳ ହିଁ ଆଧୁନିକ ଭାଷା ବିଜ୍ଞାନ ଶିକ୍ଷା ପ୍ରବର୍ତ୍ତନର ଏକ ନୂତନ ପାଢ଼ିର ସ୍ରଷ୍ଟା । ସେ ପ୍ରଥମ କରି ପ୍ରୟୋଗାତ୍ମକ (Applied) ଏବଂ ବର୍ଣ୍ଣନାତ୍ମକ (Descriptive) ଭାଷାତତ୍ତ୍ୱର ଆଲୋଚନା ଆରମ୍ଭ କରିଥିଲେ ଯାହା ପରବର୍ତ୍ତୀ କାଳରେ ଓଡ଼ିଆ ଭାଷାଚର୍ଚ୍ଚା ପରମ୍ପରାର ଏକ ବଳିଷ୍ଠ ମୂଳପତ୍ତନ ସ୍ଥାପନ କରିଥିଲା । ପ୍ରଫେସର୍ ଧଳଙ୍କ 'ମଣିଷର ଭାଷା', 'ପେଟର ପବନ ପାଟିର କଥା', 'ଧ୍ୱନି ବିଜ୍ଞାନ', 'ଇଂରାଜୀ ଉଚ୍ଚାରଣ ଶିକ୍ଷା', 'ଓଡ଼ିଆ କେବେ', 'Aspiration in Oriya' 'ବିଚାର ଆଲୋଚନା', 'ଗାନ୍ଧିଜୀ ଓ ଭାଷା ସମସ୍ୟା' ଏବଂ 'ଭାଷାଶାସ୍ତ୍ର ପରିଚୟ' ଆଦି ଗ୍ରନ୍ଥର ସଂକ୍ଷିପ୍ତ ଆଲୋଚନା କରିଛନ୍ତି ।

ସାହିତ୍ୟ ସମାଜର ତଥା ପ୍ରତିଟି ସାମାଜିକର ଦର୍ପଣ । ସାହିତ୍ୟ ମାଧ୍ୟମରେ ସମାଜର ସୁସ୍ଥଗଠନ ସମ୍ଭବପର । ଉପନ୍ୟାସରେ ସୁସ୍ଥ ସମାଜ ଗଠନରେ କ'ଣ କ'ଣ ଉପାଦାନ ରହିବା ଆବଶ୍ୟକ ଏବଂ ଓଡ଼ିଆ ଉପନ୍ୟାସ ଏସବୁକୁ କେତେ ପରିମାଣରେ ପୂରଣ କରିଛି ଏହାକୁ ନେଇ ପ୍ରାବନ୍ଧିକ ବାସୁଦେବ ରଚନା କରିଛନ୍ତି 'ଓଡ଼ିଆ ଉପନ୍ୟାସରେ ସୁସ୍ଥ ସମାଜ ଗଠନର ଆହ୍ୱାନ' ପ୍ରବନ୍ଧ । ଯୁଗେଯୁଗେ କବି ତଥା ସ୍ରତ୍ୟଦ୍ରଷ୍ଟା ସାରସ୍ୱତ ସାଧକଗଣ ମାନବର ବନ୍ଦନା କରିଆସିଛନ୍ତି । ଚଣ୍ଡୀ ଦାସ (ସବାର୍ ଉପରେ ମାନୁଷ୍ ଶ୍ରେଷ୍ଠ)ଙ୍କଠାରୁ ଆରମ୍ଭ କରି ମାୟକୋଭସ୍କି (wherever pain is, there am I, on every drop of

tear that is shed. I myself am crusified) ଙ୍କ ପର୍ଯ୍ୟନ୍ତ ସମସ୍ତେ ମାନବର ବନ୍ଦନା ଏବଂ ମାନବର ସେବାକୁ ଅଗ୍ରାଧିକାର ଦେଇ ଆସିଛନ୍ତି ବୋଲି ପ୍ରାବନ୍ଧିକ ପ୍ରମାଣ ସହ କହିଛନ୍ତି । ଯୁଗେଯୁଗେ କବି ଓ ସାହିତ୍ୟିକମାନେ ସମାଜରୁ ବିଭିନ୍ନ କୁସଂସ୍କାର ତଥା ବିଭିନ୍ନ ସାମାଜିକ ଦୋଷଦୁର୍ବଳତାକୁ ଦୂରେଇ ଦେଇ ଏକ ନିରାମୟ ତଥା ଶୁଭଙ୍କର ସମାଜ ଗଠନ କରିଛନ୍ତି । ଆଫ୍ରିକାରୁ ଦାସପ୍ରଥାର ଲୋକ ଅଥବା ଫ୍ରାନ୍ସ ବିପ୍ଳବକୁ ତ୍ୱରାନ୍ୱିତ କରିବା ପାଇଁ 'ଅଙ୍କଲ ଟମ୍‌ସ କ୍ୟାବିନ୍' ଏବଂ 'ସୋସିଆଲ କଣ୍ଟ୍ରାକ୍ଟ' ଗ୍ରନ୍ଥର ଅବଦାନ କିଛି କମ୍ ନୁହେଁ ବୋଲି ପ୍ରାବନ୍ଧିକ ପ୍ରକାଶ କରିଛନ୍ତି । ଭାରତୀୟ ଉପନ୍ୟାସ ସାହିତ୍ୟର ଅଗ୍ରଗଣ୍ୟ କଥା ସମ୍ରାଟ ମୁନ୍‌ସୀ ପ୍ରେମଚାନ୍ଦ 'ଗୋଦାନ'ରେ କୃଷକର ଦୁଃସ୍ଥ ଜୀବନର ଚିତ୍ରାଙ୍କନ ହିଁ ପରବର୍ତ୍ତୀ କାଳରେ ଏକ ସୁସ୍ଥ ସମାଜ ଗଠନର ଭିତ୍ତିଭୂମି ପକାଇଥିଲା ବୋଲି ପ୍ରାବନ୍ଧିକ ବାସୁଦେବ ପ୍ରମାଣ କରିଛନ୍ତି । ପ୍ରାଥମିକ କର୍ଯ୍ୟାୟର ଓଡ଼ିଆ ଉପନ୍ୟାସଗୁଡ଼ିକରେ ସାମାଜିକ ବିପ୍ଳବ ସୃଷ୍ଟି କରିବାର କ୍ଷମତା ନଥିଲେ ମଧ୍ୟ ଉମେଶ ଚନ୍ଦ୍ରଙ୍କ 'ପଦ୍ମମାଳୀ' (୧୯୮୮)ରେ ଓଡ଼ିଶାରେ ବର୍ଗୀମାନଙ୍କ ଅତ୍ୟାଚାର, ରାମଶଙ୍କରଙ୍କ 'ବିବାସିନୀ' (୧୯୮୧)ରେ କ୍ଷୁଦ୍ର ଦେଶୀୟ ରାଜ୍ୟ ନୀଳଗିରିରେ ଗଡ଼ଜାତୀ ଅତ୍ୟାଚାର ଏବଂ ଗୋପାଳ ବଲ୍ଲଭ ଦାସଙ୍କ 'ଭୀମାଭୂୟାଁ' (୧୯୦୮)ରେ ଅବହେଳିତ ଆଦିବାସୀ ଭୂୟାଁ ଜାତିର ଜୀବନକାହାଣୀର ସଫଳ ରୂପାୟନରେ ଏକ ସାମାଜିକ ସଚେତନତା ସୃଷ୍ଟି କରାଯାଇପାରିଛି ବୋଲି ପ୍ରାବନ୍ଧିକ କହିଛନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ଉପନ୍ୟାସ ସାହିତ୍ୟର ଜନକ ଫକୀରମୋହନଙ୍କ ଉପନ୍ୟାସଗୁଡ଼ିକରେ କିପରି ସାମାଜିକ ଚେତନା ପ୍ରତିଫଳିତ ତାର ବର୍ଣ୍ଣନା କରି ନନ୍ଦକିଶୋର (କନକଲତା), କାଳିନ୍ଦୀଚରଣ ପାଣିଗ୍ରାହୀ (ମାଟିର ମଣିଷ, ଅମରଚିତା) ହରେକୃଷ୍ଣ ମହତାବ (ପ୍ରତିଭା, ନୂଁନେଧର୍ମ, ଟାଉଟର, ୧୯୭୫, ତୃତୀୟ ପର୍ବ), ରାମପ୍ରସାଦ ସିଂହ(ହୋମଶିଖା, ସମାପ୍ତି ଓ ଅଗ୍ନିପଥେ), ନିତ୍ୟାନନ୍ଦ ମହାପାତ୍ର (ହିଡ଼ମାଟି, ଭଙ୍ଗାହାଡ଼, ଘରଡିହ) ଆଦିଙ୍କ ଉପନ୍ୟାସରେ ସମାଜର ବିଭିନ୍ନ କୁସଂସ୍କାରାଚ୍ଛନ୍ନ ଦିଗକୁ ଦେଖାଇ ଦିଆଯାଇ ତା' ମଧ୍ୟରୁ ମଣିଷକୁ ରକ୍ଷା କରିବାର ତଥା ଏକ ସୁସ୍ଥସମାଜ ଗଠନ ପାଇଁ ଆହ୍ୱାନ ଦିଆଯାଇଛି ବୋଲି ପ୍ରାବନ୍ଧିକ ପ୍ରତିପାଦନ କରିଛନ୍ତି । ସମାଜର ସୃଷ୍ଟୁ ଗଠନ ପାଇଁ କାହ୍ନୁଚରଣଙ୍କ ଶାସ୍ତି, ଶର୍ବରୀ, ବଜ୍ରବାହୁ ତଥା ଝଞ୍ଜା ଆଦି ଉପନ୍ୟାସରେ ଆହ୍ୱାନ ଅନ୍ତ ନାହିଁ ବୋଲି ପ୍ରାବନ୍ଧିକ କହିଛନ୍ତି ।

କେବଳ କାହ୍ନୁଚରଣ ନୁହନ୍ତି କମଳାକାନ୍ତ (ବାପା), ଜ୍ଞାନୀନ୍ଦ୍ର ବର୍ମା (ଭୂମିକା), ଗୋପୀନାଥ ମହାନ୍ତି (ପରଜା, ଅମୃତର ସନ୍ତାନ, ଅପହଞ୍ଚ, ଶିବଭାଇ, ହରିଜନ, ଦାନାପାଣି, ସପନମାଟି) । ସୁରେନ୍ଦ୍ର ମହାନ୍ତି (ଅନ୍ଧଦିଗନ୍ତ), ଶାନ୍ତନୁକୁମାର ଆଚାର୍ଯ୍ୟ (ନରକିନ୍ନର, ଶକୁନ୍ତଳା), କୃଷ୍ଣପ୍ରସାଦ ମିଶ୍ର (ସିଂହକଟି, ମୃଗ ତୃଷ୍ଣା, ନେପଥ୍ୟେ), ମହାପାତ୍ର ନୀଳମଣି ସାହୁ (ଧରା ଓ ଧାରା, ତାମସୀ ରାଧା), ବିଭୂତି ପଟ୍ଟନାୟକ (ଏଇ ଗାଁ ଏଇ ମାଟି, ଚପଳଛନ୍ଦା, ଓଦାମାଟିର ସ୍ୱର୍ଗ), ଲକ୍ଷ୍ମୀଧର ନାୟକ (ମୋ ସ୍ୱପ୍ନର ସହର, ଚନ୍ଦ୍ରଶେଖର

ରଥ (ଅସୂର୍ଯ୍ୟ ଉପନିବେଶ) ଏବଂ ଗଣେଶ୍ୱର ମିଶ୍ର (ନେତା) ଆଦିଙ୍କ ରଚନାରେ ଏହି ସାମାଜିକ ଅଙ୍ଗୀକାରବଦ୍ଧତା ଅତ୍ୟନ୍ତ ସ୍ୱଷ୍ଟ ଓ ଅନ୍ତରଙ୍ଗ ବୋଲି ପ୍ରାବନ୍ଧିକ ଦୃଢ଼ଭାବେ କହିଛନ୍ତି । ଏହିସବୁ ଉପନ୍ୟାସ ଯେ ଓଡ଼ିଶାର ସାମାଜିକ ଜୀବନାବସ୍ଥାର ପରିବର୍ତ୍ତନରେ ପ୍ରମୁଖ ସହାୟକ ହୋଇଥିଲା, ତାହା ପ୍ରାବନ୍ଧିକ ଦୃଢ଼ ଭାବେ ଉପସ୍ଥାପନ କରିଛନ୍ତି । ଓଡ଼ିଆ ପ୍ରବନ୍ଧ ତଥା ସମାଲୋଚନା କ୍ଷେତ୍ରରେ ପ୍ରାବନ୍ଧିକ ବାସୁଦେବଙ୍କ ପ୍ରବନ୍ଧର ଗୁରୁତ୍ୱପୂର୍ଣ୍ଣ ଭୂମିକା ସ୍ୱୀକାର ଯୋଗ୍ୟ ।

ଆଲୋଚନାର ଅନ୍ତିମ ପ୍ରବନ୍ଧଟି ପ୍ରାବନ୍ଧିକ ବାସୁଦେବଙ୍କ 'ସତ୍ୟ ଚେତନା : ତତ୍ତ୍ୱ ଜିଜ୍ଞାସା' (ସତ୍ୟଚେତନା, ପ୍ରଥମ ବର୍ଷ, ୪ର୍ଥ ସଂଖ୍ୟା, ଜାନୁଆରୀ ୨୦୦୩, ପୃ.୮-୧୨) । ଏହା ପ୍ରାବନ୍ଧିକଙ୍କ ପୂର୍ବପ୍ରବନ୍ଧଠାରୁ ସ୍ୱତନ୍ତ୍ର ଓ ଅନ୍ୟାନ୍ୟ । ଏହା ସତ୍ୟକୁ ଚିହ୍ନିବାର, ଆପଣାର କରିବାର ତଥା ଅନ୍ୟକୁ ଚିହ୍ନାଇବାର ମନୋଭୂମି ଉପରେ ପ୍ରତିଷ୍ଠିତ । ପ୍ରଥମତଃ ପ୍ରାବନ୍ଧିକ 'ସତ୍ୟ'ର ବ୍ୟୁତ୍ପତ୍ତି କରିବାକୁ ଯାଇ କହିଛନ୍ତି ଯେ ଯାହା ଅତୀତରେ ଥିଲା, ବର୍ତ୍ତମାନ ଅଛି ଏବଂ ଭବିଷ୍ୟତରେ ରହିବ ତାହାହିଁ 'ସତ୍' । ଏହା ନିରବଧି, ନିରବଚ୍ଛିନ୍ନ ଓ ଅନନ୍ତ । ଏଣୁ ଏହା କୌଣସି ନିର୍ଦ୍ଦିଷ୍ଟ ଅଭିଧାରେ କେତେବେଳେ ବି ଆକଳିତ ନୁହେଁ । ଏହି ସତ୍ ସର୍ବଦା 'ସତ୍ତା' ସହିତ ସଂପୃକ୍ତ, ଏବଂ ତାର ଗୁଣ ହିଁ ସତ୍ତ୍ୱ ଗୁଣ । ଯାହାର ଅର୍ଥ ପ୍ରାବଂଧିକଙ୍କ ବିଚାରରେ ମହତ୍ତ୍ୱ, ସାରତ୍ୱ ବା ସାରବତ୍ତା । ଏହି ସତ୍‌କୁ ଚିହ୍ନିବାର, ଉପଲବ୍ଧି କରିବାର ଚେତନା ହିଁ ସତ୍ୟଚେତନା, ଯାହାର ଅପର ନାମ ପ୍ରାବନ୍ଧିକଙ୍କ ବିଚାରରେ ଭଗବତ୍ ଚେତନା । ଏହି ଚେତନାତ୍ମକ ଅଧିଦେବତା ଭାବେ ଭାରତୀୟ ଦାର୍ଶନିକ ପରମ୍ପରାରେ ଯେଉଁସବୁ ନାମର ବ୍ୟବହାର କରାଯାଇଛି ଯଥା କୃଷ୍ଣ, ରାମ, ଜଗନ୍ନାଥ, ରୁଦ୍ର, ସରସ୍ୱତୀ ଏବଂ ଗଣେଶ ଆଦି ଏହି ଶବ୍ଦର ବ୍ୟାଖ୍ୟା କରିଛନ୍ତି ପ୍ରାବନ୍ଧିକ ପ୍ରସ୍ତୁତ ପ୍ରବନ୍ଧରେ ।

ଏହାପରେ ପ୍ରାବନ୍ଧିକ ଭଗବାନଙ୍କର ସତ୍ତ୍ୱ, ରଜ ଓ ତମ ଏହି ତିନୋଟିଗୁଣକୁ ଆଲୋଚନା କରି ସେ ଏକାଧାରରେ ଗୁଣଯୁକ୍ତ ଓ ଗୁଣମୁକ୍ତ ବୋଲି ଘୋଷଣା କରିଛନ୍ତି । ସଦ୍‌ଗୁଣହିଁ ଈଶ୍ୱରଙ୍କ ଭୂଷଣ । ଏ ପରିପ୍ରେକ୍ଷୀରେ ସତ୍ୟ, ଅହିଂସା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ, ଶୌଚ ତଥା ସନ୍ତୋଷ ଆଦି କେତୋଟି ସଦ୍‌ଗୁଣର ଆଲୋଚନା କରିଛନ୍ତି ପ୍ରାବନ୍ଧିକ । ତାଙ୍କ ବିଚାରରେ ମଣିଷ ସତ୍ୟର ଆଲୋକରେ ନିଜ ଅନ୍ତରକୁ ଆଲୋକିତ ରଖିପାରିଲେ ତା' ହୃଦୟରେ ଢାଙ୍କିକରି ଥିବା ଅନିଶ୍ଚୟତା, ସନ୍ଦେହ ତଥା ଅଜ୍ଞାନର ମେଘ ପଟଳ ଦୂରେଇଯିବ । ସତ୍ୟର ସାଧକ ଅହିଂସାବ୍ରତ ପାଳନ କରିବା ଆବଶ୍ୟକ ଏବଂ ଏହାଦ୍ୱାରା ଜୀବର ମଂଗଳ ସାଧନା ପାଇଁ ମନୁଷ୍ୟ ସଦାସର୍ବଦା ପ୍ରବୃତ୍ତ ରହେ ବୋଲି ପ୍ରାବନ୍ଧିକ କହିଛନ୍ତି । ଅହିଂସାର ପରବର୍ତ୍ତୀ ଗୁଣଟି ଅଚୌର୍ଯ୍ୟ, ଯାହାର ସାଧନ କଲେ ସାଧକ କାହାକୁ ବଧ କରିବାକୁ, କିଛି ଚୋରି କରିବାକୁ, ନିଶା ସେବନ ନକରିବାକୁ ତଥା ମିଥ୍ୟା ନକହିବାକୁ ପ୍ରେରଣା ପାଇଥାଏ । ତାର ପରବର୍ତ୍ତୀ ସାଧନା ହେଉଛି ବ୍ରହ୍ମଚର୍ଯ୍ୟ । ଚରିତ୍ରକୁ

ସ୍ପନ୍ଦନରୁ ମୁକ୍ତ ରଖିବାକୁ ହେଲେ ଆଠପ୍ରକାର ମୈଥୁନକୁ ତ୍ୟାଗ କରିବା ପାଇଁ ପ୍ରାବନ୍ଧିକ ଏ କ୍ଷେତ୍ରରେ ଉପଦେଶ ଦେଇଛନ୍ତି । ସେହିପରି ଅପରିଗ୍ରହ, ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଆଦିର ଆଲୋଚନା କରି ପ୍ରାବନ୍ଧିକ ଶେଷରେ ପହଞ୍ଚିଛନ୍ତି ଉକ୍ତି ପାଖରେ । ଏହି ଉକ୍ତି ଶେଷରେ ସାଧକକୁ 'ସର୍ବଭୂତେଷୁ ଆତ୍ମବତ୍' ସ୍ଥିତି ଜାଗ୍ରତ କରାଇବାରେ ହିଁ ସମର୍ଥ ହୋଇଥାଏ ଏବଂ ହୃଦୟଭିତରୁ 'ମୁଁ କାର'କୁ ଦୂରକୁ ଫିଙ୍ଗି ଦେଇଥାଏ । ସେତେବେଳେ ହିଁ ପରମ ସତ୍ତା ହିଁ ହୃଦୟ କଳପରେ ଆର୍ବିଭୂତ ହୋଇ ଜୀବନକୁ ପରିପୂର୍ଣ୍ଣ କରିଦିଅନ୍ତି । ମୋଟାମୋଟି ଏହି ପ୍ରବନ୍ଧଟି ପ୍ରାବନ୍ଧିକ ବାସୁଦେବଙ୍କର ଏକ ଅଧ୍ୟାତ୍ମ ତତ୍ତ୍ୱ ଅନୁଚିନ୍ତନ ମୂଳକ ପ୍ରବନ୍ଧ । ଅବସର ପରେ ନିତ୍ୟ ବିଭୂପଦାବରବିନ୍ଦ ରସିକ ବାସୁଦେବ 'ସା ପରାନୁରକ୍ତିରୀଶ୍ୱରେ' ନାରଦ ଭକ୍ତିସୂତ୍ରର ଏହି ସୂକ୍ତିଟିକୁ ଜୀବନରେ ଅଭିମନ୍ତ୍ରିତ କରି ଦେଇଥିବାର ଜଣାଯାଏ ।

ପ୍ରଫେସର ବାସୁଦେବ ସାହୁଙ୍କ ପ୍ରବନ୍ଧ ରଚନାର ପରିସର ଅତ୍ୟନ୍ତ ବ୍ୟାପକ । ଓଡ଼ିଆ ଭାଷାବିଜ୍ଞାନଠାରୁ ବ୍ୟାକରଣ ପର୍ଯ୍ୟନ୍ତ, ଓଡ଼ିଆ ଭାଷାର ଇତିହାସରୁ ସାହିତ୍ୟ ତତ୍ତ୍ୱ ପର୍ଯ୍ୟନ୍ତ, ପ୍ରାଚୀନ ତଥା ମଧ୍ୟକାଳୀନ ସାହିତ୍ୟ ସମୀକ୍ଷାରୁ ଆଧୁନିକ ଓଡ଼ିଆ ସାହିତ୍ୟର ସମୀକ୍ଷା ପର୍ଯ୍ୟନ୍ତ, ଅଳଙ୍କାର ତତ୍ତ୍ୱଠାରୁ କାବ୍ୟତତ୍ତ୍ୱ ପର୍ଯ୍ୟନ୍ତ ଏବଂ ସଂକଳନ ଓ ସଂପାଦନାଠାରୁ ଅନୁବାଦ ପର୍ଯ୍ୟନ୍ତ ସର୍ବତ୍ର ତାଙ୍କ ପିପଠିଷାର ସାମ୍ରାଜ୍ୟ ସୁବିସ୍ତୃତ ଏବଂ ସୁରକ୍ଷିତ । ନିନ୍ଦା-ପ୍ରଶଂସା-ପୁରସ୍କାରରୁ ସମ୍ପୂର୍ଣ୍ଣ ନିର୍ଲିପ୍ତ ଏହି ନିରଭିମାନ ତଥା ନିରଳସ ସ୍ରଷ୍ଟାପୁରୁଷ ଜଣକର ଅକାଳ ତିରୋଧାନ ଓଡ଼ିଆ ସାରସ୍ୱତ ଜଗତ ପ୍ରତି ଯେ ଏକ ଅପୂରଣୀୟ କ୍ଷତି, ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ । ବୃତ୍ତିଗତ ଜୀବନର ଶୃଙ୍ଖଳାମଧ୍ୟରେ ଆବଦ୍ଧ ରହି ମଧ୍ୟ ନୀରବ ତଥା ଶୁଦ୍ଧ ସାଧନାର ସେ ଏକ ଉଜ୍ଜ୍ୱଳ ତଥା ଅମ୍ଳାନ ଦୃଷ୍ଟାନ୍ତ । ତାଙ୍କ ସାମଗ୍ରିକ ପ୍ରବନ୍ଧ ମତରେ ଆଲୋଚନା ଏ ଦୀନ ଲେଖକ ପକ୍ଷରେ ଆଦୌ ସମ୍ଭବ ନୁହେଁ । ଏହା ତାଙ୍କ ପରିପୂର୍ଣ୍ଣ ପ୍ରବଂଧ ଜଗତର ଏକ ବିହଙ୍ଗାବଲୋକନ ମାତ୍ର । ସେ ନିରଳସ ନିରଭିମାନ ସାରସ୍ୱତ ସାଧକଙ୍କୁ ଆଭୂମ ପ୍ରଣାମ ।



ଅନ୍ୱେଷା, ଦଣ୍ଡୁଆସୀପଡ଼ା
ଆୟତପୁର, କିଶୋର ନଗର, କଟକ-୭୫୪୧୩୧

# ପ୍ରବଂଧ ପରିଧି ଓ ପ୍ରଫେସର ବାସୁଦେବ ସାହୁ

ଡଃ ପ୍ରମୋଦ କୁମାର ପରିଡ଼ା

ପ୍ରଫେସର ଡଃ ବାସୁଦେବ ସାହୁଙ୍କ ରଚିତ ସାହିତ୍ୟିକ ଆଲୋଚନା, ସମାଲୋଚନା, ଭାଷାତାତ୍ତ୍ୱିକ ନିବନ୍ଧ କିମ୍ବା ଏ ସୂତ୍ରରେ ଲିଖିତ, ସଂକଳିତ ଓ ପ୍ରକାଶିତ ନିବନ୍ଧ ସଂପର୍କରେ ଏକ ପାଠକୀୟ ନୈବେଦ୍ୟ ବାଢ଼ିବା ଏ କ୍ଷୁଦ୍ର ଉପସ୍ଥାପନାର ଆଭିମୁଖ୍ୟ ନୁହେଁ । ମାତ୍ର ବିଭିନ୍ନ ସମୟରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଭିନ୍ନଭିନ୍ନ ଅନୁଷ୍ଠାନର ପ୍ରୟାସରେ ସାମୟିକ କିମ୍ବା ବିଶେଷ ଉତ୍ସବ ସଂବନ୍ଧୀୟ ଅବସରରେ ପ୍ରକାଶିତ ବିଭିନ୍ନ ପତ୍ରପତ୍ରିକାକୁ ସେ ନିଜର ପ୍ରବଂଧ ମାଧ୍ୟମରେ ଅଧିକ ସମୃଦ୍ଧ ଓ ସଂଗ୍ରହ ଯୋଗ୍ୟ କରିପାରିଥିଲେ । ସେଇ ସଂପର୍କରେ ସାମାନ୍ୟ ସୂଚନା ପ୍ରଦାନ କରିବା ଉଦ୍ଦେଶ୍ୟରେ ଏହି ଅବତରଣିକା । ଏହି ନିବନ୍ଧ ପ୍ରସ୍ତୁତି କାଳରେ ପତ୍ରପତ୍ରିକା ପୃଷ୍ଠା ମଣ୍ଡନ କରିଥିବା ପ୍ରତ୍ୟେକ ପ୍ରବଂଧର ସହାୟତା ନିଆଯାଇ ନାହିଁ । ମାତ୍ର-

୧. ୧୯୬୯ ମସିହାରେ ରଘୁନାଥ ବିଦ୍ୟାପୀଠ, ପୁରୀରୁ ପ୍ରକାଶିତ 'ରାମଶ୍ରୀ' ପତ୍ରିକା (ଗାନ୍ଧୀ ଜନ୍ମଶତବାର୍ଷିକ ବିଶେଷାଙ୍କ)ର ''ଗାନ୍ଧୀଙ୍କର ସ୍ୱପ୍ନର ଭାରତ ଓ ଆମେ''

୨. ୧୯୮୧ ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେବଙ୍କ ଜନ୍ମଜୟନ୍ତୀ ସ୍ମରଣିକାରେ ମୁଦ୍ରିତ ''ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତିର କଲ୍ୟାଣକାରୀ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେବ ।''

୩. ୧୯୮୭ରେ ଏଇ ଅନୁଷ୍ଠାନ ଆନୁକୂଲ୍ୟରେ ପ୍ରକାଶିତ ଅନ୍ୟଏକ ସ୍ମରଣିକାରେ ମୁଦ୍ରିତ ''ମଣିଷ ପରି ମଣିଷ ।''

୪. ୧୯୮୮ରେ ପ୍ରକାଶିତ 'ବାର୍ତ୍ତାଭୂମି'ର ଅକ୍ଟୋବର ଡିସେମ୍ବର ସଂଖ୍ୟାରେ ମୁଦ୍ରିତ ପ୍ରବଂଧ ''ଓଡ଼ିଶାରେ ଦୁର୍ଗାପୂଜା ।''

୫. ୧୯୯୪ରେ ଖ୍ରୀଷ୍ଟକଲେଜର ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକାରେ ପ୍ରକାଶିତ ''ମମତାର ମହାମନ୍ଦିର''.

୬. ୧୯୯୫ରେ ମୁଦ୍ରିତ 'ଖଣ୍ଡଗିରି ଲୀଳା' ପତ୍ରିକା ସନ୍ନିବେଶିତ ''ଠାକୁର ଅଭିରାମ ଦର୍ଶନ''

୭. କାରୁବାକୀ ସାମନ୍ତରାୟଙ୍କ ଦ୍ୱାରା ସଂପାଦିତ 'କାରୁବାକୀ'ରେ ସ୍ଥାନୀତ ''ଓଡ଼ିଆ ଭାଷାର ଗବେଷଣା ଓ ଅଧ୍ୟାପନା''-

୮. ୧୯୯୭ ରେ ପ୍ରକାଶିତ 'ସଂକଳ୍ପ'ର ଜାନୁୟାରୀ ମାର୍ଚ୍ଚ ସଂଖ୍ୟାରେ ମୁଦ୍ରିତ ''ଓଡ଼ିଆ ଲିପିର ବିବର୍ତ୍ତନ''

ପ୍ରବଂଧ ଗୁଡ଼ିକୁ ଅବଲମ୍ବନ କରି ଏହି ଉପସ୍ଥାପନା । ଏହି ଅବଧି ମଧ୍ୟରେ ବିଭିନ୍ନ ପ୍ରତିଷ୍ଠିତ ଓ ପ୍ରତିଷ୍ଠା ଲାଭ ଅପେକ୍ଷାରେ ଥିବା ପତ୍ରିକାଗୁଡ଼ିକରେ ଯେ କେବଳ ଏତିକି ପ୍ରବଂଧ ପ୍ରକାଶିତ ତାହା ନୁହେଁ । ତେବେ ଏ ଉପସ୍ଥାପନାର ସୀମିତ କଳେବର ଏବଂ ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଏକ ଆପାତଃ ପ୍ରମାଣ ଯୋଗ୍ୟତାକୁ ସ୍ୱୀକୃତି ଦେବାକୁ ଏତିକି ପ୍ରବଂଧକୁ ହିଁ ଆଧାର ଭାବରେ ଗ୍ରହଣ କରାଯାଇଛି ।

ଏସବୁ ପତ୍ରପତ୍ରିକା ବହଳ ପ୍ରସାରିତ କିମ୍ବା ପରିସଂଖ୍ୟାନ ଦୃଷ୍ଟିରୁ ଏତେ ଗରୁତ୍ୱପୂର୍ଣ୍ଣ ବିବେଚିତ ହୁଅନ୍ତି ନାହିଁ । ଏମାନଙ୍କ ପ୍ରକାଶନ ପୁଣି ଯୋଜନାବଦ୍ଧ ନହୋଇ ଅଧିକ ଆବେଗିକ ମନେହୁଏ । ମାତ୍ର ପ୍ରଫେସର ସାହୁଙ୍କ ଭଳି ଜଣେ ପ୍ରତିଷ୍ଠିତ ସାହିତ୍ୟିକଙ୍କ ପାଖରେ ଅନୁଷ୍ଠାନ ଓ ସାହିତ୍ୟିକ ପ୍ରତିବଦ୍ଧତା ହିଁ ଏକମାତ୍ର ଶ୍ଳାଘ୍ୟ ଥିଲା, ନଚେତ୍ ଛୋଟବଡ଼ ଯେକୌଣସି ଅନୁଷ୍ଠାନର ଅନୁରୋଧ ରକ୍ଷାକରି ପ୍ରବଂଧ ପଠାଇବାର ଏ ନିଶା ତାଙ୍କର ନଥା'ନ୍ତା । ତାଙ୍କ ପାଇଁ ପ୍ରସିଦ୍ଧି ବଡ଼ ନଥିଲା, ପ୍ରସିଦ୍ଧ ହେବା ପାଇଁ ଉଠିଥିବା ପାଦକୁ ଶକ୍ତ ଏବଂ ଅଗ୍ରଗାମୀ କରିବାର ଏକ ଅଦମ୍ୟ ସଂକଳ୍ପ ବଡ଼ ଥିଲା । ସେଥିପାଇଁ ସେ ସୃଷ୍ଟିପ୍ରବଣ ପ୍ରତ୍ୟେକ ଚେତନାକୁ ଯଥାଯଥ ସମ୍ମାନ ଓ ଶ୍ରଦ୍ଧା ପ୍ରଦାନ କରିପାରିଛନ୍ତି ।

ଉଲ୍ଲିଖିତ ପ୍ରବଂଧଗୁଡ଼ିକୁ ବିଷୟବସ୍ତୁ ଦୃଷ୍ଟିରୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଶ୍ରେଣୀୟ ପ୍ରବଂଧ-ଜୀବନୀ ଓ ଚରିତମୂଳକ ଜାତି ଗଠନ ପାଇଁ, ଅତୀତର ରୋମନ୍ଥନ ପାଇଁ, ଭବିଷ୍ୟତକୁ ଏକ ନିର୍ଦ୍ଦିଷ୍ଟ ଆଲୋକ ଦେଖାଇବା ପାଇଁ ଜାତିର ପ୍ରବାଦ ପୁରୁଷ ଏବଂ ଉତ୍ସର୍ଗୀକୃତ ଆତ୍ମା ମାନଙ୍କର ସ୍ମୃତିଚାରଣର ଆବଶ୍ୟକତା ଦେଖାଯାଇଥାଏ । ଏହି କ୍ରମରେ ପ୍ରଫେସର ସାହୁଙ୍କ ସୃଷ୍ଟି ପ୍ରୟାସ । ସେମାନେ କେତେବେଳେ ମହାଭାରତୀୟ ଚେତନାର ଯୋଗ୍ୟତମ ପ୍ରତିନିଧି ତ କେତେବେଳେ ଉତ୍କଳୀୟ ସଂସ୍କୃତି, ଐତିହ୍ୟ, ପରଂପରାର ଜାଗ୍ରତ ଦିଶାରୀ । ସେମାନଙ୍କ ଭିତରେ ଜାତିର ପିତା ମହାତ୍ମା ଗାନ୍ଧିଙ୍କର ସ୍ୱପ୍ନ ଓ ସାଧନର ଭିତ୍ତିରେ ଆମେ, ଛାତ୍ରଛାତ୍ରୀ, ସାଧାରଣ ଜନତା ।

ଏ ପ୍ରବଂଧରେ ଗାମ୍ଭୀର୍ଯ୍ୟ, ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ଭଳି ଶାସ୍ତ୍ରୀୟ ବୈଶିଷ୍ଟ୍ୟ ଯେତେ ପରିମାଣରେ ଦେଖାଯାଏ ନାହିଁ, ସେତେପରିମାଣରେ ଦେଖାଯାଏ ଭାଷାର ଅତୁଳନୀୟ ଆବେଗିକ ପ୍ରୟୋଗ, ଭାବର ମାର୍ମିକ ପ୍ରସାରଣ, ଏବଂ ପ୍ରକାଶ ଭଙ୍ଗୀର ଆତ୍ମିକ ଋଜୁତା । କାରଣ ସେ ସଚେତନ ଥିଲେ- ତାଙ୍କର ପାଠକୀୟ ପରିଧି ପରିବ୍ୟାପ୍ତ

ହେଲେ ହେଁ ପତ୍ରିକାଟି ଗୋଟିଏ ବିଦ୍ୟାଳୟର ମୁଖପତ୍ର । ଏ କ୍ଷେତ୍ରରେ ନୈତିକତା, ଜୀବନ ବଂଚିବାର ସ୍ୱପ୍ନ ଓ ସଂକଳ୍ପ ବଖାଣିବାର ଆବଶ୍ୟକତା ଅଧିକ । ଏଭଳି ଏକ ସ୍ୱତନ୍ତ୍ର ପରିବେଶକୁ ଆଖିରେ ରଖି ପ୍ରବଂଧ ରଚନାର ଏ ଦକ୍ଷତା ବିରଳ ।

ମହାଭାରତୀୟ ଆଧ୍ୟାତ୍ମିକ ଚିନ୍ତନର ଅନ୍ୟଜଣେ ସତ୍ତା-ଠାକୁର ଅଭିରାମ ପରମହଂସ । ତାଙ୍କ ଉପରେ ଆଧାରିତ ପ୍ରବଂଧ 'ଠାକୁର ଅଭିରାମ ଦର୍ଶନ'-ଏକ ବରାଦୀ ପ୍ରବଂଧ । କିନ୍ତୁ ପ୍ରବଂଧରେ ବ୍ୟବହୃତ ଭାଷାର ମାଧୁର୍ଯ୍ୟ, ଭାବର ହୃଦୟ ବିସ୍ତାର କ୍ଷମତା, ଉପସ୍ଥାପନାରେ ରହସ୍ୟପୂର୍ଣ୍ଣ ତନ୍ମୟତା ଏବଂ ପ୍ରବଂଧର ଶିକ୍ଷଣୀୟ ଆବଶ୍ୟକତା ପ୍ରଫେସର ସାହୁଙ୍କର କୁଶଳତାର ପରିଚୟ ଦିଏ । ସରଳ ଓ କର୍ମବହୁଳ ଶିକ୍ଷକର ଜୀବନ ଓ ଜୀବିକା ଭିତରେ ଆତ୍ମ ଅନୁସନ୍ଧାନ ଓ ଆତ୍ମଦର୍ଶନର ଏ ପ୍ରଜ୍ଞା ଓ ପ୍ରଚୋଦନା ଯେ କେବଳ ଜଣେ ଦରଦୀ ବ୍ୟକ୍ତିତ୍ୱର ସ୍ୱାଧୀକାର-ଏହା କହିବା ବାହୁଲ୍ୟ ମାତ୍ର ।

ପୁଣି ଶ୍ରୀରାମଚନ୍ଦ୍ର ଭଂଜ ଦେବ-ଆଧୁନିକ ଉତ୍କଳର ଅନ୍ୟତମ ନିର୍ମାତା । ପୁଣ୍ୟଶ୍ଳୋକ, ପ୍ରାତଃ ସ୍ମରଣୀୟ । ରାଜକୀୟ ଆଭିଜାତ୍ୟ ଓ ସ୍ୱାଭିମାନର ଅନ୍ତରାଳରେ ଜାତୀୟ ସଂରଚନାରେ ବ୍ୟସ୍ତ ଜଣେ ଅନନ୍ୟ ସାଧକ । ଓଡ଼ିଶାର ସାହିତ୍ୟ, ସଂସ୍କୃତି, ଶିକ୍ଷା, ସ୍ୱାସ୍ଥ୍ୟସେବା ଇତ୍ୟାଦି ପ୍ରତି ଅତ୍ୟନ୍ତ ସଚେତନ ଜଣେ ବ୍ୟତିକ୍ରମ ପୁରୁଷଙ୍କୁ ଆଧାର କରି ତାଙ୍କର ଦୁଇଟି ପ୍ରବଂଧ । ଏ ପ୍ରବଂଧ ଦ୍ୱୟର ପ୍ରସ୍ତାବନା, ବ୍ୟାପ୍ତି ଏବଂ ପ୍ରକାଶ ଶୈଳୀ, ପୂର୍ବୋଲ୍ଲିଖିତ ପ୍ରବଂଧଠାରୁ ସଂପୂର୍ଣ୍ଣ ପୃଥକ । କାରଣ ଏ କ୍ଷେତ୍ରରେ ପାଠକ ଭିନ୍ନ । ପରିସର ଭିନ୍ନ ଏବଂ ପ୍ରକାଶର ଅବକାଶ ଭିନ୍ନ ।

ପ୍ରଫେସର ସାହୁଙ୍କର ଦ୍ୱିତୀୟ ପର୍ଯ୍ୟାୟର ପ୍ରବଂଧ-ଓଡ଼ିଆ ଭାଷା ଓ ଲିପି ସଂକ୍ରାନ୍ତୀୟ ପ୍ରବଂଧ । ଦୁଇଟିଯାକ ପ୍ରବଂଧ ଗବେଷଣାଧର୍ମୀ ପ୍ରବଂଧ । ଓଡ଼ିଆ ଭାଷା ଓ ଲିପି ସଂପର୍କୀୟ ଅଧ୍ୟୟନ ଓ ଗବେଷଣାର ଆବଶ୍ୟକତା, ତାତ୍ପର୍ଯ୍ୟ, କ୍ଷେତ୍ର, ଯୁକ୍ତିଯୁକ୍ତତା, ବାଧାବିଘ୍ନ ଏବଂ ସର୍ବୋପରି କ୍ରମଶଃ ସାଧାରଣ ଶିକ୍ଷିତ ଓ ଉଚ୍ଚଶିକ୍ଷିତଙ୍କ ଚିନ୍ତା ଓ ଚୈତନ୍ୟରୁ ଯେପରି ଓଡ଼ିଆ ଭାଷା ଓ ଲିପି ସଂପର୍କୀୟ ଜ୍ଞାନ ଓ ସଚେତନତା ଲୁପ୍ତ ହୋଇଆସୁଛି, ତାହାକୁ ପୁନରୁଜ୍ଜୀବିତ କରିବାର ଏକ ସାର୍ଥକ ପ୍ରୟାସ ଏହି ପ୍ରବଂଧ ମାଧ୍ୟମରେ କରାଯାଇଛି । ପୁଣି ଏପରି ଶୈଳୀରେ କରାଯାଇଛି ଯେ-ପାଠକ ଥରେ ପ୍ରବଂଧ ଆରମ୍ଭ କରିବାକୁ ପ୍ରୟାସ କଲେ, ତା'ର ଓଡ଼ିଆ ଭାଷା ଓ ଲିପି ସଂପର୍କୀୟ ସାଧାରଣ ଓ ଆବଶ୍ୟକୀୟ ଉତ୍ସୁକତା କ୍ରମେ ଆଗ୍ରହ ଓ ଜ୍ଞାନରେ ରୂପାନ୍ତରିତ ହୁଏ । ପ୍ରଫେସର ସାହୁଙ୍କର ଅଗଣନ ଭାଷାତାତ୍ତ୍ୱିକ ବିଶ୍ଳେଷଣ ଧର୍ମୀ ପୁସ୍ତକ ଓ ପ୍ରବଂଧ ଭିତରୁ ଏ ଦୁଇ ପ୍ରବଂଧର ତାତ୍ତ୍ୱିକ ପ୍ରୟୋଜନ ବାରିହୋଇପଡ଼େ । ଅତ୍ୟନ୍ତ ଶୁଷ୍କ ବିଷୟବସ୍ତୁକୁ ଆପାତଃ ଅଚେତନ ରାଜ୍ୟରୁ ଚେତନ ସ୍ତରରେ ସ୍ୱଚ୍ଛନ୍ଦ ବିଚରଣ କରିବାର ଯୋଗ୍ୟତା ଦେବାର ତାଙ୍କର ଅଶେଷ ଦକ୍ଷତା ହିଁ ଏହାଦ୍ୱାରା ପ୍ରମାଣିତ ।

ଏ ପର୍ଯ୍ୟାୟର ଅନ୍ୟଏକ ପ୍ରବଂଧ ହେଲା ଏକ ତାତ୍ତ୍ୱିକ ପ୍ରବଂଧ । ସାର୍ବଜନୀନ ଦୁର୍ଗାପୂଜାର ତାତ୍ପର୍ଯ୍ୟ, ମହନୀୟତା ଓ ଲୋକଚିତ୍ତରେ ତା'ର ଅନାହତ ପ୍ରଭାବର ସ୍ୱରୂପ ଉନ୍ମୋଚନରେ ସଫଳ । ଅତ୍ୟନ୍ତ ଉଚ୍ଚକୋଟୀର ଉପସ୍ଥାପନ ଶୈଳୀ, ବିଷୟ ବିନ୍ୟାସ, ତାଙ୍କର ପ୍ରବଂଧର ଅନ୍ୟତମ ବୈଶିଷ୍ଟ୍ୟ ।

ତୃତୀୟ ପର୍ଯ୍ୟାୟର ପ୍ରବଂଧ ହେଲା ସ୍ମୃତିଚାରଣ । ବର୍ତ୍ତମାନର ଏକ ସଂକଟମୟ କାଳରେ ଛିଡ଼ା ହୋଇ ଅତୀତର ରୋମନ୍ଥନ ଏବଂ ଏହି କ୍ରମରେ ଭବିଷ୍ୟତର ପ୍ରସ୍ତୁତି ପାଇଁ ପ୍ରୟାସ ସଂପର୍କୀୟ ଏକ ରୋମାଣ୍ଟିକ ଚେତନା ସଂବଂଳିତ ପ୍ରବଂଧ ''ମମତାର ମହାମନ୍ଦିର'' । ଏ ପ୍ରବଂଧରେ ମୋହାଚ୍ଛନ୍ନ ଜଣେ ଉଚ୍ଛଳ ଜୀବନଲୋଭୀ ବ୍ୟକ୍ତିସତ୍ତାର ସଂଚରଣକୁ ଅନୁଭବ କରିହୁଏ । ଜଣେ ଶାସ୍ତ୍ରୀୟ ଜ୍ଞାନୀ ବ୍ୟକ୍ତିତ୍ୱର ଅଧିକାରୀ, ଭାଷା ଚର୍ଚ୍ଚାର ପାଣ୍ଡିତ୍ୟରେ ପରିପୂର୍ଣ୍ଣ ଜଣେ ବ୍ୟକ୍ତି, କିମ୍ବା ଶୁଷ୍କ ଦାର୍ଶନିକ ସିଦ୍ଧାନ୍ତ ଓ ଜୀବନ ତତ୍ତ୍ୱକୁ ନେଇ ସୁଖପାଉଥିବା ଜଣେ ବ୍ୟସ୍ତ କାରିଗର ଭିତରେ ଯେ ଏତେ ପ୍ରାଣୋଚ୍ଛଳତା, ଏତେ ଆବେଗିକ ତାରଲ୍ୟ, ଏବଂ ପ୍ରବୃଦ୍ଧ ତାରୁଣ୍ୟ ବିଦ୍ୟମାନ-ତାହା ବେଳେବେଳେ ପାଠକକୁ ଚକିତ କରାଏ ।

ଏ ସବୁ ପ୍ରବଂଧର ପରିଧିରେ କିନ୍ତୁ ବାରିହୋଇପଡ଼େ । ତାଙ୍କ ପ୍ରବଂଧର ପରିବେଶ ଉପଯୋଗୀ ବିଷୟ ନିର୍ବାଚନ, ଭାଷା ପ୍ରୟୋଗ, ସ୍ୱଚ୍ଛ ଯୁକ୍ତିବାଦିତା, ଯାହା ପାଠକର ଅବବୋଧକୁ ଆପ୍ଲୁତ କରେ । ଜଣେ ବହୁପାଠୀ ପ୍ରାବଂଧିକ ଭାବରେ ଯେ ପ୍ରଫେସର ସାହୁ ସୁପରିଚିତ ଏହା କହିବା ଏଠାରେ ନିଷ୍ପ୍ରୟୋଜନ । କାରଣ ତାଙ୍କର ପ୍ରତ୍ୟେକ ପ୍ରବଂଧ ତା'ର ସ୍ୱରୂପ ବହନ କରେ । ଯେତିକି ଜାଣିବା, ଠିକ୍ ଜାଣିବା, ଯେତିକି କହିବା ଠିକ୍ କହିବା, ଯେତିକି ଲେଖିବା ନିର୍ଭୁଲ ଲେଖିବା ବୋଧହୁଏ ତାଙ୍କର ଜୀବନର ମନ୍ତ୍ର ଥିଲା । ତେଣୁ ଏକ ବ୍ୟାପକ ଜୀବନ ସଂପୁଟରେ ସାଇତା ତାଙ୍କର ଅନନ୍ୟ ଅଭିଜ୍ଞତାର ନିଷ୍କର୍ଷ ଯେପରି ପ୍ରତ୍ୟେକ ପ୍ରବଂଧରେ ପ୍ରତୀକିତ ହୋଇଯାଇଛି, ଛୁଇଁ ଯାଇଛି ସୌଖୀନ ପାଠକ କିମ୍ବା ଗମ୍ଭୀର ଗବେଷକର ଚେତନାକୁ । ସବୁ ଅପୂର୍ଣ୍ଣତାକୁ ଏକ ସହଜ ପୂର୍ଣ୍ଣତା ଦେବାର ପ୍ରୟାସରେ ସେ ସଦା ସତର୍କ ଓ ସଫଳ ସ୍ରଷ୍ଟା ।

ତାଙ୍କର ଏଇ ପ୍ରତିନିଧି ସ୍ଥାନୀୟ ପ୍ରବଂଧଗୁଡ଼ିକରେ ଏହାର ଯଥାଯଥ ସତ୍ୟତା ଉପଲବ୍ଧ । ଉତ୍କଳର ଜଣେ ପ୍ରଥିତଯଶା ପ୍ରବଂଧ ଶିଳ୍ପୀ ଭାବରେ ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ଯଥାର୍ଥରେ ମର୍ଯ୍ୟାଦାବନ୍ତ ଓ ବୁଦ୍ଧିମନ୍ତ କରିପାରିଛନ୍ତି । ସାରସ୍ୱତ ସାଧନାର ଔପଚାରିକ ସ୍ୱୀକୃତିଠାରୁ ବହୁ ଉର୍ଦ୍ଧ୍ୱରେ ବିଚରଣ କରିଥିବା ପ୍ରଫେସର ବାସୁଦେବ ସାହୁ ବାସ୍ତବରେ ଜଣେ ଅନନ୍ୟ ପ୍ରାବଂଧିକ ଏବଂ ଉତ୍କଳମାତାର ଦୁର୍ଲଭ ସଂପଦ ।।



ପ୍ରାଧ୍ୟାପକ, ବିଜେବି କଲେଜ

# କବି ବାସୁଦେବ ସାହୁ : ଏକ ମୁଗ୍ଧ ଅନୁଭବ

ଡଃ ସଂଘମିତ୍ରା ମିଶ୍ର

ପ୍ରଫେସର ବାସୁଦେବ ସାହୁ ଏକ ବହୁମୁଖୀ ପ୍ରତିଭା । ପ୍ରାବନ୍ଧିକ, ସମାଲୋଚକ ତଥା ଭାଷାତତ୍ତ୍ୱବିଦ୍ ଭାବରେ ତାଙ୍କର ଅଜସ୍ର ସୁନାମ ରହିଛି । ସେ ଛାତ୍ରବତ୍ସଳ ଶିକ୍ଷକ, ସଚେତନ ଅଭିଭାବକ, ନିରଳସ ଗବେଷକ ତଥା ନିରବ ବାଣୀସାଧକ । ଓଡ଼ିଆ ଭାଷା ସାହିତ୍ୟର ଏହି ମହାରଥି ଯେ ଜଣେ ତରୁଣ କବି ଏକଥା ଖୁବ୍ ଅଳ୍ପଲୋକ ଜାଣନ୍ତି । ସମାଲୋଚକର ଭୂମିକାରେ ଦୀର୍ଘଦିନ ସଫଳ ଅଭିନୟ କରି ଖ୍ୟାତିର ଶିଖର ସ୍ପର୍ଶ କରିଥିବା ଏହି ସ୍ରଷ୍ଟାପୁରୁଷ କବିତାର ମଧ୍ୟ ଯଥେଷ୍ଟ ଲାଳନ କରିପାରିଛନ୍ତି । ଟାଙ୍ଗର ଭୂମି ଭିତରେ ବୁନ୍ଦାବୁନ୍ଦା ସବୁଜ ଘାସ ଭଳି କବିତା ତାଙ୍କ ଜୀବନଧାରାକୁ ସ୍ମୃତିସ୍ନିଗ୍ଧ କରିଛି ଓ କେବେ ଜୀବନଦର୍ଶନର କଠିନ ତଥା ଗଭୀର ଭାବକୁ ସହଜ ଭାବରେ ପ୍ରକାଶ କରିବାର ପ୍ରବଣତା ମଧ୍ୟ ଦେଇଛି ।

ପ୍ରଫେସର ବାସୁଦେବ ସାହୁ ଅନ୍ତଃକରଣରେ ଦରଦୀ କବିଟିଏ, ଯିଏକି ଅଧ୍ୟାପନା ଜୀବନରେ ଛାତ୍ରଛାତ୍ରୀଙ୍କର ପ୍ରତିବର୍ଷ ସ୍ୱାଗତ ଓ ବିଦାୟକାଳୀନ ସମ୍ବର୍ଦ୍ଧନା ଉତ୍ସବରେ ନିଜସ୍ୱ ସୁଲିଖିତ ନୂତନ କବିତାଟିଏ ଅବଶ୍ୟ ପାଠ କରିଥାଆନ୍ତି ତାହା ସମଗ୍ର ପରିବେଶକୁ ଭାବମୟ କରିଦିଏ । କେବଳ କବିତା ଲେଖିବା ନୁହେଁ, କବିତା ଆଲୋଚନା ଓ ସମାଲୋଚନାରେ ତାଙ୍କର ରୁଚି ଥିଲା । ସେହି ରୁଚିର ଫଳଶ୍ରୁତି ହେଉଛି ତାଙ୍କର ପୁସ୍ତକ ''ଆଧୁନିକ ସାହିତ୍ୟ ଭାଷ୍ୟ'' ଏତଦ୍‌ବ୍ୟତୀତ ଛାତ୍ରଛାତ୍ରୀମାନଙ୍କୁ କବିତା ଲେଖିବାକୁ ଉତ୍ସାହିତ କରିବା ଓ ସେମାନଙ୍କର କଞ୍ଚାହାତର କବିତାକୁ ନିର୍ମମ ଭାବରେ କାଟି ଯୋଡ଼ି ସଂଶୋଧନ କରି ସୁନ୍ଦର କବିତାମାନ ସୃଷ୍ଟି କରିବାରେ ତାଙ୍କର ଅସୀମ ଆଗ୍ରହ ଥିଲା । ଛାତ୍ରଛାତ୍ରୀମାନଙ୍କ କବିତାର ସେ ଥିଲେ ଆଗ୍ରହୀ ପାଠକ । ପତ୍ର ପତ୍ରିକାରେ କାହାର କବିତାଟିଏ ବାହାରିଲେ ସେ ତାକୁ ଉଚ୍ଛ୍ୱସିତ ପ୍ରଶଂସା କରି ତାର ମନୋବଳ ବଢ଼ାଉଥିଲେ ।

ତାଙ୍କର ଏକମାତ୍ର କବିତା ସଂକଳନ 'ସଂବିତ' ୧୯୭୨ ରେ ପ୍ରକାଶିତ । ଏହି ସମୟରେ କବିତାରେ ଅନେକ ନୂତନ ଚିନ୍ତାଧାରା ଆତ୍ମପ୍ରକାଶ କରିଥିଲା । ତାଙ୍କର ସମକାଳୀନ କବିମାନେ ହେଲେ ସୌଭାଗ୍ୟ କୁମାର ମିଶ୍ର, ଦୀପକ ମିଶ୍ର । ସେତେବେଳକୁ ଗୁରୁପ୍ରସାଦ

ମହାନ୍ତି ଓ ସଚ୍ଚି ରାଉତରାୟ ଓଡ଼ିଆ କବିତା କ୍ଷେତ୍ରରେ ପ୍ରତିଷ୍ଠିତ । ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ଚିନ୍ତାମଣି ବେହେରା, ବେଣୁଧର ରାଉତ, ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) ପ୍ରଭୃତି କବିତା ଭାବରେ ବେଶ୍ ପାଠକୀୟ ସ୍ୱୀକୃତି ଲାଭ କରିଥାଆନ୍ତି । ତେଣୁ ବାସୁଦେବ ସାହୁ କବିତା ରଚନା ଦ୍ୱାରା ଗୃହୀତ ହେବାର ସମୟ । ବୌଦ୍ଧିକତା, ଦାର୍ଶନିକତା ତଥା ଜୀବନର ସୂକ୍ଷ୍ମ ବ୍ୟବଚ୍ଛେଦ କରି ତାହାକୁ ଆମୃଣ୍ଟ କରିବାର ସମୟ । ବାସୁଦେବ ସାହୁ ଯୌବନର ଆଦ୍ୟ ପାଦରେ କବିତା ରଚନାରେ ହାତ ଦେଇଥିଲେ ହେଁ ଏହିସବୁ ସ୍ୱାତନ୍ତ୍ର୍ୟ ସଂପର୍କରେ ସଚେତନ ଥିଲେ । ସ୍ୱାଧୀନତା ପରବର୍ତ୍ତୀ କାଳରେ ସାହିତ୍ୟର ସକଳ ବିଭାଗରେ ଯେଉଁ ଦ୍ରୁତ ପରିବର୍ତ୍ତନ ଆରମ୍ଭ ହୋଇଥିଲା ୧୯୬୦ ପରେ ତାହା କ୍ରମ ଉତ୍ତରିତ ହୋଇ ୧୯୮୦ ବେଳକୁ ପାଠକର ଯଥୋଚିତ ଶ୍ରଦ୍ଧା ସମ୍ମାନ ତଥା ମର୍ଯ୍ୟାଦାର ଅଧିକାରୀ ହୋଇପାରିଥିଲା ।

କବି ବାସୁଦେବ ସାହୁ ନିଜ କବିତା ସଂପର୍କରେ କୁହନ୍ତି-'ମୋ କବିତା ସୃଷ୍ଟି ବିଭିନ୍ନ କାଳରେ, ବିଭିନ୍ନ ସ୍ଥାନରେ, ବିଭିନ୍ନ ପରିସ୍ଥିତିରେ । ବ୍ୟକ୍ତିଗତ ଜୀବନରେ କେତେ ବେଦନା ଅଥବା ଆନନ୍ଦର ମୁହୂର୍ତ୍ତ ମୋ ପାଇଁ ସ୍ମୃତିମନ୍ତ ହୋଇଉଠିଛି । କେତେ ବେଦନାରେ କେତେ ଆଶ୍ୱାସନାର ସ୍ୱର ପ୍ରାଣରେ ଧ୍ୱନିତ ହୋଇଛି । ତେଣୁ ମୋର କବିତା ଭିତରୁ କେତେକ ଦୁଃଖବାଦୀ ଓ କେତେକ ରୋମାଣ୍ଟିକ୍ ଓ ଆଦର୍ଶଧର୍ମୀ (ସଂବିଦ୍-ମୋ କବିତା ସୃଷ୍ଟିର ପ୍ରେରଣା ଓ ପୃଷ୍ଠଭୂମି) ନିଜ କବିତାକୁ ନିଜେ ସମାଲୋଚକର ଦୃଷ୍ଟିରେ ଦେଖି ପରିଚ୍ଛନ୍ନ ଭାବରେ ବିଭାଗୀକରଣ କରିଥିବା ଏହି କବି ଆଦ୍ୟଯୌବନରେ ମଧ୍ୟ ପରିପକ୍ୱ ବିଚାରଧାରା ନେଇ କବିତା ଲେଖିଛନ୍ତି । 'ଶୂନ୍ୟ ଦେହଳୀର ଇଲାକା'' ଭାବରେ ନିଜ କବିତାକୁ ସେ ପରିଭାଷିତ କରିଛନ୍ତି । 'ସଂବିଦ୍'ରେ ପ୍ରକାଶିତ କବିତାଗୁଡ଼ିକ ୧୯୫୨ରୁ ୧୯୭୨ ମଧ୍ୟରେ ତାଙ୍କ ଲିଖିତ କବିତାଗୁଡ଼ିକର ସଂକଳନ । ଏହି କବିତାଗୁଡ଼ିକ ତତ୍‌କାଳୀନ ପତ୍ରପତ୍ରିକା ଯଥା ଦୀପ୍ତି, ସାଗରିକା, ମରାଳିକା, ଭଂଜଭାରତୀ, ବଡ଼ଜେନା ସଂକଳନ, ଫୁଲଫଗୁଣ ସଂକଳନ, ବାଣୀଚିତ୍ର, ପ୍ଲାବନ, ସାନ୍ତ୍ୱନା, କଳିଙ୍ଗ, ଜନସାହିତ୍ୟ, ଆସନ୍ତାକାଲି ଓ ସାମ୍ମୁଖ୍ୟ ଭଳି ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା ବୋଲି କବି ପୁସ୍ତକ ପ୍ରକାଶନ ଅବସରରେ ସେ ସମସ୍ତ ପତ୍ରପତ୍ରିକାର ସଂପାଦକମାନଙ୍କୁ କୃତଜ୍ଞତା ଜଣାଇଛନ୍ତି । ଏହା ସହିତ ତାଙ୍କୁ ପ୍ରଭାବିତ କରିଥିବା ସମକାଳୀନ କବିମାନଙ୍କୁ ମଧ୍ୟ ସେ ଶ୍ରଦ୍ଧାର ସହିତ ସ୍ମରଣ କରିଛନ୍ତି । ଏହି ବହୁପାଠୀ ବ୍ୟକ୍ତିତ୍ୱ ଯେ ଷାଠିଏ ଦଶକରୁ ଓଡ଼ିଆ କବିତା ରାଜ୍ୟରେ ଘଟୁଥିବା ପରିବର୍ତ୍ତନ ପ୍ରତି ସଚେତନ, ଏହା 'ସଂବିଦ୍'ର ମୁଖବନ୍ଧ ପାଠ କଲେ ହିଁ ଜଣାଯାଏ ।

କବିଙ୍କର ରହସ୍ୟମୟୀ ଭାବନା କବିତାର ଛତ୍ରେଛତ୍ରେ ପ୍ରତିଫଳିତ । କେଉଁ ରହସ୍ୟମୟ ସତ୍ତାକୁ ଖୋଜି ଖୋଜି ସେ ନିଜକୁ ରହସ୍ୟର ଅଂଶ ବିଶେଷ ଭାବରେ ଗ୍ରହଣ କରିନେଇଛନ୍ତି ।





ଯୁଗଯୁଗ ଧରି ସୃଷ୍ଟିର ରହସ୍ୟ ଓ ମନୁଷ୍ୟ ଜୀବନର ରହସ୍ୟ କବିକୁ କବିତା ରଚନା ପାଇଁ ପ୍ରେରଣା ଯୋଗାଇଛି । 'ତତ୍-ତ୍ୱଂ-ଅହମ୍' କବିତାରେ ଏହି ସ୍ୱର କିଭଳି ପ୍ରଭାବଶାଳୀ ଦେଖିବା-

''ମୁଁ ତ କେବେ ମିଥ୍ୟା ନୁହେଁ, ସତ୍ୟ ନୁହେଁ
ମିଥ୍ୟା ଅବା ସତ୍ୟ କିଛି ନୁହେଁ
ଏ ସବୁର ସମ ସମନ୍ୱୟ
ଅଣାକାର, ନାନାକାର ବ୍ୟକ୍ତରୁ ଅବ୍ୟକ୍ତ
ଅସ୍ତରୁ ଉଦୟ x x x ହେ ଭୂମା ଅସତ୍ୟ ସତ୍ୟ
ବିଶ୍ୱାସ ଓ ଅବିଶ୍ୱାସ ଆଶ୍ଚର୍ଯ୍ୟ ସମ୍ରାଟ
ଆଦି ଓ ଅନାଦି ଜ୍ୟୋତି ଜ୍ଞାତ ଓ ଅଜ୍ଞାତ
ପରସ୍ପର ଦ୍ୱୈତଭାବେ ବିରୋଧ ଅନ୍ୱୟେ
ପରସ୍ପର ବିନିମୟେ ଅବା ସନ୍ନିକ୍ଷୟେ
ହୁଅ ଏକ, ଏକରୁ ଅନେକ
ଅନେକ ଅନେକ ଅନ୍ୟ, ଅନ୍ୟରୁ ଅନନ୍ୟ''

ଏହି ପଦ ଭିତରେ ଆମେ ଯେଉଁ କବିଟିକୁ ଦେଖୁ ସେ ସ୍ରଷ୍ଟାରୁ ଦ୍ରଷ୍ଟାରେ ରୂପାନ୍ତରିତ ହେଉଥାଏ ଓ ଜୀବନର ଗୂଢ଼ ରହସ୍ୟ ହୃଦୟଙ୍ଗମ କରିବାର ପ୍ରୟାସ ଜାରି ରଖିଥାଏ । ଏକ ବୃହତ୍ତର ଶକ୍ତିର ଅଦୃଶ୍ୟ ହସ୍ତକ୍ଷେପ ମଣିଷର ସବୁ ବିଚାରକୁ ନିୟନ୍ତ୍ରଣ କରିଥାଏ । ସେହି ବୃହତ୍ତର ଶକ୍ତି ହୋଇପାରନ୍ତି ଭାଗ୍ୟ ବା ଈଶ୍ୱର । ତଥାପି କବି ଜୀବନକୁ ଶ୍ରଦ୍ଧା କରନ୍ତି ଓ ସକଳ ଦୁଃସ୍ଥିତି ଭିତରେ ଥାଇ ବଂଚିବାର ସାଧନା ଜାରି ରଖନ୍ତି ।

କବିଙ୍କ ପାଇଁ ଅତୀତର ସ୍ମୃତି ଭିତରେ ଦାରିଦ୍ର୍ୟ ଅଛି । ଅଛି ରୋମାଣ୍ଟିକ୍ ଭାବାକୁଳତା । ପ୍ରେମ ଅଛି ମାତ୍ର ତାହା ଉତ୍ତରଳ ନୁହେଁ ସମାହିତ । ଅନେକତ୍ର ସେଠାରେ ପ୍ରେମ ଉତ୍ତାନପାଦ ହୋଇ ଭକ୍ତି ଓ ସମର୍ପଣର ମୁଦ୍ରାରେ ଉଦ୍ଭାସିତ । ଅତୀତର ରୋମନ୍ଥନରେ କବି ଆମ୍ବକଷି, ମହୁମାଛି, କୋଇଲି, ପ୍ରଜାପତି କଙ୍କିକୁ ମନେପକାନ୍ତି ମାତ୍ର ବସନ୍ତର ଅପେକ୍ଷାରେ ସେ ନିଜେ କସ୍ତୁରୀମୃଗ ପାଲଟିଯାଆନ୍ତି । ବିଜନତା ସହିତ ସଂପର୍କିତ ହେବା ପରେ କବି ନିଜର ଆଉ ଏକ ପରିଚୟ ଖୋଜି ପାଆନ୍ତି । ବିଜନତା ପ୍ରତ୍ୟୟର ପବନ ନେଇ ନିଃଶବ୍ଦ ସମୁଦ୍ରର ଶଙ୍ଖ ଆଉ ଶାମୁକାରେ ସାହାନାଇ ବଜାଇଥାଏ । ଅର୍ଥାତ୍ ଆଧୁନିକ ମଣିଷ ନିଃସଂଗ ଓ ନିଃଶବ୍ଦ ସମୁଦ୍ର କୂଳରେ ଏକାକୀ ସାମାଜିକ ବ୍ୟବସ୍ଥା ଓ ଅବଶିଷ୍ଟ ସ୍ମୃତି ଭିତରେ ଦୋଦୁଲ୍ୟମାନ ସ୍ଥିତିରେ ଠିଆ ହୋଇଥିବାର ଅନୁଭବ କବିଙ୍କର ହୋଇଛି । ମାଟି ଓ ଆକାଶକୁ ଯୋଡ଼ିବାର ପ୍ରୟାସ କିନ୍ତୁ ତାର ସରୁନାହିଁ ବରଂ ଆହୁରି ଆଗ୍ରହ ନେଇ ସେ ମାଟି ସହିତ ଆକାଶ ସ୍ଥିତି

ସହିତ ପ୍ରତ୍ୟୟକୁ ମୋଡ଼ି ଚାଲିଛି ।

କବିତା ସବୁବେଳେ କବିର ହୃଦୟ କନ୍ଦରରୁ ଝରିଯାଉଥିବା ଗଙ୍ଗୋତ୍ରୀ । କବିଟିଏ ନିଜର ପୂର୍ବଜ ସ୍ରଷ୍ଟାପୁରୁଷମାନଙ୍କର ରଚନା ଦ୍ୱାରା ଅନୁପ୍ରେରିତ ହୋଇଥାଏ । ହେବା ମଧ ସ୍ୱାଭାବିକ । ବୈକୁଣ୍ଠନାଥ ଓ କୁନ୍ତଳାକୁମାରୀଙ୍କ ଭଳି କବି ବାସୁଦେବଙ୍କ ସୃଷ୍ଟି ସଂପଦ ଭିତରେ ଅତିନ୍ଦ୍ରିୟର ସତ୍ତା ଉପଲବ୍ଧି କରିହୁଏ । କବିଙ୍କ ଦୃଷ୍ଟିରେ-

''ମୁଁ ଏକ ସଶବ୍ଦ ସ୍ରୋତ ବହିଯାଏ ନିଃଶବ୍ଦ ସମୁଦ୍ରେ / ମୁଁ ନିଜେ ସମୁଦ୍ର ।
ଯେତେ ନଦୀ, ଯେତେ ହ୍ରଦ, ମେଘ ଓ ମୌସୁମୀ ଯେତେ
ସ୍ୱୟଂଭୂତି ସ୍ୱୟଂଭୂବିଳାସ
ମୁଁ ନିଜେ ତା ସଂପୂର୍ଣ୍ଣ ପ୍ରକାଶ'' (ତତ୍-ତ୍ୱଂ ଅହମ୍)

କେବେ ନିଜକୁ ସ୍ରୋତ ବା କେବେ ସମୁଦ୍ର ମନେକରୁଥିବା କବି ଭିତରେ ଆତ୍ମା ଓ ପରମାତ୍ମା ସଂପର୍କୀୟ ଭାବନା ବେଶ୍ ସ୍ପଷ୍ଟ ତଥା ପ୍ରଭାବଶାଳୀ । ସେ ଏହିଭଳି ଇଲାକାଟିଏ ଲୋଡ଼ନ୍ତି ଯେଉଁଠି ବୟସ ଓ ବାସନାମାନେ ସୂର୍ଯ୍ୟତପସ୍ୟା କରୁଥିବେ ଆଉ ମହାକାଳ ସୃଜନର ମନ୍ତ୍ରପାଠ କରୁଥିବ ।

'ସଂବିଦ୍'ର କେତୋଟି କବିତାରେ ବାଲ୍ୟ ଓ କୈଶୋରର ମଧୁର ସ୍ମୃତି ଉଜ୍ଜୀବିତ ଓ ଅନ୍ୟକେତୋଟି କବିତାରେ ଚିନ୍ତାଶୀଳ ପ୍ରାଜ୍ଞ ମଣିଷର ଜୀବନ ଦୃଷ୍ଟି ବିଳସିତ । 'ସଂବିତ' ଶୀର୍ଷକ କବିତାରେ ସେ ସ୍ପଷ୍ଟଭାବରେ କୁହନ୍ତି ଯେ-

''ମୁଁ ଚାହୁଁଚି ବଂଚିବାର ପଣନେଇ
ବଂଚିବି ମୁଁ ଶୋଣିତ କାବ୍ୟରେ
ତୁମେ ଯାଅ ବଣଭୋଜି କରି
ଛାଇରେ ନାଆରେ ବସି ଗୀତ ଗାଅ ଚୈତ୍ରର ସଂଗୀତ
ମୁଁ ଏଠି ଗାଇବି ବସି କଣ୍ଟକର ଶୀର୍ଣ୍ଣ ସିଂହାସନେ
ମୋ ଜୀବନ ସାମ୍ରାଜ୍ୟର ଶତବ୍ୟଥା ବିଦ୍ରୋହର ଗୀତ''

କବିଙ୍କର ଜୀବନ ଯାତ୍ରାପଥ କଣ୍ଟକାକୀର୍ଣ୍ଣ । ସେ ସମଧର୍ମା ବନ୍ଧୁମାନଙ୍କଠାରୁ ସ୍ୱତନ୍ତ୍ର ଭାବରେ ବଂଚିତ । ସେଥିପାଇଁ ଚୈତ୍ରର ହାଲୁକା ମନଫୁଲାଣିଆ ଗୀତ ନୁହେଁ ସେ ବ୍ୟଥା ଓ ବିଦ୍ରୋହର ଗୀତ ହିଁ ଗାଇବେ । ବ୍ୟଥା ଓ ବିଦ୍ରୋହକୁ ଏକତ୍ର ବଂଚିବାର ମାର୍ଗ ଭାବରେ ଗ୍ରହଣ କରିନେଇଥିବା କବି ଚିରକାଳ ସଂଗ୍ରାମରେ ବିଶ୍ୱାସ କରିଛନ୍ତି । ପଥ ଯେତେ କଣ୍ଟକମୟ ହୁଏ ଚାଲିବାର ନିଶା ତାଙ୍କୁ ସେତିକି ସେତିକି ଘାରେ ।

ଭାଷା ପ୍ରୟୋଗରେ କବି ବାସୁଦେବ ସର୍ବଦା ବିଭିନ୍ନ ପରୀକ୍ଷା କରିଥାଆନ୍ତି । କ୍ଷତମାନେ ଜଳୁଥାନ୍ତି ଦିବସର ରଡ଼ନିଆଁ ତଳେ/ ଇଚ୍ଛାମାନେ ଲୁଚିଥାନ୍ତି ବ୍ରାହ୍ମଣଙ୍କ ଦୁର୍ବାସା ଆଖିରେ/

ରାତିହେଲେ ଇଚ୍ଛାମାନେ ଶୋଇଯାନ୍ତି ଗହମ ନିଦରେ (ନିଜସ୍ୱ) ମୁଡ଼ିମୁଆଁ ଖାଏ ଆଜି ବତୀଖୁଣ୍ଟ ତଳେ ବସି ନିଷ୍ପାପ ସଭ୍ୟତା, ଅଫିମ ରାଳିରେ ଓଦା ଶହଶହ ପ୍ରେମ ପାଣ୍ଡୁଲିପି, ଗେରୁଆ ବସ୍ତ୍ର ତଳେ ଯୁବତୀ ସନ୍ନ୍ୟାସିନୀର ଦୀର୍ଘଶ୍ୱାସ, ଶବ୍ଦର ସୁବର୍ଣ୍ଣ ହରିଣ, ନିତ୍ୟ ନୂଆ ସୋହାଗର ଲୁହ ପୋଛା ଭାଷା, ତମର ଫେରିବା ଶ୍ଳୋକେ ଉଚ୍ଛ୍ୱସିତ ଆକାଶର ଇନ୍ଦ୍ର-ଆଳବାଳ, ମାଆଙ୍କର ଶ୍ୟାମଳ ଇସାରା ଭଳି ଅଜସ୍ର ଅଣପାରଂପରିକ ପ୍ରୟୋଗରେ କବି ବାସୁଦେବଙ୍କର କବିପଣ ପ୍ରକାଶିତ ହୁଏ । କୁହାଯାଏ ଯେ କବିତ୍ୱ ଭିତରୁ କବିଙ୍କର ବ୍ୟକ୍ତିତ୍ୱ ସ୍ୱତଃ ଫୁଟିଉଠେ । ଯୌବନରେ ରଚିତ ଏହି କବିତାଗ୍ରନ୍ଥ ଭିତରୁ କବିଙ୍କର ଚିତ୍ତଚାଞ୍ଚଲ୍ୟ ଯେ ପରିସ୍ଫୁଟ ଏହ ସତ୍ୟ ମାତ୍ର ତା'ଠାରୁ ଅଧିକ ସତ୍ୟ ତାଙ୍କର ଦାର୍ଶନିକର ମୋହମୁକ୍ତ ଉଦାର ଜୀବନଦୃଷ୍ଟି । ଭାରତୀୟ ଆଦର୍ଶ ଓ ବିଭୁବୋଧର ସ୍ୱର ତାଙ୍କ କବିତାକୁ ବେଶ୍ ପ୍ରଭାବିତ କରିଛି । ତାଙ୍କର 'ଆତ୍ମରତି' କବିତାରୁ ଉଦାହରଣଟିଏ ।

''ତୁମେ ନାଁ ସେ ଛାଇ ପ୍ରଭୁ !
ସେଇ ଧ୍ୱନି ସେଇ ନଈ ନିଖିଳର ରୂପ ରୂପାନ୍ତର ?
ନିଜକୁ ବିଦୀର୍ଣ୍ଣ କରି ସିନ୍ଧୁ ତୁମେ
ବିନ୍ଦୁତ୍ୱରେ ଦେଇଛ ଅନ୍ୱୟ ।''

କବି ନିଜ ଇଚ୍ଛାରେ ସତେ ଯେପରି ଜ୍ଞାନର ତପସ୍ୟାର ପଥ ବାଛିନେଇଛନ୍ତି । ସେ ଜାଣନ୍ତି ଅନ୍ୟାନ୍ୟ ସମଧର୍ମାଙ୍କଠାରୁ ତାଙ୍କ ଜୀବନର ଗତିପଥ ଭିନ୍ନ । ସେଠାରେ ଅଶ୍ରୁ ଓ ଆର୍ତ୍ତି ଅଛି, ଆବେଗ ସହିତ ଦାହବଦ୍ଧତା ଅଛି ପୁଣି ଅଛି ସମାଧାନର ସୂକ୍ଷ୍ମ ସୂତ୍ର ସହିତ ସମର୍ପଣର ମୁଦ୍ରା । ଏ ସମର୍ପଣରେ ପ୍ରାଣ ପୁଲକିତ ହୁଏ । ସାଗର ସହିତ ନଦୀର ଭେଟ ହେଲେ ନଦୀ ଯେପରି ନିଜର କ୍ଷୁଦ୍ରତା ଭୁଲି ସାଗର ସହିତ ଏକାତ୍ମ ହୁଏ, ସେହିପରି ପରମ ପୁରୁଷର ଅପେକ୍ଷାରେ କବିଙ୍କର ଜୀବନ ପାଲଟିଛି ସାଧନାର କ୍ରମ ଉତ୍ତରିତ ପଥଟିଏ । ସେ ପଥ କଣ୍ଟକମୟ ହେଲେ ବି ଯାଏ ଆସେ କ'ଣ ? ଯଦି ସୋହାଗର ଭାଷା ଅଶ୍ରୁସ୍ନାତ ହୁଏ, ତେବେ ଭାବିନେବାକୁ ହେବ ଯେ ନିଖିଳର ଅଶ୍ରୁ ଓ ଆର୍ତ୍ତିରେ କବି ମୂହ୍ୟମାନ । ଜୀବନରେ ଚାଞ୍ଚଲ୍ୟ ଅଛି ମାତ୍ର ସେ ଚାଞ୍ଚଲ୍ୟ ଚିରନ୍ତନ ନୁହେଁ, ଏହା କବି ବାରମ୍ବାର ନିଜର କବିତା ଭିତରେ କହିଛନ୍ତି । ତାଙ୍କ କବିତାରେ ଶିକ୍ଷକସୁଲଭ ଉପଦେଶ ଅନେକତ୍ର ପରିଦୃଷ୍ଟ ହୁଏ ।

'ସଂବିତ' ରଚିତ ହେବାପରେ କବି ବାସୁଦେବ ସାହୁ କବିତା ରଚନାରୁ ଓହରି ଯାଇ ନାହାନ୍ତି ବରଂ ପ୍ରକ୍ଷିପ୍ତ ଭାବରେ ତାଙ୍କର ଶତାଧିକ ମୁଦ୍ରିତ କବିତା ରହିଛି ଯାହା ମଧ୍ୟରୁ ଆମେ ତାଙ୍କର ଉତ୍ତରିତ ଚେତନାର ପରିଚୟ ପାଇପାରିବା । ଉତ୍କଳପ୍ରଭା, ସ୍ରୋତସ୍ୱିନୀ, ନବରାଗ, ନୟାଗଡ଼ ଜିଲ୍ଲା ଲେଖକ ପରିଷଦର ମୁଖପତ୍ର, ବାଣୀବିକାଶ, ହିମାଦ୍ରି, ରଘୁନାଥ ବିଦ୍ୟାପୀଠ ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା, ଯୁଗପୋଯୋଗୀ, ଆଗାମୀ ସ୍ୱପ୍ନ ଓ ଭୋର ଭଳି ପତ୍ରିକାରେ ତାଙ୍କର ଅନେକ କବିତା ପ୍ରକାଶିତ ।

ମୋ ନିକଟରେ ଉପଲବ୍ଧ ୧୭ ଟି କବିତା ଭିତରେ କେବେ ଆବେଗ ଛଳଛଳ ବ୍ୟକ୍ତିତ୍ୱଟିଏ ଅତି ପାଖରେ ଠିଆ ହୋଇଥିବା ଦିଶିଯାଏ ତ କେବେ ଆଖି ପାଉ ନଥିବା ଦୂରତାରେ ଏକ ଦିବ୍ୟଦ୍ରଷ୍ଟା ଋଷିଟିଏ କାହାକୁ ଅପେକ୍ଷା କରୁଥିବାର ଛବି ଭାସିଉଠେ ।

ବଞ୍ଚିବାଲାଗି ଭୁଲି ଶିଖିବା ନିହାତି ଲୋଡ଼ା । ନଈବଢ଼ିରେ କିଛି କ୍ଷୟକ୍ଷତି ହୋଇଗଲେ ହିଁ କ୍ଷେତ ଉର୍ବର ହୁଏ । ପରୀକ୍ଷା ସରିଲେ ପୂର୍ଣ୍ଣକୁମ୍ଭକୁ ଉଠାଇ ଦେବାକୁ ହୁଏ ଓ କଳମରୁ କାଳି ଢାଳିଯିବା ଶୁଭ ବୋଲି ଗୃହୀତ ହୁଏ । ''ଚିତ୍ରପୋଥିର ବୁଢ଼ାଗଛ ଓ ଅଶ୍ରୁଗର୍ଭା ନଈ'' କବିତା ତାଳପଦେଶ୍ୱରୀ ସାହିତ୍ୟ ଆସରର ମୁଖପତ୍ର 'ଭୋର-୧'ରେ ପ୍ରକାଶିତ । ଏହି କବିତାରେ କବି ନିଜକୁ ଚିତ୍ରପୋଥିର ବୁଢ଼ାଗଛ ଭାବରେ ଅବଲୋକନ କରିଛନ୍ତି ଓ ନିଜର ଉତ୍ତର ସାଧକ ନିକଟରେ ଜୀବନର ସକଳ ପ୍ରାପ୍ତି ଅପ୍ରାପ୍ତିର ଭାର ଅଜାଡ଼ି ଦେଇଛନ୍ତି ।

''ଜୀବନ ସାରା ଅର୍ଜିଥିବା ଐଶ୍ୱର୍ଯ୍ୟ
ସମର୍ପି ଦେଲି ତୋ ହାତରେ
ଗୋଟିଏ ସର୍ତ୍ତରେ ଯେ
ପୃଥ୍ୱୀସାରା ଚିତ୍ରପୋଥି ମୁକୁଳା ରହିଛି
ପରିଚ୍ଛନ୍ନ ଇଚ୍ଛା ନେଇ ଥରେ ଗଢ଼ିଦେବୁ ।''

ଇଚ୍ଛା ଯଦି ପରିଚ୍ଛନ୍ନ ତଥା ସୁନିୟନ୍ତ୍ରିତ ହୁଏ ତେବେ ବ୍ୟକ୍ତିର ସାଧନା ନିଷ୍ଫଳ ହୁଏ ନାହିଁ ବରଂ ତା ସାଧନାର ଫଳ ଧରି ଭଗବଦ୍ ଶକ୍ତି ଅବତରଣ କରିଥାଏ । ନିଜକୁ ଉତ୍ତର ସାଧକ ନିକଟରେ ବୁଢ଼ାଗଛ ଭାବରେ ଉପସ୍ଥାପିତ କରି କବି ନିଜର ଅନୁଭୂତି ପାକଳ ଜୀବନବୋଧ ସଂପର୍କରେ ଧାରଣା ପ୍ରଦାନ କରିଛନ୍ତି । ସମଗ୍ର ପୃଥିବୀ ଯେ ଏକ ମୁକୁଳା ପୋଥି ଏହା ବହୁ ସ୍ରଷ୍ଟା ପୁରୁଷ କହିଯାଇଛନ୍ତି । ତାକୁ ଯେତେ ପଢ଼ିଲେ ତାହା ଆହୁରି ଅସଂପୂର୍ଣ୍ଣ ରହେ । ତେଣୁ ଯୁଗ ପରେ ଯୁଗ ତାହା ଭିନ୍ନ ଭାବରେ ନୂଆ କରି ପଠିତ ହିଁ ହେଉଥାଏ । ସେହି ପୃଥବୀର ଦାବୀ ମାନିନେବାକୁ ହୁଏ କାରଣ ତାର ଆଉ ବିକଳ୍ପ ନାହିଁ । କବିଙ୍କର ମଧ୍ୟ ଏହି ଶୀର୍ଷକରେ ଏକ କବିତା ରହିଛି ଯେଉଁଠି ଅନେକ ସ୍ୱର ଭିତରେ କବି କାନ ଡେରିଥିବା ନିର୍ଦ୍ଦିଷ୍ଟ ସ୍ୱର ଶୁଣିପାରନ୍ତି ନାହିଁ । ଏହି 'ବିକଳ୍ପ ନାହିଁ' କବିତାରେ ଅନେକ ଦର୍ଶନତତ୍ତ୍ୱ ଏକୀଭୂତ ହୋଇଛି । କବିଙ୍କ ମନରେ ପ୍ରଶ୍ନ

''କିଏ ସେ ଦେଇଛି ଜନ୍ମ ? କା' ସ୍ମୃତି ଚେତନା
କା' ଋତୁ-ଆକାଙ୍କ୍ଷା ଲେଖେ ଆକାଶ ଠିକଣା ?''

ନାନାବିଧ ସଂଘାତର ନାଦରେ ମୁଖରିତ କିମ୍ବା ଭିତରେ କେଉଁ ସ୍ୱର ଶୁଣିବାକୁ କବି ଅପେକ୍ଷା କରନ୍ତି । ସେହି ମହାମହିମ ସମ୍ରାଟ ଯିଏ କି ସର୍ବଯନ୍ ସର୍ବନାମ ତାଙ୍କର କୌଣସି ବିକଳ୍ପ ହିଁ ନାହିଁ କାରଣ ''କେବେ କୁହା ହୋଇନଥିବା କଥା କେବେ କୁହା ହୋଇପାରେ ନାହିଁ ।''

ଅନ୍ୟଏକ କବିତା 'ଶୂନ୍ୟ-ଭୂମା'ରେ କବି ଏଭଳି ଏକ ଗଛକୁ ଖୋଜନ୍ତି ଯାହା ଶୂନ୍ୟରୁ ଉଦ୍‌ଭବ ହୁଏ ଓ ଶୂନ୍ୟରେ ସଂଚରଣଶୀଳ ହୋଇଥାଏ । ଯାହାର ଡାଳର ସ୍ୱରଧ୍ୱନି ଓ ପତ୍ରରେ ଛାୟାପଥ ଦିଶେ । ଅନ୍ତରୀକ୍ଷର ଅଗଣିତ ନକ୍ଷତ୍ର ଯାହାର ପୁଷ୍ପ ତାର କ୍ଷୀରମୟ ଚେର ମଧ୍ୟ ଶୂନ୍ୟରୁ ଝୁଲୁଥାଏ । କବି ଏଭଳି ଏକ ଘର ଖୋଜନ୍ତି ଯାହା-

"ମୁଁ ଖୋଜୁଛି ସେଇ ଘର
ବହୁଦିନୁ । ଚେତନାର ସୂକ୍ଷ୍ମ ଆକାଶରେ
ଅଲୌକିକ ଆଲୋକରେ ଉଦ୍‌ଭାସିତ
ଯା'ର ଚଉଦିଗ, ଅନାହତ ନାଦରେ ନନ୍ଦିତ
ଅଳିନ୍ଦ ଅଂଗନ ବନ
ନିଦ୍ରାରେ ଉଠଇ ଶ୍ଲୋକ, ମୁଦ୍ରାରେ ଜୀବନ ।"

ଏହି କବିତା ଭିତରେ ଦେହଟପି ବିଦେହ ଖୋଜୁଥିବା ଏକ ଦିବ୍ୟଦ୍ରଷ୍ଟା କବିଙ୍କୁ ପାଠକ ଭେଟିଥାଏ । ସେହିପରି 'ଅନନ୍ୟା' କବିତାରେ ମଧ୍ୟ ଦ୍ୱୈତ ଓ ଅଦ୍ୱୈତର ଘେନାଘେନି ଭାବଟି ପାଠକକୁ ଚକିତ କରିଥାଏ ।

"ତୁମରି ପ୍ରେମରେ ମଗ୍ନ ମୁଁ ଏକ ଏକତ୍ର
ତୁମରି ସଭାରେ ହଜି ଆଜି ଏକ ସ୍ରୋତ
ତୁମରି ମିଶାନତା ମିଶି ମୁଁ ସମାନ ଚିହ୍ନ
ତୁମରି ଆକାଶେ ଭାସି ଛିକି ଛନ୍ନ
ତୁମରି ବର୍ଷାର ଏକ ମୁଗ୍ଧ ଅଭିଷେକ
ତୁମରି ସତ୍ତାର ଏକ ସତ୍ୟ ଅଭିଲେଖ"

ଏହି ରହସ୍ୟଘନ 'ତୁମେ' କବିଙ୍କୁ କେତେବେଳେ ଉଚ୍ଚକିତ କରନ୍ତି ତ କେବେ ସମାହିତ କରନ୍ତି । ଏହି 'ତୁମେ'ର ଉପସ୍ଥିତି ହିଁ କବିତ୍ୱ ଯାହା କବି ବାସୁଦେବ ସାହୁଙ୍କ କବିତା ପାଠ କଲେ ଅନୁଭବ କରିହୁଏ । ଏହି ତୁମେ ତାଙ୍କ ଜୀବନ ନୌକାର ନାଉରୀ । ତାଙ୍କ ଜୀବନପୁଷ୍ପର ସୌରଭ । କବି ଜଗନ୍ନାଥ ପ୍ରାଣ, ଜଗନ୍ନାଥ ଚେତନା ସଂପର୍କରେ ଗଭୀର ଗବେଷଣା କରି ସେ ଉଚ୍ଚତର ଡିଗ୍ରୀ ହାସଲ କରିଛନ୍ତି । ତେଣୁ ରହସ୍ୟମୟ 'ତୁମେ' ଭିତରେ ସେହି ଅବାଙ୍‌ମନର ଗୋଚର ଇଚ୍ଛା ସହ 'ତୁମେ'ଙ୍କର ଉପସ୍ଥିତି କବିଙ୍କୁ ଗଭୀର ଜୀବନ ଅବବୋଧ ପ୍ରଦାନ କରିପାରିଛି ।

'ଫୁଟିବାର ମୁହୂର୍ତ୍ତ' କବିତାଟିରେ କବି ପରପିଢ଼ିର ସ୍ରଷ୍ଟାମାନଙ୍କୁ ଜୀବନର ପାଠ ପଢ଼ିବାକୁ ବହି ବସ୍ତାନି ବଢ଼ାଇ ସେମାନଙ୍କୁ ସୁନାପିଲା ହେବାକୁ ଅନୁରୋଧ କରିଛନ୍ତି । ନୂଆ ଜୀବନଟିଏ ଅନ୍ତୁଡ଼ିଶାଳରୁ ଫିଟିପଡ଼ିବାବେଳେ ଷଠୀ ଦୁସେଇ ବୁଢ଼ୀ ତାକୁ ଆୟୁଷ ଦେଉଛୁ ।





ଅଭୟ ପଣତରେ ଢାଙ୍କି ଦେଉଛନ୍ତି । ଦିନେ ଏହି ଉତ୍ତର ସାଧକମାନଙ୍କର ଶବ୍ଦସାଧନା ବଳରେ ଶୃଙ୍ଖଳା ଗଛଡାଳରୁ ମଧୁ ଝରିବ ଆଉ ତାତିଲା ମାଟିରେ ଫୁଲ ଫୁଟିବ । ତେଣୁ ''ଡେଣାକୁ ସ୍ଥବିର କରି ଦେ'ନାରେ'' ଶୀର୍ଷକରେ ବାଣୀବିକାଶର ୧୯୯୨ ସଂଖ୍ୟାରେ ପ୍ରକାଶିତ କବିତାରେ ସେ ଉତ୍ତର ପୀଢ଼ିପାଇଁ ନିଜର ଆଶୀର୍ବାଦର ଧାରା ଢାଳି ଦେଇଛନ୍ତି ।

''ତୁ ତ ପରିପୂର୍ଣ୍ଣ ଶିହରଣ, ପ୍ରଗଳ୍ଭ ଯୌବନ !
ଅଗ୍ନିର ଅକ୍ଷୟ ଲିପି ! ତୁଷାର-ଢେଉରେ
ଡେଣାକୁ ତୁ ସ୍ଥବିର କରି ଦେ'ନାରେ !
ଉଡ଼ି ଯା' ଉଡ଼ି ଯା'
ଏ ବଟରୁ ସେ ବଟ
ଆକାଶୁଁ ଆକାଶେ
ସମୁଦ୍ରୁ ସମୁଦ୍ରେ-
ଗାଇ ଯା ଶାନ୍ତିର ମନ୍ତ୍ର, ସାନ୍ତ୍ୱନାର ଗୀତ''

ସେ ପକ୍ଷୀକୁ ସମ୍ବୋଧନ କରି କହନ୍ତି ଯେ ସେ ଅଗ୍ନିରେ ଅଦାହ୍ୟ, ଶସ୍ତ୍ରରେ ଅଚ୍ଛେଦ୍ୟ, ବାୟୁରେ ଅବଶୋଷ । ଏହା ଭଗବଦ୍‌ଗୀତାର ସେହି ନିତ୍ୟନୂତନ ଶ୍ଳୋକ ମନେପକାଇଦିଏ ।

''ଅଚ୍ଛେଦ୍ୟୋଽୟଂ ଅଦାହ୍ୟୋୟମ୍ ଅକ୍ଲେଦ୍ୟ ଶୋଷ୍ୟଏବଚଃ
ନିତ୍ୟଃ ସର୍ବଗତଂ ସ୍ଥାଣୁ ରଚନୋମ୍ୟମ୍ ସନାତନଂ-''

ଅର୍ଥାତ୍ ଆତ୍ମା ନିତ୍ୟ ସନାତନ । ପକ୍ଷୀକୁ ଆତ୍ମାର ପ୍ରତୀକ ଭାବରେ କେଉଁ ଆବହମାନ କାଳରୁ ଗୃହୀତ । ତେଣୁ ଏତାଦୃଶ କବିତା ଭିତରେ ପରଂପରାର ପଦପାତ ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେହି କବିତାରେ ''ନିରବଧିକାଳ ବିପୁଳାଚ ପୃଥ୍ୱୀ'' (ଭବଭୂତିଙ୍କ ରଚିତ) ମଧ ସ୍ଥାନିତ ହୋଇଛି । ଆର୍ଯ୍ୟ ଋଷିର ପାବନ ମନ୍ତ୍ର-

''ମଧୁବାତାରତାୟନେ। ମଧୁ କ୍ଷରନ୍ତି ସିନ୍ଧବଃ ମାଧ୍ୱୀନଃ ସନ୍ତୋଷଧି'' ମଧ ତାଙ୍କ କବିତାରେ ସିଧାସଳଖ ଉପସ୍ଥିତ-

ମାଟିର ମହକ, ଝରୁଛି ଅକ୍ଷତ
ଘୃତ, ମଧୁ ଦୁର୍ବାଦଳ ଅନ୍ନ
ସୂର୍ଯ୍ୟର ସୁନେଲି ଧୂଳି
ମାଖିଅଛି କକ୍ଷ-ବାତାୟନ (ଶୂନ୍ୟଭୂମା)

ଶ୍ରୀ ଅରବିନ୍ଦଙ୍କର ମହାକାବ୍ୟ 'ସାବିତ୍ରୀ' ସଂପର୍କରେ ସେ ତଥ୍ୟ ପୁନର୍ଜନ୍ମର ବ୍ୟାଖ୍ୟା କରିଛନ୍ତି (ନିୟତ ବସୁଧା) ଜନନୀ ଓ ଜେଜେମାଆ ତାଙ୍କ ଗାଆଁ ପ୍ରକୃତି ଓ ନିୟତ ବସୁଧା ଭାବରେ ପରିକଳ୍ପିତ । 'ଜ୍ଞାନମନ୍ଦିରର ସ୍ମୃତିଗାଥା'ରେ କବି ନିଜ ଗ୍ରାମର ରଘୁନାଥ ବିଦ୍ୟାପୀଠରେ

ସ୍ମୃତିଚାରଣ କରିଛନ୍ତି ଯେଉଁଠି ସେ ପାଠ ପଢ଼ିଥିଲେ । ସେ ବଂଶୀଧର ସୁବୁଦ୍ଧି, ସୋମନାଥ ସାର୍, ରଘୁନାଥ ସାର୍, ନିତ୍ୟାନନ୍ଦ ସାର୍, ଲଡୁକେଶ୍ୱର ପଣ୍ଡା, ଗଣେଶ୍ୱର ସାର୍, ଜଗବନ୍ଧୁ ସାର୍, ମଦନମୋହନ ସାର୍ ଓ ଜୟକୃଷ୍ଣ ସାର୍‌ଙ୍କୁ ସ୍ମରଣ କରିଛନ୍ତି । ସେହି ବିଦ୍ୟାଳୟରୁ ଶିକ୍ଷାଲାଭ ପରେ ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ସଫଳ ଛାତ୍ରମାନଙ୍କ କଥା ଉଲ୍ଲେଖ କରିଛନ୍ତି । ସେ ବିଦ୍ୟାଳୟକୁ ଜ୍ଞାନଦାତ୍ରୀ ଜନନୀ ଭାବରେ ସମ୍ବୋଧନ କରି ନିଜର କୃତଜ୍ଞତା ପ୍ରକାଶ କରିଛନ୍ତି ।

'ସ୍ୱପ୍ନର ଗବାକ୍ଷ' କବିତାରେ କବି ତିନୋଟି ଗବାକ୍ଷ କଥା କୁହନ୍ତି । ପ୍ରଥମ ଗବାକ୍ଷରେ ଦୃଶ୍ୟମାନ ହୁଏ ଝଡ଼, ଘଡ଼ଘଡ଼ି, କ୍ଷୁଧା ତୃଷା ଓ ହାହାକାରର ଛନ୍ଦ, ଦ୍ୱିତୀୟ ଗବାକ୍ଷ ସମ୍ଭାବନାର ଗବାକ୍ଷ । ସେଠି ସ୍ୱପ୍ନ ଅଛି ସମ୍ଭାବନା ଅଛି । ତୃତୀୟ ଗବାକ୍ଷ ପ୍ରତ୍ୟୟର ଗବାକ୍ଷ । ଏହା ବେଳେବେଳେ ସ୍ତବ୍ଧ କରିଦିଏ । କବିଙ୍କ ଭାଷାରେ-

''ଆକାଶରୁ ଝଡ଼ ଆସେ ଝଡ଼ରୁ ହୁଂକାର
ଫୁଲ ସବୁ ଫୁଟିବାର ଶବ୍ଦରୁ ଓଁକାର
ଓଁକାରର ନାଭି ଗର୍ଭେ ପ୍ରତ୍ୟୟର ଭାଷ୍ୟ
ମୁଁ ଏଇ ପ୍ରତ୍ୟୟ ନେଇ ସ୍ୱପ୍ନ ଦେଖେ
ସ୍ୱପ୍ନ-ସାରା ବିଶ୍ୱ''

(ସ୍ୱପ୍ନର ଗବାକ୍ଷ-ଆଗାମୀ ସ୍ୱପ୍ନ-୨୦୦୦)

କବି ବାସୁଦେବ ସାହୁ ଉତ୍ତମ କବିତ୍ୱର ଅଧିକାରୀ । ସଂଖ୍ୟାରେ ଗୁଣ କଳନା କରାଯାଏ ନାହିଁ । ଗୋଟିଏ ଭଲ କବିତା ମନ୍ତ୍ର ଭଳି ଉଚ୍ଚାରିତ ହୋଇପାରେ ଓ ଅନେକଙ୍କୁ ପ୍ରଭାବିତ କରିପାରେ । କବିତ୍ୱ ପ୍ରଫେସର ବାସୁଦେବ ସାହୁଙ୍କର ସମୁଦ୍ର-ବ୍ୟକ୍ତିତ୍ୱ ନିକଟରେ ଏକ ତୀର୍ଯ୍ୟକ୍ ପ୍ରପାତ ସଦୃଶ ମାତ୍ର ପ୍ରପାତରେ ଜଳବିଦ୍ୟୁତ ଶକ୍ତି ଥାଏ । ସେହି ଶକ୍ତିରେ ତାଙ୍କର କବିତାଗୁଡ଼ିକ ଶକ୍ତିମୟୀ ।

ଛପା କବିତାଗୁଡ଼ିକ (ଯାହା ମୋ ନିକଟରେ ଅଛି) ମଧ୍ୟ ସେ ବାରମ୍ବାର କାଟି ଯୋଡ଼ି ନିଜ ମନଲାଖି କରିବାର ଚେଷ୍ଟା କରିଛନ୍ତି । କବିତ୍ୱ ଭିତରେ ଏକ ସୁକୁମାର କୈଶୋର ଥାଏ, ଯାହା କବିକୁ ସମୟ ସହିତ ଯୋଡୁଥାଏ । ତେଣୁ କବିଟିଏ ବୟସ୍କ ହୁଏ ନାହିଁ । ଜୀବନ ଓ ଜଗତ ପ୍ରତି ଅମାପ ଶ୍ରଦ୍ଧା ନେଇ ସେ ଭବିଷ୍ୟତକୁ ସ୍ୱାଗତ କରେ । ବାସୁଦେବ ସାହୁଙ୍କ କବିତାରେ ସେହି ଶ୍ରଦ୍ଧାର ସ୍ୱର ସ୍ପଷ୍ଟ ।

ମୁଦ୍ରିତ କବିତା ନିକଟରେ ନିଜ ନାମ ଲେଖିଲାବେଳେ ସେ (ସୁବ୍ରତ) ବୋଲି ଲେଖିଥାଆନ୍ତି ଯେଉଁ ନାମ ତାଙ୍କର ମାତୃକଳ୍ପା ଜଣେ ମହୀୟସୀ ନାରୀ ତାଙ୍କୁ ପ୍ରଦାନ କରିଥିଲେ । ସେହି 'ସୁବ୍ରତ' ସକଳ 'ସୁ' ଅର୍ଥାତ୍ ସୁଗୁଣକୁ ବ୍ରତ ଭାବରେ ଗ୍ରହଣ କରି ସମଗ୍ର ଜୀବନ ବାଣୀପୀଠ ବାଣୀବିହାରରେ ସରସ୍ୱତୀଙ୍କର ଆରାଧନା କରିଛନ୍ତି ।





ଆଜି ତାଙ୍କର ମର ଶରୀର ଦଗ୍‌ଧିଭୂତ ମାତ୍ର ତାଙ୍କର ସ୍ନେହ ଓ ସଦିଚ୍ଛା ''ମୋ ଜୀବନ ଓ ଆତ୍ମାମାନେ'' ର ସମ୍ବୋଧନକୁ ଗଣ୍ଡିଧନ କରି ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟାପକ ଅଧ୍ୟାପିକାମାନେ ସାହିତ୍ୟ ଚର୍ଚ୍ଚା ଓ ସାଧନାରେ ମଗ୍ନ ଅଛନ୍ତି । ଯେଉଁ ଅନୁଷ୍ଠାନକୁ ସେ ନିଜ ସାଧନାର ତୀର୍ଥ ଭାବରେ ଗ୍ରହଣ କରିଥିଲେ, ତାହା ତାଙ୍କର ସ୍ୱପ୍ନ ସାର୍ଥକ କରିବାକୁ ସାମର୍ଥ୍ୟ ସଂଚୟ କରୁଛି ।

ସାର୍ ଯିବା ବର୍ଷେ ହେବ । ମନେ ହେଉଛି ସାର୍ ଏବେ ଆସୁଥିବେ ଆଉ କହିବେ ''ତୋର କବିତାଟି ଭାରି ଭଲ ହୋଇଛି । ଜୀବନରେ କେବେ ଲେଖା ଛାଡ଼ିବୁନି ।'' ସାର୍‌ଙ୍କ ଶ୍ରାଦ୍ଧବାର୍ଷିକୀରେ ଏହି ଦାୟିତ୍ୱଟି ମୋତେ ଅର୍ପଣ କରିଥିବାରୁ ମୁଁ ତାଙ୍କର ସୁଯୋଗ୍ୟ କନ୍ୟା ଆମ ସମସ୍ତଙ୍କର ଆଦରଣୀୟ ଶାଶ୍ୱତୀ ନିକଟରେ କୃତଜ୍ଞ ।



# ବିଦଗ୍ଧ ହୃଦୟର କବି ବାସୁଦେବ

ଡଃ ଦିଲୀପ କୁମାର ସ୍ୱାଇଁ

ଏକ : ଓଡ଼ିଆ କାବ୍ୟଧାରାରେ ଯେଉଁ କେତେଜଣ ପ୍ରତିଭାବନ୍ତ କାବ୍ୟସ୍ରଷ୍ଟାଙ୍କର ହାତଗଣତି ନିଜସ୍ୱ କବିତା ସଂକଳନ ସେମାନଙ୍କ ପାଇଁ ପ୍ରତିଷ୍ଠା ଓ ପ୍ରସିଦ୍ଧି ଆଣିଦେଇଛି ସେମାନଙ୍କ ମଧ୍ୟରୁ କବି ବାସୁଦେବ ସାହୁ ଅନ୍ୟତମ । ତାଙ୍କର କବିତାଗ୍ରନ୍ଥ 'ସଂବିଦ୍' (୧୯୭୨) ଓ କେତେକ ପ୍ରମୁଖ ପତ୍ରିକା, ସଂକଳନମାନଙ୍କର ପ୍ରକାଶିତ କବିତାଗୁଡ଼ିକୁ ଆଧାର କରି ଏପରି ଏକ ଅଭିମତ ପ୍ରକାଶ କରାଯାଇପାରିବ । ଓଡ଼ିଆ କାବ୍ୟଧାରାରେ ସ୍ୱାଧୀନତାପରବର୍ତ୍ତୀ ଓଡ଼ିଆ କବିତାର ସ୍ଥିତି, ପ୍ରଗତି, ଦୁର୍ଗତି ଭିତରେ ସେ ନିଜ ପାଇଁ ଏକ ସ୍ୱତନ୍ତ୍ର ଗତିପଥ ବାରି ନେଇଛନ୍ତି । 'ସଂବିଦ୍' ସଂକଳନର ମନୋଜ୍ଞ ଭାଷା ଓ ଏହାର ଉତ୍ତରିତ ଅବବୋଧ କବିତାର ସାମଗ୍ରିକ ମୂଲ୍ୟବୋଧକୁ ନିର୍ଣ୍ଣୟ କରେ । ସମଗ୍ର କବିତାର ସଫଳତା ତାଙ୍କର ସଂଗୀତ କଣ୍ଠ (Sonicvoice) ଓ ଜୀବନର ଉଚ୍ଚାଙ୍ଗ ମୂଲ୍ୟବୋଧ (Higher Value of Life) ଉପରେ ନିର୍ଭରଶୀଳ । ବାସୁଦେବ ସାହୁଙ୍କ କାବ୍ୟବୋଧର ବିଶେଷତ୍ୱ ହେଉଛି, ପ୍ରାରମ୍ଭରୁ ପରିପକ୍ୱ, ସନ୍ନ୍ୟାସୀ-ସୁଲଭ ସୁସ୍ଥ ଶାଶ୍ୱତ ଚିନ୍ତାଦ୍ୱୟର ଐକିକରଣ । ଦୁର୍ବାସାଙ୍କ ଧ୍ୟାନଭଙ୍ଗ ପରି ଯଦିଓ ଚହଲା ଯୌବନର ଛବି ଓ ତଜ୍ଜନିତ ତାତ୍‌କ୍ଷଣିକ ଉତ୍ତେଜନା ପ୍ରକାଶ ପାଇଛି, ଏହା କବିଙ୍କ ସାମଗ୍ରିକ କାବ୍ୟ ମୂଲ୍ୟବୋଧ ନୁହେଁ । 'ଶୂନ୍ୟଦେହଲୀର ଇଲାକା' ହିଁ ତାଙ୍କ କବିତାର ମନ୍ତ୍ରମୁଗ୍ଧ ପରିଭାଷା । ପ୍ରଫେସର ସାହୁଙ୍କ ଭାଷାତତ୍ତ୍ୱର ପ୍ରାଚୀର ଉପରେ କଅଁଳ କବିତା-ଲତାର ସୌକୁମାର୍ଯ୍ୟ ସହୃଦୟ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଥାଏ ।

ଦୁଇ : କବି ବାସୁଦେବ ସାହୁ ଆଧୁନିକ କବିତାର ଏକ ସନ୍ଧିକ୍ଷଣରେ କବିତାମନସ୍କ ହୋଇଛନ୍ତି । ଓଡ଼ିଆ କବିତା ପାଇଁ ୧୯୬୨ ରୁ ୧୯୮୦ ମସିହା ବହୁବିଧ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ । ସ୍ୱାଧୀନତା ପରବର୍ତ୍ତୀକାଳର ଆଧୁନିକ କବିତାର ଆତ୍ମିକ ଓ ଆଙ୍ଗିକରେ ଯେଉଁ ପ୍ରୟୋଗ-ପରୀକ୍ଷାର ଆରମ୍ଭ ହୋଇଥିଲା, ତାହା ୧୯୬୨-୮୦ ଏହି ଅଠର ବର୍ଷ ମଧ୍ୟରେ ବିବର୍ତ୍ତନର ଅତି ଉଚ୍ଚ ଶିଖରକୁ ଉର୍ଦ୍ଧ୍ୱାୟିତ ହୋଇଥିଲା ।

ବିଶେଷ କରି ୧୯୭୦ ମସିହାଠାରୁ ଆରମ୍ଭ ହୋଇଥିବା କବି ଚିତ୍ତର କ୍ରିୟା ପ୍ରକ୍ରିୟା ଓ ପ୍ରତିକ୍ରିୟା 'ନୂଆ କିଛି କହିବାର ନିଶା' ସୃଷ୍ଟି କରିଛି । ଏହିପରି ଏକ ଭାବପ୍ରବଣତା ଓ

ଶୃଙ୍ଖଳିତ ଅବବୋଧ ବାସୁଦେବ ସାହୁଙ୍କ କବିତାରେ ଲକ୍ଷ୍ୟ କରାଯାଇପାରିବ । ଏହି ସମୟ ମଧ୍ୟରେ ସଚ୍ଚିଦାନନ୍ଦ ରାଉତରାୟ, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ଦୀପକ ମିଶ୍ର, ସୌଭାଗ୍ୟ କୁମାର ମିଶ୍ର ପ୍ରଭୃତିଙ୍କ କବିତାଗ୍ରନ୍ଥର ପ୍ରକାଶନ ମଧ୍ୟରେ ଓଡ଼ିଆ କବିତା ନୂତନ ବୌଦ୍ଧିକ-ପ୍ରଜ୍ଞା, ପ୍ରାଞ୍ଜଳତା ଓ ଜୀବନର ସୂକ୍ଷ୍ମତମ ପରିଭାଷା ପ୍ରଦାନରେ ନିଜକୁ ନିୟୋଜିତ କରିଛି । କବି ବାସୁଦେବ ସାହୁଙ୍କ 'ସଂବିତ୍' ଏହି ସମୟର କୃତି । ସ୍ୱାଧୀନତା ପରବର୍ତ୍ତୀ ସମାଜ-ଜୀବନ ଓ ବ୍ୟକ୍ତି-ଜୀବନର ବ୍ୟାପକ ଭଙ୍ଗାରୁଜା ଚିତ୍ର, ଗଣତନ୍ତ୍ରର ଅବମୂଲ୍ୟାୟନ, ମଣିଷର ସଂତ୍ରସ୍ତସ୍ଥିତ ଓ ଅମଙ୍ଗଳବୋଧର ଚିତ୍ର ପ୍ରଦାନ କରିବା ଅପେକ୍ଷା କବି ବିବର୍ଣ୍ଣ ମଣିଷର ବର୍ଣ୍ଣମାଳାରୁ ମୁକୁଳି ଯନ୍ତ୍ରଣା-ବୃତ୍ତରୁ ମୁକ୍ତିର ସ୍ୱର କବିତାରେ ଗ୍ରହଣ କରିଛନ୍ତି । ସ୍ୱାଧୀନତା ପରବର୍ତ୍ତୀ କବିତାମାନଙ୍କରେ ପ୍ରତିଫଳିତ ସାମଗ୍ରିକ ଆବେଦନ (ନିଃସଙ୍ଗତା, ପାପବୋଧ, ପ୍ରେମ ଓ ଯୌନଭାବନା, ଦଳିତ ଚେତନା ଓ ପ୍ୟାରଡ଼ିକବୋଧ) ଠାରୁ କବି ବାସୁଦେବ ସାହୁ ନିଜର ସର୍ଜନବୋଧକୁ ନିରାପଦ ଦୂରତ୍ୱରେ ରଖି ନିଜ ପାଇଁ ଏକ ମୌଳିକ କାବ୍ୟଲକ୍ଷ୍ୟ ସ୍ଥାପନ କରିଛନ୍ତି । ଅତଏବ ଏସବୁ କବିତା ସାଂପ୍ରତିକ କାଳର ହୋଇ ବି ସାଂପ୍ରତିକତା-ସର୍ବସ୍ୱ ନୁହେଁ, ବରଂ ସାର୍ବକାଳିକ ଓ ସର୍ବଜନୀନ ।

ତିନି : 'ସଂବିତ୍' ପର୍ଯ୍ୟାୟଭୁକ୍ତ କବିତାଗୁଡ଼ିକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରିବ । ପ୍ରଥମତଃ କବିଙ୍କ କୈଶୋର ଭାବନାର ପ୍ରାଣବନ୍ତ ସ୍ୱପ୍ନାଞ୍ଜନ-ଆଞ୍ଜିତ ଓ ଦ୍ୱିତୀୟତଃ ପ୍ରବୀଣ ଜୀବନବୋଧର ପରିପକ୍ୱ ଉତ୍କର୍ଷ ଦ୍ୱିତୀୟ ପର୍ଯ୍ୟାୟର କବିତାମାନଙ୍କରେ ଲକ୍ଷ୍ୟ କରାଯାଏ । କବିଙ୍କ ପରିପକ୍ୱ ଜୀବନଚିନ୍ତାର ଉତ୍ତରଣ ପାଖରେ ପ୍ରାରମ୍ଭିକ ଜୀବନର ପ୍ରେମ ଫଲ୍‌ଗୁ, ଶିହରଣ, ସ୍ୱପ୍ନ ତୁଚ୍ଛ ହୋଇପଡ଼ିଛି । ପ୍ରାରମ୍ଭିକ ଜୀବନର ସୁରଭିତ ମୁହୂର୍ତ୍ତରୁ ବର୍ତ୍ତମାନ ଜୀବନର ମୋହମୁକ୍ତ ଉଦାସୀନତାକୁ ମାପି ବସିଲେ, ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହୁଏ, ତାହାହିଁ ବାସୁଦେବ ସାହୁଙ୍କ କାବ୍ୟ ଉତ୍ତରଣ । ସାଂପ୍ରତିକ ମଣିଷ ଦୁଇଟି ଚେହେରାର ମଣିଷ । ଏହି ଚେହେରାଗତ ଦ୍ୱନ୍ଦ୍ୱ (ଚେତନ-ଅବଚେତନ) ହିଁ ତାର ଅବଶିଷ୍ଟାଂଶ । ନିଜର ସ୍ଥିତି, ସଂସ୍ଥିତା ଓ ତା'ର ଏକ ଉଚ୍ଚାଟ ଉତ୍ତରଣ ପାଇଁ ସ୍ରଷ୍ଟା ଅପେକ୍ଷା ରଖେ । ଏହି ଅପେକ୍ଷମାଣ ଜୀବନର ଦ୍ୱନ୍ଦ୍ୱ ବାରମ୍ବାର ତା'ର ବିପର୍ଯ୍ୟୟ ଜୀବନବୋଧକୁ ନେଇ ବିଦ୍ରୂପ କରେ । ବାସୁଦେବ ସାହୁଙ୍କ କବିତାରେ ଏହି ଜୀବନବୋଧର ପରିଭାଷା ରୂପ ପାଇଛି ।

'ବିଜନତା ସାଥେ ମୋର ଦିନେ ଦିନେ ପରିଚୟ ହୁଏ
ମୋ'ଠାରୁ ଭିନ୍ନ ଏକ ମୋହର ସେ ପରିଚୟ ଦିଏ ।
ମୋ ପ୍ରତ୍ୟୟ ପବନମାନଙ୍କୁ ନେଇ
କେଉଁ ଏକ ନିଃଶବ୍ଦ ଓ ନିଃସଙ୍ଗ ସମୁଦ୍ରର
ଶଙ୍ଖ ଆଉ ଶାମୁକା ଭିତରେ





ସିନିସଞ୍ଜେ ସାନାଇ ବଜାଏ,
ସାଗରେ ଜଙ୍ଗମ କରେ ସଙ୍ଗମେ ମତାଏ ।'

-ସଂବିତ୍ : ସଂବିତ୍ : ୦୧

ପ୍ରତ୍ୟୟର ପବନମାନଙ୍କୁ ନେଇ ନିଃସଙ୍ଗ ସମୁଦ୍ରର 'ଶଙ୍ଖ' ଓ 'ଶାମୁକା' ଭିତରେ ସାନାଇ ବଜାଇବା ବର୍ଣ୍ଣନାରୁ କବିମନନର ଚିତ୍ତଚାଞ୍ଚଲ୍ୟ ସ୍ପଷ୍ଟ ଓ ପ୍ରମାଣିତ । ଆଧୁନିକ ମଣିଷର ବିଶ୍ୱାସବୋଧ (ପ୍ରତ୍ୟୟପବନ), ସାଂପ୍ରତିକ ଦାୟିତ୍ୱହୀନ ଓ ଅମଙ୍ଗଳ ସମାଜ ବ୍ୟବସ୍ଥା (ନିଃସଙ୍ଗ ସମୁଦ୍ର) ରେ ସାଂପ୍ରତିକ ଶୁଭାଦିକାର୍ଯ୍ୟ (ଶଙ୍ଖ) ଓ ଅତୀତର ସ୍ମୃତିଅବଶେଷ (ଶାମୁକା)ରେ ବର୍ତ୍ତମାନର ଯନ୍ତ୍ରଣାଗୀତ (ସାନାଇ ବଜାଏ) ଗାନ କରୁଛି । ଏପରି ଏକ ଦୋଦୂଲ୍ୟମାନ ସ୍ଥିତି ଲକ୍ଷ୍ୟ କରାଯାଇପାରିବ ସାଂପ୍ରତିକ ମଣିଷର ଅସହାୟବୋଧ ଭିତରେ । ସେ ମାଟିର ନାଁ ଆକାଶର, ଗୋଟାଏ ପଟରେ ଚିହ୍ନାମାଟି, ଉପରେ ଅଚିହ୍ନା ଆକାଶ, ବାୟାବସା ପରି ଦୋହଲୁଛି ତା'ର ଘଟ । ତ୍ରିଶଙ୍କୁ ପରି ତା ଜୀବନ । ଏହି ଉତ୍କଟ ସ୍ଥିତି ସଂସ୍ଥିତି ପରବର୍ତ୍ତୀ କବିତାରେ ଆହୁରି ବ୍ୟାପକ ।

'ଏ କାହାର ପଦଧ୍ୱନି, ଶୁଣା ଶୁଣା ପ୍ରତିଧ୍ୱନି,
ପ୍ରିୟତମ ଜଣା ଜଣା ଛାଇ
ହଜି ଯାଇଥିବା କେଉଁ ଚେତନାର
ଛଳଛଳ ବାଟବଣା ନଈ
ଯେମିତିକି ଲକ୍ଷ୍ୟହରା କେଉଁ ଏକ
ଅନିଶ୍ଚିତ ଅସ୍ଥିର ବାଟୋଇ
ଆପଣାର ମୁଣ୍ଡ କୋଡ଼େ ଆଗ ପଛ କେଉଁଠାରେ
କାହାକୁ ହଜାଇ ।'

-ଆତ୍ମଚରିତ : ସଂବିତ୍ : ପୃ.୮

ବର୍ତ୍ତମାନର ବର୍ବରତାରୁ ମୁକ୍ତି ପାଇବା ପାଇଁ ଅତୀତର ରୋମନ୍ଥନ ସର୍ଜନଶୀଳତାର ଏକ ଔଷଧୀୟଗୁଣ । ପୁଣି ପ୍ରାକ୍ ପରିପକ୍ୱ ଜୀବନର ପରିପୂର୍ତ୍ତି ପରିପକ୍ୱ ଜୀବନରେ ହୁଏ ସ୍ଥିତ । କବି ଏହି ମନଃସ୍ଥିତିକୁ 'ଛଳଛଳ ବାଟବଣା ନଈ' ଓ ସାଂପ୍ରତିକ ଚଳମାନ ଜୀବନଧାରାକୁ 'ଏକ ଅନିଶ୍ଚିତ ଅସ୍ଥିର ବାଟୋଇ' ଭାବରେ କଳ୍ପନା କରିଛନ୍ତି । କବିଙ୍କ ଏହି ଭାବକଳ୍ପ ଦୁଇଟି ଖୁବ୍ ମନସ୍ତାତ୍ତ୍ୱିକ ଓ ଆତ୍ମିକ । ଏହି ଦ୍ୱିରୁକ୍ତି ଓ ବିବେକବୋଧର ବିଘଟନ କବିଙ୍କୁ ବାନ୍ଧି ରଖିପାରି ନାହିଁ, କବି ଏଥିରୁ ଆଶା କରିଛନ୍ତି ଏକ ସଚେତନ ନିଷ୍କୃତି । କବି କହନ୍ତି-

'ମୁଁ ଏକ ସଶବ୍ଦ ସ୍ରୋତ ବହିଯାଏ ନିଃଶବ୍ଦ ସମୁଦ୍ରେ
ମୁଁ ନିଜେ ସମୁଦ୍ର ।

ଯେତେ ନଦୀ, ଯେତେ ହ୍ରଦ, ମେଘ ଓ ମୌସୁମୀ ଯେତେ
ସ୍ୱୟଂଭୂତି ସ୍ୱୟଂଭୂ ବିଳାସ
ମୁଁ ନିଜେ ତା' ସଂପୂର୍ଣ୍ଣ ପ୍ରକାଶ ।'

-ତତ୍. ତ୍ୱ. ଅହମ୍ : ସଂବିଦ୍ : ପୃ.୪

କବି ଚିତ୍ତର ସମସ୍ତ ଉତ୍କଣ୍ଠା, କାରୁଣ୍ୟ ଏକ ପରମ ଉପସଂହାର ପ୍ରାପ୍ତ ହେବା ସହ ପରମାର୍ଥ ଆଡ଼କୁ ପ୍ରଭାବିତ ହୋଇଛି । କାବ୍ୟଚେତନାର ଏ ପ୍ରକାର ଆରୋହଣରୁ କବିଚିତ୍ତର ପରିପକ୍ୱତା ଓ କବିତାର ଉତ୍କର୍ଷ ପ୍ରମାଣିତ ହୁଏ ।

ଚାରି : 'ସଂବିଦ୍'ର ସ୍ୱର ବକୁଳବିତାନରୁ ବଂଶୀର ସମ୍ମୋହନ ଆଡ଼କୁ ପ୍ରଧାବିତ । କେତେବେଳେ ଏଥିରେ ଲାଖି ରହିଛି ମଧୁ ବୟସର ମଧୁକ୍ଷରା ରାତିର ସନ୍ତକ' ତ ପୁଣି କେତେବେଳେ ବଂଶୀର ଡାକରେ ଜୀବନ ପରିତ୍ରାଣର ଶାଶ୍ୱତ ସଂଗୀତ । ଏହି ଦ୍ୱୈତ ଭାବର ଦ୍ୟୋତନାରୁ ବାରି ହୁଏ କବି ବାସୁଦେବ ସାହୁଙ୍କ ଅନ୍ୟ କାବ୍ୟାନୁଭବ-ରୋମାଣ୍ଟିକ୍ ବାସ୍ତବବାଦ । କବିଙ୍କ ଏପରି ଅନୁରାଗ ବସନ୍ତ ସଂପ୍ରୀତିକୁ ନେଇ । ଓଡ଼ିଆ କବିତାରେ 'ବସନ୍ତ' ରାସର ବର୍ଣ୍ଣାଢ଼୍ୟ ବର୍ଣ୍ଣନା ଲକ୍ଷ୍ୟ କରାଯାଇପାରିବ । ବାସୁଦେବ ସାହୁଙ୍କ ବସନ୍ତ ସଂପ୍ରୀତିକୁ ଲକ୍ଷ୍ୟ କରାଯାଉ-

'ପୁନର୍ବାର ଆମ୍ରକଷି ମହକରେ ମତାଇ କୋଇଲି
ତତାଇ ଆପଣାଛାଏଁ ମହୁମାଛି, ପ୍ରଜାପତି, ସମୁଦ୍ର ଲହଡ଼ି
ତାଳେତାଳେ ମନ୍ତ୍ର ଫୁଙ୍କି ପ୍ରାଣଭରି କଙ୍କି ଓ କଙ୍କାଳେ
ବସନ୍ତ ଆସିବ କାଲି ଧୋଇ ଧାଇ କ୍ଷତ ସବୁ ଉଷୁମ ଜଳରେ ।'

-ଶୀତ : ସଂବିଦ୍ : ପୃ.୯

'ଆମ୍ର ସୁରଭିରେ ମୁଁ ବି ଏକ ମଦମତ୍ତ କସ୍ତୁରୀ ହରିଣ
ମୁଁ ବି ଶୁଣେ ପଦ୍ମତୋଳା
ମୁଁ ବି ପିଏ ଜ୍ୟୋତ୍ସ୍ନାର ପ୍ଳାବନ ।
କାହାର ଲଘୁଚଞ୍ଚଳ ପକ୍ଷ ହିଲ୍ଲୋଳରେ ଭୁଲିଯାଏ ଆପଣାର ବାଣୀ
ଆଶ୍ଚର୍ଯ୍ୟ ଓ ବିସ୍ମୃତିର ଅସ୍ମିତାରେ ଜାଗିଉଠେ ସୁପ୍ତ କୁଣ୍ଡଳିନୀ ।'

-ବସନ୍ତ : ସଂବିଦ୍ : ପୃ.୧୩

ବସନ୍ତ ବର୍ଣ୍ଣନାରେ କବିଙ୍କ ଭାବ ବିଭୋରତାର ଆତ୍ମିକ ଅନ୍ୱୟକୁ ଏ ପର୍ଯ୍ୟାୟରେ ଲକ୍ଷ୍ୟ କରାଯାଇପାରିବ । 'ବସନ୍ତ ଆସିବ ସବୁ କ୍ଷତକୁ ଉଷୁମ ଜଳରେ ଧୋଇ' କେତେ ସମ୍ମୋହକ ଓ ଉତ୍ତେଜକ ! ସଚ୍ଚିଦାନନ୍ଦ ରାଉତରାୟଙ୍କ 'ବସନ୍ତ ଆସଇ ଏଠି ଧକ୍କା ଖାଇ କୁକୁଡ଼ାର ଦେହେ/ ଭାଙ୍ଗି କେତେ ମହୁ ସୋରେଇ (କବିତା, ୧୯୬୨) କେତେ ଅବକ୍ଷୟଗାମୀ

ଓ ନଷ୍ଟ ସଭ୍ୟତାରେ ନିମଗ୍ନ ! ବସନ୍ତ ବାସୁଦେବ ସାହୁଙ୍କ ଦୃଷ୍ଟିକୋଣରୁ ପରିପୂର୍ଣ୍ଣ, ପ୍ରୀତିମଗ୍ନ, ପାରଂପରିକ ଓ କେତେ ଆଦିମ ତା'ର ନିବେଦନ ! କିନ୍ତୁ ଆଧୁନିକ କବିତାରେ ବସନ୍ତ କେତେ ଦୟନୀୟ ଓ ଦାୟିତ୍ୱହୀନ ! ଏଥିପାଇଁ ପୂର୍ବରୁ କହିଛି କବି ବାସୁଦେବ ସାହୁଙ୍କ କବିତା ଆଧୁନିକ ନୁହେଁ ସାର୍ବକାଳିକ ।

ଏପରି ରୋମାଣ୍ଟିକ୍ ପଣ କିଛି କ୍ଷଣ କବିଙ୍କୁ ପୃଥକ୍ କରେ ତାଙ୍କର ଚିରାୟତ କର୍ମପଥରୁ । କବିଙ୍କ ସୁପ୍ତ କୁଣ୍ଡଳିନୀ ଜାଗ୍ରତ ହୁଏ, ଯୁଗପତ୍ କ୍ଷୁଧା ଜର୍ଜର ସ୍ନାୟୁତନ୍ତ୍ରୀମାନେ ପୁଣି ଉନ୍ମତ୍ତ ହୋଇଯାଆନ୍ତି । ସମଗ୍ର ପରିବେଶ କବିଙ୍କୁ କେନ୍ଦ୍ର କରି ସୃଷ୍ଟି ହୋଇଛି, ଯାହାଦ୍ୱାରା ବସନ୍ତ ବର୍ଣ୍ଣନାର ଆତ୍ମୀକରଣ ସଂଭବ ହୋଇପାରିଛି । କବି ବାସୁଦେବ ସାହୁଙ୍କ କବିତାରେ ରୋମାଣ୍ଟିକ୍ ଚେତନାର ଯେଉଁ ହୃଷ୍ଟପୁଷ୍ଟ ପଦଚିହ୍ନ ଟିକକ ରହିଛି, ତାହା ତାଙ୍କ ବଳିଷ୍ଠ ଯୁକ୍ତି-ପ୍ରବଣ ଜୀବନବାଦୀ ଦୃଷ୍ଟି ନିକଟରେ ମ୍ଳାନ ପଡ଼ି ଅପହୃତ ସ୍ଥିତି ପରି ସଂରକ୍ଷିତ ରହିଛି । ପାହାଡ଼ ତଳର ଝରଣା ପରି ଏସବୁ ଜୀବନ ଚିନ୍ତା ଭିତରୁ ସେହି ଆଦିମ ସତ୍ୟକୁ ଗ୍ରହଣ କରିନେବାର ଦ୍ୱିଧା ନାହିଁ, ଗୋଟିଏ ଦ୍ୱିଧାଗ୍ରସ୍ତ ପ୍ରେମକଳ୍ପ ପାଇଁ ଏକ ଚିତ୍ରକଳ୍ପ ଗ୍ରହଣ କରାଯାଉ ।

'ଆଉ ତମ ରାଇଜର ନଈଗୁଡ଼ିକ କି ଛଇଳ, ଚପଳକାନ୍ତି
କେବେ କେବେ ଥରେ କିଶୋରୀଟିଏ ପରି
ଫ୍ରକ୍ ଛାଡ଼ି ନୂଆ ନୂଆ ଶାଢ଼ି ପିନ୍ଧନ୍ତି ।
ଆଉ କେବେ ଅବା ଗେରୁଆ ବସ୍ତ୍ର ତଳେ
ଯୁବତୀ ସନ୍ନ୍ୟାସିନୀର ଦୀର୍ଘଶ୍ୱାସ ପରି
ଫୁଲି ଉଠନ୍ତି ।'

-ସେଇ ପାହାଡ଼ ନଈ ଓ ଏଇ ସମୁଦ୍ର : ସଂବିତ୍ : ପୃ.୨୦

ଯୁବତୀ ଝିଅ ସନ୍ନ୍ୟାସିନୀ ହେବାର ଦୀର୍ଘ ଶ୍ୱାସ ପରି କବିତାରେ ରୋମାଣ୍ଟିକ୍ ଭାବକୁ ଉତ୍ତରିତ ମାନସ ଦେଇ ଉପଭୋଗ କରିବା ଏକ ଦୁଃଖ, କିନ୍ତୁ ସନ୍ନ୍ୟାସିନୀ ଆଖିରେ ବ୍ରତତୀ ନାରୀର ଦମ୍ଭ କରି କବି ଚିତ୍ତର ଉର୍ବର ଉପଲବ୍ଧି ସେ ଦୁଃଖକୁ ଫୋପାଡ଼ି ମୁକ୍ତିମନ୍ତ୍ର ଖୋଜେ । ବାସୁଦେବ ସାହୁଙ୍କ କବିତାରେ ଜୀବନ ନିକଷ-ସ୍ୱର ଏପରି ଏକ ପୃଷ୍ଠଭୂମି ସୃଷ୍ଟି କରେ; ଯେଉଁଠୁ ଶବ୍ଦର ଶିଖରରେ ବସି ଅନ୍ଧାରରୁ ଆଲୋକ ଆଡ଼କୁ ଧାବିତ ଏକ ଜ୍ୟୋତିଷ୍ମତୀ କାବ୍ୟିକ ଚେତନାଟିକୁ ଗ୍ରହଣ କରିହୁଏ ।

ବାସୁଦେବ ସାହୁଙ୍କ ଏ ପର୍ଯ୍ୟାୟର ସ୍ୱର ଗଡ଼ନାଏକ ବା ବୈକୁଣ୍ଠ ପଟ୍ଟନାୟକଙ୍କ ରହସ୍ୟବାଦୀ ସ୍ୱର ସମ୍ପର୍କରେ ସଚେତନ କରାଇଦିଏ । ବୈକୁଣ୍ଠ ଅଧିକ ରହସ୍ୟମଗ୍ନ ଅତିମାନସ ଆଡ଼କୁ ପ୍ରଧାବିତ ହୋଇଥିବାବେଳେ କବି ବାସୁଦେବ ସାହୁ ସେଇ ନିଝୁମ୍ ଝୁଙ୍କରୁ ଖସି ଆସି ମାନବିକ ସଂବେଦନ ଭର୍ତ୍ତି ପାରଂପାରିକ ମମତ୍ୱବୋଧକୁ ଗ୍ରହଣ କରିଛନ୍ତି । ଯେଉଁଠି

ପାରଂପରିକତାର କଥା ଉଠୁଛି ସେଇଠି କବିଙ୍କ କାବ୍ୟଶୈଳୀ ଓ ସ୍ୱର-ସଂକ୍ରମଣ କୁନ୍ତଳାକୁମାରୀୟ କାବ୍ୟଚେତନାଠାରେ କେତେ ଉତ୍ସର୍ଗୀକୃତ ଓ ନିମଗ୍ନ ତା'ର ଏକ ପରିଚୟ ଗ୍ରହଣ କରାଯାଉ ।

'ମୁଁ ଦେଖୁଚି ଦିନରାତି ମୁହୂରତେ ଫୁରୁସତ ନାହିଁ
ସାଗର ଲାଗିଚି ତାର ନିଜ ଧର୍ମ ନିଜ କର୍ମ ନେଇ
ମୁଁ କିମ୍ବା ଅଳସ ହେବି ଆସିଚି ବା କେତେଦିନ ପାଇଁ
ଯାଉଛି କରିବି କର୍ମ ନିଜ ଧର୍ମ ନିଜ ମର୍ମ ନେଇ
ମଉଳିଲେ ଥରେ ଫୁଲ ଆଉ ଥରେ ଫଟେ କି ଜୀବନେ
ଥରେ ଯେବେ ଯିବି ମରି ରଖିଯିବି କି ସ୍ମୃତି ଭୁବନେ ?'

ଶପଥ : ସଂବିତ୍ : ପୃ. ୬୭

କୁନ୍ତଳାକୁମାରୀଙ୍କ 'ଶେଫାଳିପ୍ରତି', 'ଖଦ୍ୟୋତିକା' ଆଦି କବିତାର ମର୍ମବୋଧ ସହ ଉପର କବିତାର ଆବେଦନକୁ ଗ୍ରହଣ କଲେ, କୁନ୍ତଳାକୁମାରୀୟ ଅନୁଚିନ୍ତାର ସଫଳ ପଦକ୍ଷେପ ପରିଦୃଷ୍ଟ ହେବ । ଏସବୁ ପରିଚର୍ଚ୍ଚାର ଉପଲବ୍ଧି ହେଉଛି କବିଙ୍କ କାବ୍ୟଲକ୍ଷ୍ୟ ଓ ବ୍ୟାବହାରିକ ଜୀବନରେ ଏହାର ପ୍ରୟୋଗ । ଆଧୁନିକ କାଳର ପ୍ରୟୋଗବାଦୀ କବିଙ୍କ ପରି କୌଣସି ଆଦର୍ଶ, ବାଦ, ବିବାଦ, ସବାଦକୁ ସର୍ବସ୍ୱ କରି କବିତା ରଚନା କରିବାର କୌଣସି ଅଭିପ୍ରାୟ କବିଙ୍କର ନାହିଁ ବରଂ ଏକ ନିରୁତା କର୍ମମୟ ଓ ନୀତିନିଷ୍ଠ ଜୀବନ ଦର୍ଶନ ପରିପ୍ରେକ୍ଷୀରେ ଆତ୍ମାର ଶାଶ୍ୱତ-ସଂଗୀତ ଚର୍ଚ୍ଚା ହିଁ ହୋଇଛି କବିଙ୍କ ପାଇଁ ସଦ୍‌କବି କର୍ମ ।

'ଇମିତି ଇଲାକାଟିଏ ଦରକାର ମୋର
ଯେଉଁଠି ସବୁ ସମୟ, ବୟସ, ବାସନା
ଶଙ୍ଖ ଫୁଙ୍କୁଥିବେ ମୁହଁ କରି
ସୂର୍ଯ୍ୟ ଆଡ଼େ । ମନ୍ତ୍ର ପଢୁଥିବ ମହାକାଳ, ମହାକାଶ
ମୁଁ ଭାଷା ଖୋଜୁଥିବି ଭାଷା ।
ବ୍ରହ୍ମାଣ୍ଡର ଭାଷା, ପାପୁଲି ଅଣ୍ଡାଳି ଦେଲେ
ଖସି ପଡୁଥିବ ଅଶବ୍ଦରୁ । ମାଟିରୁ, ସମୁଦ୍ରରୁ
ଅଭିଶାପରୁ, ଅଭିଳାଷରୁ । କ୍ଷୁଧାରୁ, ଅମୃତରୁ ।'

ଶୂନ୍ୟଦେହଳୀର ଇଲାକା : ବାଣୀବିକାଶ :

(ଉତ୍କଳ ବିଶ୍ୱବିଦ୍ୟାଳୟ ମୁଖପତ୍ର, ସୁବର୍ଣ୍ଣ ଜୟନ୍ତୀ ବର୍ଷ ୧୯୯୩-୯୪ ସଂପାଦକ : ଦିଲୀପ କୁମାର ସ୍ୱାଇଁ ।)

ଅତଏବ ଯେଉଁଠି 'ପଲପଲ ଆପ ଆସି ରୁଣ୍ଡ ହେବେ ରେସ୍ତୋରାଁରେ', 'ବଡ଼ ବଡ଼ ବୃକ୍ଷ ସବୁ ଭାଙ୍ଗି ପଡୁଥିବ ରାସ୍ତାରେ' ଓ 'ସାତମୁଠା ଚାଉଳରେ ପଙ୍ଗୁ ହୋଇଯିବ ପୌରୁଷ

(୧୯୭୧) ଏହି ଦୁଃସମୟ କବି ଚିତ୍ତରେ ଉଦ୍‌ପ୍ଲାବନ ସୃଷ୍ଟିକରେ ଓ ଏହାହିଁ ଶୂନ୍ୟ ଦେହଳୀର ଇଲାକା' ୧୯୯୩, ଯେଉଁଠି ସମୟ ଶଙ୍ଖ ଫୁଙ୍କୁଥିବ ମୁହଁ କରି ସୂର୍ଯ୍ୟଆଡ଼େ ଅର୍ଥାତ୍ ପ୍ରଚୁର ଆଶାବୋଧ ଓ ଉଜ୍ଜ୍ୱଳ ସମ୍ଭାବନାର ସ୍ୱର ଶୁଭୁଥିବ । ସର୍ଜନଶୀଳତା ପଙ୍ଗୁ ନୁହେଁ ସଂଚରଣଶୀଳ । କ୍ରମଶଃ ଗଭୀର ଆତ୍ମପ୍ରତ୍ୟୟ ଓ ଆଶାବୋଧର ଆଶ୍ୱାସନା ହିଁ ବାସୁଦେବ ସାହୁଙ୍କ କବିତାର ସାଫଲ୍ୟ । 'ପାପସଂତ୍ରାସରୁ ପରିତ୍ରାଣ' କବିଙ୍କ କାବ୍ୟଲକ୍ଷ୍ୟ ।

**ଛଅ :** 'ସଂବିଦ୍'ରେ ଅଛି ଚମତ୍କୃତ କରିଦେବାର ମୋହନୀଶକ୍ତି । ଏପରି କେତେକ କାବ୍ୟିକ ବିସ୍ଫୋରଣ ରହିଛି, ଯାହାର ପ୍ରୟୋଗ ଓଡ଼ିଆ କବିତାରେ ସଂପୂର୍ଣ୍ଣ ମୌଳିକ ଓ ମୋହାବିଷ୍ଟ । ଆଶ୍ଚର୍ଯ୍ୟଜନକ ବିଶେଷଣ ପ୍ରୟୋଗ ଓ ତତ୍‌ସମ ଭାଷା ବିନ୍ୟାସର କାବ୍ୟିକ ଉତ୍କର୍ଷକୁ ଲକ୍ଷ୍ୟ କରାଯାଉ ।

(କ) ମୋ ପୌରୁଷ ପଙ୍ଗୁ ହୁଏ ସାତ ମୁଠା ଚାଉଳ ସ୍ମୃତିରେ, (ଖ) ଚୂଡ଼ିର ବିଦ୍ୱାନ୍ ସ୍ୱର, (ଗ) ଚୂଡ଼ିର ଚୁଡ଼ଲ, (ଘ) ମୁଡ଼ିମୁଆଁ ଖାଏ ଆଜି ବତିଖୁଣ୍ଟ ତଳେ ବସି ନିଷ୍ପାପ ସଭ୍ୟତା, (ଙ) ମହୁଲ ମଦର ନିଦ, (ଚ) ଧୃତରାଷ୍ଟ୍ର ରାତି, (ଛ) ଗହମନିଦ, (ଜ) ଦିଗମ୍ବରୀ ଇଚ୍ଛାମାନେ ଦୌଡୁଥାନ୍ତି ଏ ଘରୁ ସେ ଘର, (ଝ) ଅଫିମ ରାତିରେ ଓଦା ଶହଶହ ପ୍ରେମ ପାଣ୍ଡୁଲିପି, (ଞ) ବରଫ ଫୁଲର ସ୍ୱପ୍ନ, (ଟ) ସ୍ତନ୍ୟକ୍ଷରା ଶୀତରାତି ।

ଏସବୁ ବିଶେଷଣ ପ୍ରୟୋଗରେ କବି ନିଜର ଶ୍ରେଷ୍ଠ କବିପଣର ପରିଚୟ ପ୍ରଦାନ କରିଛନ୍ତି । ଏଥିପାଇଁ କବିତାକୁ ବୋଧଗମ୍ୟ କରିବାକୁ ଯାଇ ବୌଦ୍ଧିକ ଚିତ୍ରକଳ୍ପ, ପ୍ରତୀକ, ମିଥ୍‌ଠାରୁ ନିରାପଦ ଦୂରତ୍ୱରେ ଅବସ୍ଥାନ କରିଛନ୍ତି କବି । 'କୁନାଲ' ଓ 'ନଚିକେତା' ପ୍ରସଙ୍ଗର ଅବତାରଣା କରିବା ସହ ଆର୍କିଟାଇପକୁ ଏକ କାବ୍ୟ ବିକଳ୍ପ ଭାବରେ ଅନେକ କବିତାରେ ସେ ଖଞ୍ଜିଦେଇଛନ୍ତି । କବି ସଚେତନ ଭାବରେ ଅର୍ଥାଳଙ୍କାର ଉପରେ ଗୁରୁତ୍ୱ ନ ଦେଇ କବିତାର ସ୍ୱଚ୍ଛ ପ୍ରବହମାନ ଭାବବିନ୍ୟାସ ସହ ସମ୍ପର୍କ ସ୍ଥାପନ କରିଛନ୍ତି । ଆଧୁନିକ କବିତାରେ ପ୍ରାଧାନ୍ୟ ବିସ୍ତାର କରିଥିବା ଦୁର୍ବୋଧତା, ବ୍ୟାକରଣଗତ ପ୍ରମାଦ, ଚିନ୍ତାକ୍ଲିଷ୍ଟତା, ଅର୍ଥହୀନ ପ୍ରସଙ୍ଗକ୍ରମ, ପାଶ୍ଚାତ୍ୟ ସଂପ୍ରୀତି, ପ୍ରତିଷ୍ଠିତ କବିଙ୍କ ପ୍ରଭାବ, ଏ ସବୁ ପ୍ରସଙ୍ଗକୁ ଫୋପାଡ଼ିଦେଇ ନିଜ କବିତାର ସ୍ୱତନ୍ତ୍ରତା ପାଇଁ କବି ଛନ୍ଦ/ ସଂଗୀତ ଓ ମାଧୁର୍ଯ୍ୟ ଧ୍ୱନି ଏହି ତିନୋଟି କାବ୍ୟଗୁଣ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

**ଶେଷକଥା :**

ପ୍ରଥମରୁ କହିଛି 'ସଂବିଦ୍' ସଂପୂର୍ଣ୍ଣ ପାଠ କରିସାରିବା ପରେ ଯା'ର ସ୍ୱତନ୍ତ୍ରତା ସମ୍ପର୍କରେ ପାଠକ ଅବଗତ ହେବ । ଯେଉଁ କେତେଜଣ ଓଡ଼ିଆ କବି ଅଳ୍ପ ସଂଖ୍ୟକ କବିତା ରଚନା କରି ନିଜ ପାଇଁ ଏକ ପାଠକ ଗୋଷ୍ଠୀ ସୃଷ୍ଟି କରିପାରିଛନ୍ତି ଶ୍ରୀଯୁକ୍ତ ବାସୁଦେବ ସାହୁ ସେମାନଙ୍କ ଭିତରୁ ଜଣେ । ପ୍ରୟୋଗବାଦୀ ଓଡ଼ିଆ କବିତାର ଅସ୍ତରାଗ ଓ ଉତ୍ତର ଆଧୁନିକ

କାବ୍ୟକଳାର ଉନ୍ମେଷ କାଳରେ 'ସଂବିଦ୍' ଏକ ଗୁରୁତ୍ୱପୂର୍ଣ୍ଣ କାବ୍ୟ-ଉପଲବ୍ଧି ସ୍ୱରରେ ସ୍ୱତନ୍ତ୍ର । ସ୍ୱରୂପରେ ଅନନ୍ୟ । ଆଲୋଚ୍ୟ କବି ସାଂପ୍ରତିକ କାଳରେ ପ୍ରାୟ ନିରବ । ଯଦି ସେ କବିତା ମନସ୍ଥ ହୁଅନ୍ତେ, ଓଡ଼ିଆ କବିତାରେ ଏକ ନିର୍ଦ୍ଦିଷ୍ଟ ପରିପକ୍ୱ ସ୍ୱର ସମୃଦ୍ଧି ସଂପନ୍ନ ହୋଇପାରନ୍ତା, ଜଣେ ପାଠକ ଓ ଆଲୋଚକ ଭାବରେ 'ସଂବିଦ୍' ଓ ତା'ର କବିଙ୍କ ସମ୍ପର୍କରେ ମୁଁ ଗଭୀର ଆସ୍ଥାବାନ୍ ।



# ପ୍ରଫେସର ବାସୁଦେବ ସାହୁଙ୍କ ଏକାଙ୍କିକା 'ଭକ୍ତକବି ଦୀନକୃଷ୍ଣ'-ଏକ ଅନୁଶୀଳନ

ଡଃ ଶରତ ଚନ୍ଦ୍ର ରଥ

୧୯୪୦ ମସିହାର ଜନ୍ମାଷ୍ଟମୀ ତିଥିରେ ଭୂମିଷ୍ଠ ହୋଇ ୨୦୦୫ ମସିହା ଜୁଲାଇ ୨୭ ତାରିଖରେ ସ୍ୱର୍ଗାରୋହଣ କରିଥିବା ପ୍ରଥିତଯଶା ଶିକ୍ଷାବିତ୍, ଛାତ୍ରବତ୍ସଳ ପ୍ରଫେସର, ଦକ୍ଷ ସଂଗଠକ, ବରେଣ୍ୟ ସମାଲୋଚକ, ପ୍ରତିଷ୍ଠିତ ଭାଷାତତ୍ତ୍ୱବିତ୍ ମୋର ପୂଜ୍ୟ ଗୁରୁ ଡକ୍ଟର ବାସୁଦେବ ସାହୁଙ୍କ ସ୍ମୃତି ଏବେ ମଧ୍ୟ ମାନସ ପଟରେ ଅଭୁଲା ହୋଇ ରହିଛି । ଝଟ୍‌ଝଟ୍ ଦିଶୁଛି ତାଙ୍କର ମୁହଁ, କଥାକୁହା ଆଖି, ଅଧା ହସିଲା ଓଠ । ମୋ ଆଗରେ ଭାସି ଉଠୁଛି ତାଙ୍କର ଅନ୍ୟକୁ କ୍ଷଣକରେ ଆପଣେଇ ନେବାର ସତୃଷ୍ଣ ସ୍ନେହଶୀଳତା, ମଧୁରତାର ଦଲିଲ ତାଙ୍କ ତେଜଦୀପ୍ତ ଚାହାଣୀର ଶୋଭନୀୟ ନୀରବତା ପୁଣି ଅନ୍ୟର ଦୁଃଖସୁଖରେ ସମଭାଗୀ ହେବାର ଅନନ୍ୟ ଆତ୍ମୀୟତା ।

ପ୍ରଫେସର ସାହୁଙ୍କ ସ୍ଥାନ ତାଙ୍କ ଛାତ୍ରମାନଙ୍କ ନିକଟରେ ସ୍ୱତନ୍ତ୍ର । ଭାଷା ନାହିଁ ଭାଷାବିତ୍‌ଙ୍କୁ ଭାଷା ମାଧ୍ୟମରେ ଭକ୍ତି କୁସୁମାଞ୍ଜଳି ଅର୍ପଣ କରିବା ପାଇଁ । ତାଙ୍କର ସାରସ୍ୱତ କୀର୍ତ୍ତି ତାଙ୍କୁ ଯଶୋଦେହରେ ଅମର କରି ରଖିବ । ସେ ଲେଖଯାଇଛନ୍ତି କବିତା, ପ୍ରବନ୍ଧ, ସମାଲୋଚନା, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ତତ୍ତ୍ୱ ସମ୍ବଳିତ ପୁସ୍ତକମାଳା ଏବଂ ଭାଷାତତ୍ତ୍ୱ ଓ ଭାଷାବିଜ୍ଞାନ ସଂପର୍କିତ କେତେକ ପୁସ୍ତକ । ସେ ମଧ୍ୟ ଏକାଙ୍କିକା ସଂପର୍କରେ ଏଇ ପ୍ରବନ୍ଧରେ ମୁଁ କିଛି ଆଲୋଚନା କରୁଅଛି ।

ଆଲୋଚ୍ୟ ଏକାଙ୍କିକାଟିର ନାମ 'ଭକ୍ତକବି ଦୀନକୃଷ୍ଣ' । ଏହା ୧୯୮୪ ମସିହାର ଶ୍ରୀ ଜଗନ୍ନାଥ ପତ୍ରିକାର ପୂଜା ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏକାଙ୍କିକାଟି ଭକ୍ତିରସାତ୍ମକ । କବି ଦୀନକୃଷ୍ଣଙ୍କର କବିତ୍ୱର ପରାକାଷ୍ଠା ଏଥିରେ ପ୍ରତିପାଦିତ ହେବା ସଂଗେସଂଗେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ମହିମା ପ୍ରକଟିତ ହୋଇଛି । ଇନ୍ଦ୍ରଜିତ ବାହିନୀପତି ହୋଇଛନ୍ତି ତୋଷାମଦକାରୀ ରାଜକବି । ଉଚ୍ଚସ୍ତର କବିତ୍ୱ ନଥାଇ ମଧ୍ୟ ତୋଷାମଦ ଦ୍ୱାରା ରାଜାଙ୍କ ଦ୍ୱାରା ଆଦୃତ ଓ ପ୍ରଶଂସିତ ସେ ହୋଇଛନ୍ତି । ଦୀନକୃଷ୍ଣ ଯେ ତାଙ୍କଠାରୁ ଅଧିକ ପ୍ରତିଭା ସଂପନ୍ନ ଏକଥା ଜାଣିବା ପାଇଁ ରାଜାଙ୍କୁ ବେଶୀଦିନ ଲାଗି ନାହିଁ । ରାଜସଭାରେ ଦିନେ ରାଜା ବାହିନୀପତିଙ୍କ ପ୍ରଶଂସା କରୁଥିବାବେଳେ ୧ମ ପଣ୍ଡିତ ଯାହା କହିଛନ୍ତି ତାହା ଦୀନକୃଷ୍ଣଙ୍କ ସପକ୍ଷରେ ଯାଇଛି ।

୧ମ ପଣ୍ଡିତ:- କବି ସମ୍ରାଟ ଉପେନ୍ଦ୍ର ଭଂଜଙ୍କ କବିତ୍ୱ ଶକ୍ତିର ପରାକାଷ୍ଠା ତ ଆପଣ ଜାଣନ୍ତି ମହାରାଜ ! ତା'ଛଡ଼ା ସଂପ୍ରତି ଶ୍ରୀକ୍ଷେତ୍ରରେ ବାସ କରୁଥିବା ଭକ୍ତ କବି ଦୀନକୃଷ୍ଣଙ୍କ କବିତ୍ୱ ଶକ୍ତିର ପ୍ରଶସ୍ତି ଶତମୁଖରେ ଉଦ୍‌ଘୋଷିତ ହେଉଅଛି । କବି ପରି କବିଟିଏ ଭକ୍ତ ଦୀନକୃଷ୍ଣ ।

ଏହି ଉକ୍ତି ସହିତ ମଧ୍ୟ ପଣ୍ଡିତ ଦୀନକୃଷ୍ଣଙ୍କ ରସକଲ୍ଲୋଳ କାବ୍ୟରୁ କେତେଗୋଟି ପଂକ୍ତି ଆବୃତ୍ତି କରି ଶୁଣାଇ ଦେଇଛନ୍ତି । ବସନ୍ତ ବର୍ଣ୍ଣନାର ଲଳିତ ଆଲେଖ୍ୟ ସେଥିରେ ଅଙ୍କିତ ହୋଇଛି ।

ଏସବୁ ସତ୍ତ୍ୱେ ରାଜାଙ୍କର ବିଶ୍ୱାସ ହୋଇନାହିଁ, ବରଂ ଏକ ପ୍ରତାରକ ଯଥାଯୋଗ୍ୟ କବିତ୍ୱର ଅଧିକାରୀ ନୁହନ୍ତି ବୋଲି ଭାବି ରାଜା ଦୀନକୃଷ୍ଣଙ୍କୁ କଠୋର ଦଣ୍ଡ ଦେବା ପାଇଁ ମହାମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏଇ ଦଣ୍ଡ ଅତ୍ୟନ୍ତ କଠୋର ହୋଇଯାଇଛି ଯେତେବେଳେ ରାଜାଙ୍କ ନିର୍ଦ୍ଦେଶକୁ କବି ଅମାନ୍ୟ କରିଛନ୍ତି ଅର୍ଥାତ୍ ରାଜାଙ୍କ ନାମରେ ନିଜ କବିତା ଦୀନକୃଷ୍ଣ ଭଣିତା କରିନାହାନ୍ତି । ଅଧିକ କ୍ରୋଧାନ୍ୱିତ ହୋଇ ରାଜା ବେତ୍ରଧାରୀ ଦୁଇଜଣଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଦୀନକୃଷ୍ଣଙ୍କୁ ମାଡ଼ ଦେଇ ରକ୍ତାକ୍ତ କରି ଗୋଟିଏ ଗର୍ତ୍ତରେ ନିକ୍ଷେପ କରିବାକୁ ଆଦେଶ ଦେଲେ । ଏହି ଆଦେଶ ପାଳିତ ହେଲା ଏବଂ ଦୀନକୃଷ୍ଣ ସେହି କଠୋର ଦଣ୍ଡରେ ଦଣ୍ଡିତ ହେଲେ । ଭକ୍ତ କବି ସେହି ଗର୍ତ୍ତରୁ ଆର୍ତ୍ତ ଆହ୍ୱାନ ଜଣାଇଲେ ଶ୍ରୀଜଗନ୍ନାଥଙ୍କୁ । ଆହ୍ୱାନ ତାଙ୍କର ଶ୍ରୀଜଗନ୍ନାଥଙ୍କୁ ଶୁଭିଲା । ସେ ଯଥାଶୀଘ୍ର ନିଦରୁ ଉଠି ବଡ଼ଭାଇ ବଳଭଦ୍ରଙ୍କୁ ନିଦରୁ ଉଠାଇ ଦୀନକୃଷ୍ଣଙ୍କର କାତର ପ୍ରାର୍ଥନାର ପ୍ରତିଧ୍ୱନି ଶୁଣାଇ ଦେଲେ । କାଳବିଳମ୍ବ ନକରି ଯାଇ ପହଞ୍ଚିଲେ ଦୀନକୃଷ୍ଣଙ୍କ ପାଖରେ ।

ଗଜପତିଙ୍କୁ ସ୍ୱପ୍ନରେ ଶ୍ରୀଜଗନ୍ନାଥ ଦର୍ଶନ ଦେଲେ ଓ କହିଲେ, ''ମୋ ମନ୍ଦିରକୁ ଯିବା ଦୂରେଥାଉ, ଦିନେ ମୋ କଥା ଚିନ୍ତା ବି କରିନାହୁଁ । ମୋ ପାଖରେ ଯେଉଁ ଭକ୍ତ ମନପ୍ରାଣ ଢାଳି ଦେଇଛି ତୁ ତାକୁ ବିନା ଦୋଷରେ ଦଣ୍ଡ ଦେଇଛୁ ।'' ଗଜପତିଙ୍କ ନିଦ ଭାଙ୍ଗିଲା ଓ ଶ୍ରୀ ଜଗନ୍ନାଥଙ୍କୁ ପ୍ରଣାମ ଜଣାଇ କହିଲେ, ''ଏ ଅଧମକୁ ଉଦାର ହୃଦୟରେ କ୍ଷମା କରନ୍ତୁ । ଅହଙ୍କାରରେ ଅନ୍ଧ ହୋଇ ମୁଁ ବାଟବଣା ହୋଇଥିଲି । ଆଉ କେବେ ଅପଥରେ ଯିବି ନାହିଁ ନାଥ !'' ଦୀନକୃଷ୍ଣ ସେହି ଗର୍ତ୍ତ ଭିତରେ ରହିଯାଇଛନ୍ତି ଓ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା ଜଣାଉଛନ୍ତି । ଶ୍ରୀଜଗନ୍ନାଥ ଆସି ସେହି ଗର୍ତ୍ତ ନିକଟରେ ଉପସ୍ଥିତ ହୋଇ ଦୀନକୃଷ୍ଣଙ୍କୁ ଉଦ୍ଧାର କରିଛନ୍ତି, ଏକାଙ୍କିକାଟିର ପରିସମାପ୍ତି ଘଟିଛି ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ କାରୁଣିକ ସ୍ୱରୂପ ଏଥିରେ ଉଦ୍‌ଘାଟିତ ହୋଇଛି ।

ଏକାଙ୍କିକାଟିରେ ସଂଗୀତର ସଂଯୋଜନା ଚାଲିଛି । ୩/୪ଟି ସ୍ଥଳରେ ସଂଗୀତ ଗାନ ତଥା ଆବୃତ୍ତି କରାଯାଇଛି । ସଂଗୀତ ଗୁଡ଼ିକ ଏକାଧାରରେ ଅର୍ଥପୂର୍ଣ୍ଣ ଓ ଶ୍ରୁତିମଧୁର ହୋଇଛି ।

ବିଭିନ୍ନ ଦୃଷ୍ଟିରୁ ଦେଖିଲେ ଯଥାର୍ଥରେ ଏକାଙ୍କିକାଟି ସୁଖପାଠ୍ୟ ହେବା ସଂଗେସଂଗେ ଶିକ୍ଷଣୀୟ ମଧ୍ୟ ହୋଇ ରହିଛି । ପାଠକୀୟ ଉତ୍କଣ୍ଠା ଆରମ୍ଭରୁ ଶେଷପର୍ଯ୍ୟନ୍ତ ରହିପାରୁଛି । ମୋଟ ଉପରେ ଏକାଙ୍କିକାଟିର ମଞ୍ଚମୂଲ୍ୟ ରହିଛି । ସର୍ବୋପରି ଏକାଙ୍କିକାଟି ଏକ ଉଚ୍ଚକୋଟିର ଲିପିଶିଳ୍ପରେ ପରିଣତ ହୋଇପାରିଛି । ❀

ଅଧ୍ୟାପକ, ଓଡ଼ିଆ ବିଭାଗ, ବାଣୀବିହାର, ଭୁବନେଶ୍ୱର

# ପ୍ରଫେସର ବାସୁଦେବ ସାହୁଙ୍କ ଅଧ୍ୟାପନା ରୀତି

ଡଃ ପ୍ରସନ୍ନ କୁମାର ସ୍ୱାଇଁ

ଆମ ଭାଷା-ସାହିତ୍ୟର ବିକାଶ ସହିତ ଭାଷା ଅଧ୍ୟାପନା କ୍ଷେତ୍ରରେ ଯେଉଁ କେତେଜଣ ପ୍ରାତଃ ସ୍ମରଣୀୟ ବ୍ୟକ୍ତିତ୍ୱଙ୍କୁ ଆମେ ସଦା ସର୍ବଦା ସ୍ମରଣ କରୁ, ସେମାନଙ୍କ ମଧ୍ୟରେ ପ୍ରବୀଣ ଭାଷାବିତ୍, ଉଚ୍ଚକୋଟୀର ଗବେଷକ, ଛାତ୍ରବତ୍ସଳ ଅଧ୍ୟାପକ, ସୁସମାଲୋଚକ ଏବଂ ଉଚ୍ଚାଙ୍ଗ ଗବେଷକ ପ୍ରଫେସର ବାସୁଦେବ ସାହୁ ହେଉଛନ୍ତି ଅନ୍ୟତମ । ପୁରୀ କଲେଜରୁ ବିଜ୍ଞାନରେ ଇଣ୍ଟରମିଡ଼ିଏଟ୍ ପାସ୍ କରିବା ପରେ ଓଡ଼ିଆ-ଭାଷା-ସାହିତ୍ୟ-ସଂସ୍କୃତିରେ ସମୃଦ୍ଧ କରିବାର ବ୍ରତ ଗ୍ରହଣ କରି କଟକ ଖ୍ରୀଷ୍ଟ ମହାବିଦ୍ୟାଳୟର ସ୍ନାତକ ଶ୍ରେଣୀରେ ଓଡ଼ିଆ ସମ୍ମାନ ବିଷୟ ରଖି ସମଗ୍ର ବିଶ୍ୱବିଦ୍ୟାଳୟରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହେବାର ସୌଭାଗ୍ୟ ଲାଭ କରିଥିଲେ । ରେଭେନ୍ସା କଲେଜରେ ଓଡ଼ିଆରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କାଳରେ ସେ ପ୍ରବୀଣ ଭାଷାବିତ୍ ଓ ତତ୍କାଳୀନ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀଙ୍କର ପ୍ରତ୍ୟକ୍ଷ ଓ ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ । ସେହିଦିନଠାରୁ ଓଡ଼ିଆ ଭାଷାର ଉନ୍ନତି ପାଇଁ ସେ ନିଷ୍ଠାପର ଓ ନିରବଚ୍ଛିନ୍ନ ଉଦ୍ୟମ ଆରମ୍ଭ କରିଥିଲେ । ସ୍ନାତକୋତ୍ତର ଶିକ୍ଷା ସମାପ୍ତି ପରେ ପ୍ରଫେସର ସାହୁଙ୍କୁ ଉଚ୍ଚ ବେତନରେ ବିଭିନ୍ନ ସରକାରୀ ଚାକିରି ମିଳୁଥିଲେ ହେଁ ଓଡ଼ିଆ ଭାଷା-ସାହିତ୍ୟର ଉନ୍ନତି କରିବା ଥିଲା ତାଙ୍କ ଜୀବନର ପ୍ରଧାନ ବ୍ରତ ଓ ତପସ୍ୟା । ସେଥିପାଇଁ ଓଡ଼ିଆ ଭାଷା-ସାହିତ୍ୟରେ ଅଧ୍ୟାପନାକୁ ସେ ନିଜ ଜୀବନର ବୃତ୍ତି ସହିତ ବ୍ରତ ଭାବରେ ଗ୍ରହଣ କରି ନେଇଥିଲେ । ପ୍ରଫେସର ସାହୁଙ୍କ ଅଧ୍ୟାପନା ଆରମ୍ଭ ହୋଇଥିଲା ୧୯୬୩ ମସିହାରେ ବାରିପଦାର ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରୁ । ତାଙ୍କର ଅଧ୍ୟାପନା ଶୈଳୀ ଥିଲା ସ୍ୱତନ୍ତ୍ର । ଅଭିନବ, ଅତୁଳନୀୟ ଏବଂ ଅନୁକରଣୀୟ । ପୃଥିବୀରେ ଯେତେ ବ୍ୟକ୍ତି ଅଛନ୍ତି ସମସ୍ତଙ୍କର ଏକ ସ୍ୱତନ୍ତ୍ର ପରିଚୟ ରହିଥାଏ । କୌଣସି ନା କୌଣସି ଦୃଷ୍ଟିରୁ ପ୍ରତ୍ୟେକ ବ୍ୟକ୍ତି ଅନ୍ୟଠାରୁ ପୃଥକ ଅନୁଭୂତ ହୁଅନ୍ତି । ଏହି ପାର୍ଥକ୍ୟ ହେଉଛି ବ୍ୟକ୍ତିର ନିଜସ୍ୱ ରୀତି ବା ଶୈଳୀ । ଏହା ବ୍ୟକ୍ତିର ଚିନ୍ତନଠାରୁ ଆରମ୍ଭ କରି ପଠନ, ଆଚାର ବ୍ୟବହାର, ଶିକ୍ଷା ଦୀକ୍ଷା, କଥାବାର୍ତ୍ତା, ପୋଷାକ-ପରିଚ୍ଛଦ, ଖାଦ୍ୟପେୟ ଏପରିକି ତା'ର ବ୍ୟକ୍ତିତ୍ୱ ପର୍ଯ୍ୟନ୍ତ ପ୍ରଲମ୍ବିତ ଓ ପରିବ୍ୟାପ୍ତ ।

ଅଧ୍ୟାପନା କ୍ଷେତ୍ରରେ ପ୍ରଫେସର ସାହୁ ଏହି ଦୃଷ୍ଟିରୁ ଥିଲେ ଜଣେ ଅନନ୍ୟ ଶିକ୍ଷକ-ପ୍ରବୀଣ ଓ ପାରଦର୍ଶୀ ସ୍ରଷ୍ଟା । ଶ୍ରେଣୀଗୃହରେ ତାଙ୍କର ଶିକ୍ଷାଦାନ ମଧ୍ୟରେ ସେ ଛାତ୍ରମାନଙ୍କୁ

ମନ୍ତ୍ରମୁଗ୍‌ଧ କରିଦିଅନ୍ତି । ସମୟ କେତେବେଳେ ଚାଲିଯାଏ ଜଣାପଡ଼େ ନାହିଁ । ମୁଁ ବାଣୀବିହାରରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ ଅବକାଶରେ ଏହି କଥା ମର୍ମେ ମର୍ମେ ଅନୁଭବ କରିଛି ।

ପ୍ରଫେସର ସାହୁ ଥିଲେ ଅସମ୍ଭବ ସ୍ମରଣ ଶକ୍ତିର ଅଧିକାରୀ । ଶ୍ରେଣୀଗୃହରେ ଛାତ୍ରମାନଙ୍କ ସହିତ ପ୍ରଥମ ପରିଚୟ ମଧ୍ୟରେ ହିଁ ସେ କମ୍ପ୍ୟୁଟର ପରି ସେମାନଙ୍କର ନାମ ଓ ଗ୍ରାମ ମନେ ରଖିପାରୁଥିଲେ । ଛାତ୍ର ଉପସ୍ଥାନ ଡାକିବାବେଳେ କେବେ ସେ କ୍ଲାସ୍‌ରେ ଛାତ୍ରମାନଙ୍କର ରୋଲ୍ ନଂ ଡାକୁନଥିଲେ । ସବୁବେଳେ ଛାତ୍ର ବା ଛାତ୍ରୀଙ୍କର ନାମ ହିଁ ଡାକୁଥିଲେ ଓ ସେହି ଛାତ୍ରକୁ ଚାହିଁ ଟିକିଏ ହସି ଦେଉଥିଲେ । ଯେଉଁ ହସ ମଧ୍ୟରେ ଭରି ରହିଥିଲା ସ୍ନେହବୋଳା ଆକଟ । ଯେତେ ଦୁଷ୍ଟ ପିଲା ହେଲେ ବି ତାର ନାଁ ନେଇ ତା ଆଡ଼କୁ ଟିକିଏ ଚାହିଁଦେଲେ ବିଷଧର ସର୍ପକୁ ଗଦ ଶୁଘାଂଇଲା ପରି ଛାତ୍ରଟି ତାଙ୍କ ସମ୍ମୁଖରେ ନଇଁ ପଡୁଥିଲା ଓ ନରମି ଯାଉଥିଲା । ଶ୍ରେଣୀରେ ଅଧାପକମାନେ ପଢ଼ାଇବାବେଳେ ଯଦି ଛାତ୍ରମାନଙ୍କ ମନକୁ ତାହା ନଘେନେ, ତେବେ ସେମାନେ ଅନ୍ୟମନସ୍କ ରହିବା, ଢୁଳେଇବା ବା ପରସ୍ପର ମଧ୍ୟରେ ଗପସପ ହେବା ସ୍ୱାଭାବିକ । ମାତ୍ର ପ୍ରଫେସର ସାହୁଙ୍କର ଅଧାପନା ରୀତି ଥିଲା ଅନ୍ୟ ଅଧାପକମାନଙ୍କଠାରୁ ସ୍ୱତନ୍ତ୍ର । ପ୍ରତ୍ୟେକ ଦିନ ଶ୍ରେଣୀରେ ଯାହା ପଢ଼ାଯିବାର ଥାଏ, ତାହା ସେ ସିଧା ସିଧା ଆରମ୍ଭ କରନ୍ତି ନାହିଁ । ବିଭିନ୍ନ ଛାତ୍ରଙ୍କ ନାମ ଧରି ତାଙ୍କର ଘର ଦ୍ୱାର, ପିତାମାତା, ଖାଦ୍ୟପେୟ ପ୍ରଭୃତି ମଜା ମଜା କଥା କହି ତାହାରି ଭିତରୁ ସେ ଅଧାପନାର ଖିଅ ବାହାର କରିନିଅନ୍ତି । ଛାତ୍ରମାନଙ୍କର ଗଳ୍ପ ଶୁଣିବା ଭିତରେ କେତେବେଳେ ପ୍ରଫେସର ସାହୁ ପାଠ ଆରମ୍ଭ କରିଦେଇଥାନ୍ତି, ତାହା ଜଣାପଡ଼େ ନାହିଁ । ଅନେକ ସମୟରେ ସେ ଛାତ୍ରଛାତ୍ରୀମାନଙ୍କୁ 'ମୋର ଜୀବନ' ଓ 'ମୋର ଆତ୍ମା' ଭାବେ ସମ୍ବୋଧନ କରନ୍ତି ।

ଓଡ଼ିଆ ଭାଷା ଓ ଶବ୍ଦ ଭଣ୍ଡାର ସହିତ ପ୍ରଫେସର ସାହୁଙ୍କର ସଂପର୍କ ଥିଲା ଅତୀବ ଘନିଷ୍ଠ । ତାଙ୍କର ଓଡ଼ିଆ ଶବ୍ଦ ଜ୍ଞାନର ତୁଳନା ନାହିଁ । ପ୍ରାଚୀନ ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ସାହିତ୍ୟ, କାବ୍ୟ-କବିତାଠାରୁ ଆରମ୍ଭ କରି ଗଳ୍ପ ଉପନ୍ୟାସ ଏବଂ ଭାଷା ପର୍ଯ୍ୟନ୍ତ ଭାଷା -ସାହିତ୍ୟର ସବୁ କ୍ଷେତ୍ରରେ ତାଙ୍କର ଗଭୀର ପ୍ରବେଶ ଥିଲା । ସ୍ନାତକୋତ୍ତର ଶ୍ରେଣୀରେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଅଧାପନା କାଳରେ ସେ ସତେ ଯେପରି ଉପେନ୍ଦ୍ର ଭଞ୍ଜ ପାଲଟି ଯାଇ ଶବ୍ଦର ସାଗରରେ ଅବଗାହନ କରିଛନ୍ତି । ତାଙ୍କର ଶବ୍ଦ ସଂଯୋଜନାଠାରୁ ଆରମ୍ଭ କରି ଉପେନ୍ଦ୍ରଙ୍କ କାବ୍ୟକୁ ସ୍ୱର୍ କରି ଗାଇବା ଓ ତହିଁ ମଧ୍ୟରେ ଛାତ୍ରଙ୍କ ସମ୍ମୁଖରେ ସାହିତ୍ୟ ରସ ସହିତ କାବ୍ୟ ସୌନ୍ଦର୍ଯ୍ୟକୁ ଅତ୍ୟନ୍ତ ଚମତ୍କାର ଭାବରେ ଉପସ୍ଥାପନ କରିବା ଯିଏ ନଦେଖିଛି, ସେ ତାଙ୍କର ଅଧାପନା ରୀତିର ସ୍ୱରୂପକୁ ବିଶ୍ୱାସ କରିବ ବା କିପରି ! ଏ ସଂପର୍କରେ ତାଙ୍କର ବକ୍ତବ୍ୟ ଥିଲା-''ଭଂଜ କାବ୍ୟ ଅଧାପନା କାଳରେ ମନ ଭିତରେ ଉପେନ୍ଦ୍ର ଭଂଜଙ୍କ ଭାବ ନ ଆସିଲେ ଛାତ୍ରମାନଙ୍କୁ ନିଦ ଲାଗିବନି ତ ଆଉ କ'ଣ ହେବ ?''

ସେଥିପାଇଁ ପ୍ରଫେସର ସାହୁଙ୍କୁ ଭଞ୍ଜ ଭୂମିକାରେ ଅଭିନୟ କରିବାକୁ ପଡ଼େ । ଏହା ତ ପ୍ରଫେସର ସାହୁଙ୍କ ଅଧ୍ୟାପନା ଶୈଳୀର ଗୋଟିଏ ଦିଗନ୍ତ ।

ପ୍ରଫେସର ସାହୁ ଥିଲେ ବହୁ ଶାସ୍ତ୍ରଦର୍ଶୀ । ତାଙ୍କର ଦୃଷ୍ଟି ଥିଲା ଅନୁରୂପ ଭାବରେ ବ୍ୟାପକ ଓ ପ୍ରାଚୀନ ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ପ୍ରଲମ୍ବିତ । ସାରଳା ଦାସଙ୍କ ସଂପର୍କରେ ଅଧ୍ୟୟନ କାଳରେ ସେ ପ୍ରାଚୀନ ସାହିତ୍ୟର ସ୍ୱରୂପକୁ ଛାତ୍ରମାନଙ୍କ ସମ୍ମୁଖରେ ଯେପରି ଉପସ୍ଥାପନ କରନ୍ତି. ଆଧୁନିକ କବିତା ଆଲୋଚନା କାଳରେ ଠିକ୍ ସେହିପରି ଭାରତବର୍ଷଠାରୁ ଆରମ୍ଭ କରି ସମଗ୍ର ପୃଥିବୀର ବିଭିନ୍ନ ସାହିତ୍ୟରେ ସମକାଳରେ ଆଧୁନିକତାକୁ ନେଇ ଯେଉଁ ଚର୍ଚ୍ଚା ପରିଚର୍ଚ୍ଚା ହୋଇଛି, ତାହାର ସାରଗର୍ଭକ ବକ୍ତବ୍ୟ ବାଢ଼ନ୍ତି । ଥରକର କଥା । ପ୍ରଫେସର ସାହୁ ଅବସର ଗ୍ରହଣ କରିବା ପରେ କୌଣସି ଏକ କାର୍ଯ୍ୟରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଆସିଥାନ୍ତି । ସେଦିନ ଆମ ବିଭାଗରେ ରମାକାନ୍ତ ରଥଙ୍କ 'ଶ୍ରୀରାଧା' ସଂପର୍କରେ ଏକ ଆଲୋଚନାଚକ୍ରରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେବାକୁ ଅନୁରୋଧ କରାଗଲା । ଏକଥା ଜାଣି ଖୁବ୍ ଖୁସି ହୋଇଯାଇଥିଲେ ପ୍ରଫେସର ସାହୁ । ତାଙ୍କର ସଦିନ ଭୁବନେଶ୍ୱର ଫେରିବା ବାତିଲ କରି ସେ ଆମ ପାଠଚକ୍ରରେ ଯୋଗ ଦେଲେ । ମୋ ଠାରୁ 'ଶ୍ରୀରାଧା' କାବ୍ୟ ସଂକଳନଟି ନେଇ ଟିକିଏ ଆଖି ବୁଲାଇ ଆଣିଲେ । ସଭାରେ ଦଣ୍ଡାୟମାନ ହୋଇ ଆଧୁନିକ କବିତା, ଆଧୁନିକତା, ରମାକାନ୍ତଙ୍କ ଶ୍ରୀରାଧା : ପ୍ରାଚୀନରୁ ସାଂପ୍ରତିକ-ପର୍ଯ୍ୟନ୍ତ ପ୍ରାୟ ଏକଘଣ୍ଟା ଅନର୍ଗଳ ଭାଷଣ ଦଇେ ସେଦିନ ଆମ ଭଞ୍ଜବିହାରର ଛାତ୍ରଛାତ୍ରୀଙ୍କୁ ମୁଗ୍ଧ କରିଦେଲେ । ଯୁବାବସ୍ଥାରେ ସେ ଆଧୁନିକ କବିତା ଲେଖିବା କଥା ଆମେ ଜାଣିଥିଲୁ । ଓଡ଼ିଆ ଭାଷାର ଉନ୍ନତି କରିବାର ଶପଥ ନେଇ ସେ ତାଙ୍କ ଶିକ୍ଷକତା କାଳରେ ଅଧିକାଂଶ ସମୟରେ ସେହି ଭାଷା ଅଧ୍ୟୟନ ଓ ଅଧ୍ୟାପନା ମଧ୍ୟରେ ହିଁ ବ୍ୟସ୍ତ ରହିଥିଲେ । ମାତ୍ର ଆଧୁନିକ କବିତାର ପରିଚର୍ଚ୍ଚା କ୍ଷେତ୍ରରେ ତାଙ୍କର ଅସାଧାରଣ ଦକ୍ଷତା ଓ ପାଣ୍ଡିତ୍ୟର ସେଦିନ ଆମକୁ ଆଶ୍ଚାର୍ଯ୍ୟାବିଭୂତ କରିଦେଇଥିଲା ।

ଯଜନ ଓ ଯାଜନ ହେଉଛି ଜଣେ ଶିକ୍ଷକର ମୂଳଭିତ୍ତି । ଏ କ୍ଷେତ୍ରରେ ପ୍ରଫେସର ସାହୁ ଥିଲେ ଜଣେ ଅନନ୍ୟ ଓ ଅସାଧାରଣ ବ୍ୟକ୍ତିତ୍ୱ । ଆମେ ସାଧାରଣତଃ ଦେଖୁ ଜଣେ ଶିକ୍ଷକ ବା ଅଧ୍ୟାପକଟିଏ ହୋଇଗଲେ ପାଠପଢ଼ାରୁ ସେ ଅବ୍ୟାହତି ନେଇଯାଏ । ମାତ୍ର ପ୍ରଫେସର ସାହୁ ଥିଲେ ତାହାର ସଂପୂର୍ଣ୍ଣ ବ୍ୟତିକ୍ରମ ଓ ବିରୋଧି । ବାଣୀବିହାରକୁ ସେ ବାଗ୍‌ଦେବୀ ସରସ୍ୱତୀଙ୍କର ନିବାସସ୍ଥଳୀ ଭାବେ ଗ୍ରହଣ କରି ସେଠାକୁ ଆସି ବା ସେଠାରେ ରହି ବିଦ୍ୟାଧ୍ୟୟନ ନକଲେ ସରସ୍ୱତୀଙ୍କ ପ୍ରତି ଓ ନିଜ ପ୍ରତି ଘୋର ଅବମାନନା ହେବ ବୋଲି ସେ ଅନୁଭବ କରୁଥିଲେ । ପ୍ରଫେସର ସାହୁ ଥିଲେ ଜଣେ ଗ୍ରନ୍ଥକୀଟ । ସାଂପ୍ରତିକ ବିଷୟ ବୁଦ୍ଧିଠାରୁ ସେ ଥିଲେ ଉର୍ଦ୍ଧ୍ୱରେ । ମାତ୍ର ବିଦ୍ୟାଧ୍ୟୟନ ନିଶା ତାଙ୍କର ଥିଲା ପ୍ରବଳ । ତାହାହିଁ ତାଙ୍କ ପରିବାରରେ ପୁତ୍ର କନ୍ୟାଙ୍କଠାରୁ ଆରମ୍ଭ କରି ତାଙ୍କ ଭଣଜାଙ୍କ ପର୍ଯ୍ୟନ୍ତ

ସମସ୍ତଙ୍କୁ ପ୍ରଭାବିତ କରିଥିଲା । ଛାତ୍ରଛାତ୍ରୀମାନଙ୍କ ଉଦ୍ଦେଶ୍ୟରେ ତାଙ୍କର ଏକମାତ୍ର ଉପଦେଶ ଥିଲା-''ପାଠପଢ଼, ଭଗବାନଙ୍କ ଉପରେ ଫଳ ଛାଡ଼ିଦିଅ ।'' ବାଣୀବିହାରରେ ସଂଜ ନଇଁ ଆସିଲେ ଦେହ ଖରାପ ବାହାନାରେ ଔଷଧ ପାଇଁ କ୍ୟାମ୍ପସ୍ ହେଲ୍‌ଥ ସେଣ୍ଟରକୁ ଯିବା ବାଟରେ ଅନେକ ସମୟରେ ଯୁବବନ୍ଧୁମାନେ ବାଟବଣା ହୋଇ ଯୌବନର ଗୋଲାପି ନିଶାରେ ମସ୍‌ଗୁଲ ଥିବାବେଳେ ପ୍ରଫେସର ସାହୁଙ୍କ ଦୃଷ୍ଟିରେ ପଡ଼ିଲେ ରକ୍ଷା ନାହିଁ । ସେ ଛାତ୍ରମାନଙ୍କୁ କଷ୍ଟ ଦେଲାପରି କିଛି କହନ୍ତି ନାହିଁ । ମାତ୍ର କଥାରେ କଥାରେ ତାଙ୍କର ଗୋଟିଏ ଗୋଟିଏ ଛୋଟ ଉଦାହରଣ, ଶୀତଳ କଟୁରୀ ପରି କାଟିଯାଏ ଦେହକୁ, ନିଶା ଛାଡ଼ିଯାଏ । ସେ ଥିଲେ ବାଣୀବିହାର ଛାତ୍ରମାନଙ୍କ ପାଇଁ ସତର୍କ ଘଣ୍ଟି । ବାଟହୁଡ଼ି ବାଟଛାଡ଼ି ଯାଉଥିବା ଛାତ୍ରମାନଙ୍କର ବାଟକୁ ଫେରିବାର ସେ ଥିଲେ ଏକ ମୁଖ୍ୟ ମାଧ୍ୟମ ।

ପ୍ରଫେସର ସାହୁ ସ୍ନାତକୋତ୍ତର ଶ୍ରେଣୀରେ ଅଧିକାଂଶ ସମୟରେ ଭାଷା ହିଁ ପଢ଼ାନ୍ତି । ଭାଷା ସ୍ୱତନ୍ତ୍ର ପତ୍ର ବି ବାଢ଼ନ୍ତି । ସେ ଭାଷା ସ୍ୱତନ୍ତ୍ର ପତ୍ର କ୍ଲାସ୍‌କୁ ଆସିବା ପୂର୍ବରୁ ଯାହା ପଢ଼ାଇବାର ଥାଏ, ତାହାକୁ ବିଭିନ୍ନ ଦୃଷ୍ଟିରୁ ଅଧ୍ୟୟନ କରି ଆସିଥାନ୍ତି । ଆମ ସମୟରେ ବିନା କାରଣରେ ଆମେ (ମୋର ବନ୍ଧୁ ଚରମ୍ପା କଲେଜର ଅଧ୍ୟାପକ ରମେଶ ଚନ୍ଦ୍ର ଦାସ, ନିମାପଡ଼ା କଲେଜର ଅଧ୍ୟାପକ ଶ୍ରୀ କୁମାର ପାଠୀ, ରୂପ୍‌ସା, ନୀଳମଣି ରାଉତରାୟ କଲେଜର ଅଧ୍ୟକ୍ଷ କୁମୁଦ ଚନ୍ଦ୍ର ସାହୁ) ସାର୍‌ଙ୍କ ଭାଷାଜ୍ଞାନ ପରୀକ୍ଷା କରିବା ପାଇଁ ପ୍ରାୟ ପ୍ରତିଦିନ କିଛି କିଛି ପ୍ରଶ୍ନ ଧରି ଆସିଥାଉ । କ୍ଲାସ୍ ସରିବା ପରେ ବା ପୂର୍ବରୁ ସାର୍‌ଙ୍କୁ ବିଭିନ୍ନ ଆଳରେ ସେସବୁ ପ୍ରଶ୍ନ ପଚାରୁ । କେତେକ ଶବ୍ଦର ଉଚ୍ଚାରଣ, ବିଭିନ୍ନ ଭାଷାର ଉତ୍ପତ୍ତି ଉତ୍ସ, ବିଭିନ୍ନ ଦେଶଜ ଶବ୍ଦର ଉତ୍ପତ୍ତି ଓ ବ୍ୟବହାର ପ୍ରଭୃତି ନାନା ଅଖାଡୁଆ ପ୍ରଶ୍ନ କରୁ । ପ୍ରଫେସର ସାହୁ ହସ ହସ ମୁହଁରେ ସବୁର ଉତ୍ତର ଦିଅନ୍ତି । ଆମକୁ ଭୁଲ୍ ବୁଝନ୍ତି ନାହିଁ ବରଂ ଖୁବ୍ ଉତ୍ସାହ ପ୍ରଦାନ କରନ୍ତି ଓ କହନ୍ତି-''ତମେ ଯଦି ମୋତେ କିଛି ପ୍ରଶ୍ନ ନପଚାରିବ, ତେବେ ମୁଁ ଆସନ୍ତାକାଲିଠାରୁ କ୍ଲାସ୍‌କୁ ଆସିବା ପୂର୍ବରୁ ଆଉ ପ୍ରସ୍ତୁତ ହୋଇ ଆସିବି ନାହିଁ ।'' ଓଡ଼ିଆ ଭାଷା ଅଧ୍ୟାପନା କ୍ଷେତ୍ରରେ ପ୍ରଫେସର ସାହୁ ଥିଲେ ଜଣେ ସୁପ୍ରସିଦ୍ଧ ଅଧ୍ୟାପକ ଓ ପ୍ରବୀଣ ଗବେଷକ । ଓଡ଼ିଆ ଭାଷାରେ ପିଏଚ୍.ଡ଼ି କରିବା ସହିତ ସେ ଏକାଧିକ ଭାଷା ଭିତ୍ତିକ ଗ୍ରନ୍ଥର ରଚୟିତା ଥିଲେ । ମାତୃଭାଷା ଓଡ଼ିଆ ସହିତ ଇଂରାଜୀ, ହିନ୍ଦୀ, ବଙ୍ଗଳା, ଆସାମୀ, ଭୋଜପୁରୀ ସହିତ ବାଧୁଡ଼ି, ସାଦ୍ରି, ସମ୍ବଲପୁରୀ, ଦେଶୀୟା ପ୍ରଭୃତି ବିଭିନ୍ନ ଆଞ୍ଚଳିକ ଭାଷାରେ ତାଙ୍କର ଗଭୀର ପ୍ରବେଶ ଥିଲା । ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ଥିଲାବେଳେ ଆମେ ସେସବୁ କଥା ଜାଣି ନଥିଲୁ । ପରବର୍ତ୍ତୀ କାଳରେ ତାଙ୍କର ଭାଷା ବିଜ୍ଞାନ ସଂପର୍କରେ ଭାବିଲାବେଳେ ଆମେ ନତମସ୍ତକ ହୋଇଯାଉଥିଲୁ ।

ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନର ଏକ ଅଂଶ ହେଉଛି ଶିକ୍ଷା ପରିଭ୍ରମଣ, ଆୟୋଜିତ ପାଠଚକ୍ରରେ ପ୍ରବନ୍ଧ ଉପସ୍ଥାପନ, ବିଶ୍ୱବିଦ୍ୟାଳୟ ପକ୍ଷରୁ ଆୟୋଜିତ ବିଭିନ୍ନ ସାଂସ୍କୃତିକ





କାର୍ଯ୍ୟକ୍ରମର ଯୋଗଦାନ ଇତ୍ୟାଦି । ସବୁଥିରେ ପ୍ରଫେସର ସାହୁ ଥିଲେ ଆଗରେ । ଏସବୁ ମଧ୍ୟରେ ଏ ଜାତିକୁ ନିଜେ ଚିହ୍ନି ଛାତ୍ରମାନଙ୍କୁ ଅତୀତ ଉତ୍କଳ ସହିତ ପରିଚିତ କରାଇବାର ପ୍ରବୃତ୍ତି ତାଙ୍କର ଖୁବ୍ ଅଧିକ ଥିଲା । ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବରେ ଯୋଗଦେବାଠାରୁ ପ୍ରଫେସର ଭାବରେ ଅବସର ଗ୍ରହଣ କରିବା ପର୍ଯ୍ୟନ୍ତ ସେ ଛାତ୍ରମାନଙ୍କର ସ୍ୱାର୍ଥ ନିମିତ୍ତ ନିଜର ବ୍ୟସ୍ତ କାର୍ଯ୍ୟକ୍ରମ ସତ୍ତ୍ୱେ ପ୍ରାୟ ସବୁବେଳେ ଏହି କାର୍ଯ୍ୟରେ ଛାତ୍ରମାନଙ୍କ ସହିତ ଏକ ହୋଇ ରହିଥିଲେ । ପୁରୀ କୋଣାର୍କ ଇତ୍ୟାଦି ଛାତ୍ରମାନେ ପରିଭ୍ରମଣରେ ଯାଇ କ୍ଳାନ୍ତି ଜନିତ ଗୁଲିଖଟି ଗଳ୍ପ ଭିତରେ ମଜ୍ଜା ନେଉଥିବାବେଳେ ପ୍ରଫେସ ସାହୁଙ୍କର ସେହିସବୁ ମନ୍ଦିରମାନଙ୍କର ପ୍ରତିଫଳିତ ଐତିହ୍ୟ, ପରମ୍ପରା ଏବଂ ଉତ୍କଳୀୟ ସଂସ୍କୃତିର ବ୍ୟାଖ୍ୟା ସଂପର୍କିତ ବର୍ଣ୍ଣନା ଛାତ୍ରମାନଙ୍କୁ ସଚେତନ କରିଦିଏ । କୋରାପୁଟ ଶିକ୍ଷା ପରିଭ୍ରମଣରେ ଯିବାବେଳେ ସେ ପହଞ୍ଚିଯାଆନ୍ତି ଉତ୍କଳୀୟ ମୁଖ୍ୟସ୍ରୋତର ବହୁଦୂରରେ ରହିଥିବା ଓଡ଼ିଶାର ଆଦିମ ଅଧିବାସୀ ଆଦିବାସୀଙ୍କ ନିକଟରେ-ସେମାନଙ୍କର ଭାଷାକୁ ଜାଣିବା ପାଇଁ । ସାଥରେ ଥାଆନ୍ତି ବହୁ ଜିଜ୍ଞାସୁ ଛାତ୍ର । ପ୍ରଫେସର ସାହୁଙ୍କର ଶ୍ରେଣୀଗୃହ ବାହାରେ ଏପରି ଅଧ୍ୟୟନ ଓ ଅଧ୍ୟାପନା ସତରେ ଅନ୍ୟମାନଙ୍କଠାରେ ଖୁବ୍ ବିରଳ । ପୁସ୍ତକ ରଚନାଠାରୁ ଆରମ୍ଭ କରି ବିଭିନ୍ନ ପ୍ରାଚୀନ ଗ୍ରନ୍ଥ ସଂପାଦନା, ପତ୍ରପତ୍ରିକା ସଂପାଦନା, ଗଳ୍ପ, କବିତା, ପ୍ରବନ୍ଧ, ଏକାଙ୍କିକା ରଚନାରେ ତାଙ୍କର ଅସାଧାରଣ ଦକ୍ଷତାର ପରିଚୟ ମିଳେ ।

''ଷଡ଼କର୍ମ ନିପୁଣା ବିପ୍ରୋମନ୍ତ୍ର ତନ୍ତ୍ର ବିଷାରଦଃ
ଅବୈଷ୍ଣବୋ ଗୁରୁ ନିସ୍ୟାଦ୍ୱୈଷ୍ଣବଃ ଶ୍ୱପଚ ଗୁରୁଃ ।''

ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନା, ଦାନ, ପ୍ରତିଗ୍ରହ-ପ୍ରଭୃତି ଷଟ୍‌କର୍ମର ଯେ ନିପୁଣ ଓ ବିଚକ୍ଷଣ ସେ ହେଉଛନ୍ତି ଯଥାର୍ଥ ଭାବରେ ଗୁରୁ । ମାତ୍ର ବୈଷ୍ଣବ ହୋଇ ମଧ୍ୟ ଯେଉଁ ବ୍ୟକ୍ତି ନୀଚ ମନୋଭାବ ପୋଷଣ କରନ୍ତି, ତା'ର ଗୁରୁହେବା ପାଇଁ ତିଳେମାତ୍ର ଯୋଗ୍ୟତା ନଥାଏ । ବରଂ ଅସ୍ପୃଶ୍ୟ କୁଳରେ ଜାତ ହୋଇ ବି ବ୍ୟକ୍ତି ଯଦି ଉଚ୍ଚାଭିଳାଷୀ ଓ ଉଦାରମନା ହୋଇପାରିଲା । ତେବେ ସେ ହେବ ଯଥାର୍ଥ ଗୁରୁ । ଏ କ୍ଷେତ୍ରରେ ପ୍ରଫେସର ସାହୁ ହେଉଛନ୍ତି ସକରାତ୍ମକ ଚିନ୍ତା ଚେତନାର ଜଣେ ଉଜ୍ଜ୍ୱଳ ପୁରୁଷ । ତାଙ୍କର ହୃଦୟ ପବିତ୍ର, ଶୁଦ୍ଧ ଏବଂ ଉଦାର । ସେ ସଦା ପ୍ରସନ୍ନ, ସ୍ଥିତପ୍ରଜ୍ଞ, ନିର୍ବିକାର, ମୋହଶୂନ୍ୟ, ନିର୍ଲୋଭ ଏବଂ ଆଚରଣରେ ଜଗଦ୍‌ପୂଜ୍ୟ ।

ଅଭାବୀ ପରିବାରରେ ଜନ୍ମଗ୍ରହଣ କରିଥିବାରୁ ଦରିଦ୍ର ମେଧାବୀ ଛାତ୍ରଛାତ୍ରୀମାନଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ସ୍ନେହ ଭରି ରହିଥିଲା । ଛାତ୍ରମାନଙ୍କର ସୁଖ ଦୁଃଖରେ ସେ ସଦା ତତ୍ପର ଥିଲେ । କିଏ ଜ୍ୱର ବାଧିକା ପଡ଼ିଲେ, କାହା ଉପରକୁ ବିପଦ ଆସିଲେ ସେ ସହ୍ୟ କରିପାରୁ ନଥିଲେ । ବିଶ୍ୱବିଦ୍ୟାଳୟ ଦ୍ୱିତୀୟ ଛାତ୍ରାବାସର ତତ୍ତ୍ୱାବଧାରକ ଥିବାବେଳେ ତାଙ୍କର ଏହି ମନୋଭାବ ଆମେ ଅନୁଭବ କରିଛୁ । ସମଗ୍ର ଛାତ୍ରସମାଜ ଥିଲେ ତାଙ୍କର ପୁତ୍ର





କନ୍ୟା ତୁଲ୍ୟ । ସମୟ ହେଉ ବା ଅସମୟ ହେଉ, ଛାତ୍ରମାନଙ୍କର ବିପଦ ଆପଦରେ ସେ ଛାଏଁ ଛାଏଁ ତାଙ୍କ ନିକଟରେ ପହଞ୍ଚିଯାଉଥିଲେ, ଆର୍ଥିକ ସହାୟତା ବି କରୁଥିଲେ । ଛାତ୍ରମାନଙ୍କର ମୁଖରେ ପ୍ରତିଫଳିତ ଦୁଃଖ, ବିପଦ ଆପଦ ବା ଅଭାବର ଛାପ ପ୍ରଫେସର ସାହୁ ଆପେ ଆପେ ସେମାନଙ୍କ ଆଖିରୁ ହିଁ ବୁଝିପାରୁଥିଲେ । କିନ୍ତୁ ଯଦି ବିପଦ ଘୋଡ଼େଇବାକୁ କିଛି ମିଛ କହୁଥିଲା, ତାହା ତାଙ୍କ ସମ୍ମୁଖରେ ଖୁବ୍ ସହଜରେ ଧରାପଡ଼ି ଯାଉଥିଲା । ମୋଟାମୋଟି ପ୍ରଫେସର ସାହୁଙ୍କର ଏହି ମନୋଭାବ ଛାତ୍ରମାନଙ୍କ ମଧ୍ୟରେ ଗଭୀର ଆତ୍ମପ୍ରତ୍ୟୟ ସୃଷ୍ଟି କରିପାରିଥିଲା ।

ଶ୍ରେଣୀଗୃହ ବାହାରେ ଓଡ଼ିଆ ବିଭାଗର ଛାତ୍ରଛାତ୍ରୀମାନଙ୍କୁ ଯିଏ ତର୍କ ପ୍ରତିଯୋଗିତା, ପ୍ରବନ୍ଧ, କ୍ଷୁଦ୍ରଗଳ୍ପ, କବିତା ରଚନା ଓ ପ୍ରତିଯୋଗିତା ସହିତ ଓତପ୍ରୋତ ସଂଶ୍ଳିଷ୍ଟ କରି ରଖିଥିଲେ ଓ ଆଗାମୀ ଦିନରେ ଛାତ୍ରମାନଙ୍କୁ ନାନା ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ବାରମ୍ବାର ପ୍ରବର୍ତ୍ତାଉଥିଲେ । ସେମାନଙ୍କ ମଧ୍ୟରେ ପ୍ରଫେସର ବାସୁଦେବ ସାହୁ ଥିଲେ ଅନ୍ୟତମ । ଓଡ଼ିଆ କବିତା ଲେଖିବା ଓ ନାଟ୍ୟ ନିର୍ଦ୍ଦେଶନା ଦେବା କ୍ଷେତ୍ରରେ ପ୍ରଫେସର ସାହୁ ଆମ ବିଭାଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସମୁଦ୍ର ଓ ଜଗନ୍ନାଥ ତାଙ୍କ କବିତାର ଥିଲା ଦୁଇ ମୁଖ୍ୟ ଦିଗନ୍ତର । କବି ଭାବରେ ଉବୁଟୁବୁ ହେଉଥିବାବେଳେ ତାଙ୍କୁ ସମଗ୍ର ପୃଥିବୀ ଶ୍ରୀକ୍ଷେତ୍ର ପରି ପ୍ରତୀୟମାନ ହେଉଥିଲା । ପୁଣି ତାଙ୍କ ଚତୁର୍ଦ୍ଦିଗରେ ସେ ଜଗନ୍ନାଥଙ୍କ ମହାପ୍ରସାଦର ମହମହ ବାସ୍ନାରେ ପୁଲକିତ ହେଉଥିଲେ । ସମଗ୍ର ବିଶ୍ୱବିଦ୍ୟାଳୟରେ ଆମ ବିଭାଗର ଛାତ୍ରଛାତ୍ରୀମାନେ ବିଭିନ୍ନ କ୍ଷେତ୍ରରେ ସର୍ବୋଚ୍ଚ ଗୌରବର ଅଧିକାରୀ ହୁଅନ୍ତୁ, ବିଭାଗ ପାଇଁ ନାଁ ଆଣନ୍ତୁ, ଏହା ଥିଲା ତାଙ୍କର ଗଭୀର ଆଶା ଏବଂ ଛାତ୍ରମାନଙ୍କ ପ୍ରତି ତାଙ୍କର ସ୍ନେହାଶୀର୍ବାଦ । ସେଥିପାଇଁ ଶ୍ରେଣୀ ବାହାରେ ଆମ ଛାତ୍ରମାନଙ୍କୁ ସେ ନାନାଦିଗରୁ ପ୍ରସ୍ତୁତ କରିବାରେ ସଦା ତତ୍ପର ଥିଲେ ।

ଏଡ଼େବଡ଼ ଗୌରବର ଅଧିକାରୀ ହୋଇ ବି ତାଙ୍କର ପୋଷାକ ପରିଚ୍ଛଦ, ଖାଦ୍ୟପେୟ, ବ୍ୟବହାର ସବୁଥିରେ ସେ ଥିଲେ ମାର୍ଜିତ ଓ ଶୃଙ୍ଖଳିତ । ସମସ୍ତଙ୍କର ଅନୁକରଣୀୟ ଓ ଉଦାହରଣର ପାତ୍ର । ଧୀର ଚାଲି, ନମ୍ର ଓ ମାର୍ଜିତ ବ୍ୟବହାର, ସ୍ନେହଯୁକ୍ତ ବାଣୀ, ହସ ହସ ମୁଖର ଚାହାଣିରେ ସେ ସମଗ୍ର ଛାତ୍ର ସମାଜ ଓ ସହକର୍ମୀମାନଙ୍କର ହୃଦୟ ଜିଣିପାରିଥିଲେ । ସେ ଆଜି ଆମ ଗହଣରେ ନାହାନ୍ତି ସତ୍ୟ, ମାତ୍ର ତାଙ୍କର ସେହି ଅନାବିଳ ସ୍ନେହ ଓ ଅକୃତ୍ରିମ ବ୍ୟବହାର 'ଦିଗ୍‌ବାରେଣୀ' ସ୍ତମ୍ଭ ପରି ଆମକୁ ଭବିଷ୍ୟତ ପାଇଁ ପ୍ରସ୍ତୁତ ହେବାକୁ ମାର୍ଗ ଦର୍ଶନ କରିଛି ।

ବରିଷ୍ଠ ଅଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର-୭

# ବହୁମୁଖୀ ପ୍ରତିଭା ପ୍ରଫେସର ବାସୁଦେବ ସାହୁ

ଡଃ ରମେଶ ଚନ୍ଦ୍ର ବେହେରା

ଓଡ଼ିଆ ଭାଷା ସାହିତ୍ୟର ପ୍ରାଜ୍ଞ ପ୍ରଫେସର ବାସୁଦେବ ସାହୁ ଏକ ଅନନ୍ୟ ଉଚ୍ଚାରଣ । ଜଣେ ପ୍ରବୀଣ ଓ ଛାତ୍ରବତ୍ସଳ ଶିକ୍ଷକ ଭାବରେ ଦୀର୍ଘ ତିନି ଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଅଧ୍ୟାପନା କରି ଓଡ଼ିଆ ଆଚାର୍ଯ୍ୟ ପରମ୍ପରାରେ ନିଜ ପାଇଁ ସ୍ୱତନ୍ତ୍ର ପରିଚୟ ଛାଡ଼ିଯାଇଥିବା ଡଃ ସାହୁଙ୍କ ବହୁମୁଖୀ ବ୍ୟକ୍ତିତ୍ୱ ଯେତିକି ସ୍ମରଣଯୋଗ୍ୟ ସେତିକି ଉତ୍ସାହପ୍ରଦ । ୧୯୪୦ ମସିହାରେ ନୟାଗଡ଼ ଜିଲ୍ଲା ରଘୁନାଥ ପୀଠ ଓଡ଼ଗାଁ ନିକଟବର୍ତ୍ତୀ ରଙ୍ଗଣୀପାଟଣାରେ ଜନ୍ମିତ ଓ ନୟାଗଡ଼ ରଘୁନାଥ ବିଦ୍ୟାପୀଠ, ପୁରୀ ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟ, ଖ୍ରୀଷ୍ଟ କଲେଜ ଓ ରେଭେନ୍ସା କଲେଜରେ ଶିକ୍ଷାପ୍ରାପ୍ତ ସ୍ୱର୍ଗତ ସାହୁ ବାରିପଦା ଏମ୍.ପି.ସି କଲେଜ ଓ ପୁରୀ ଏସ୍.ସି.ଏସ୍ କଲେଜରେ ଅଧ୍ୟାପନା କରି ୧୯୬୯ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଅଧ୍ୟାପକ ରୂପେ ଯୋଗ ଦେଇଥିଲେ । ଏହିଠାରେ ସମୟକ୍ରମେ ସେ ରିଡ଼ର ଓ ପ୍ରଫେସର ପଦବୀକୁ ଉନ୍ନୀତ ହୋଇ ଶିକ୍ଷାଦାନ ସହିତ ସ୍ୱୀୟ ସାଧନାରେ ଉତ୍କର୍ଷ ପ୍ରତିପାଦନ କରିଥିଲେ । ଯେଉଁ କେତେଜଣ ପ୍ରଫେସରଙ୍କ ପ୍ରଜ୍ଞା, ଧୀଷଣା ଓ ସଶ୍ରଦ୍ଧ ସମ୍ପୃକ୍ତିରେ ବାଣୀବିହାର ଓଡ଼ିଆ ବିଭାଗ ଗୌରବାନ୍ୱିତ ହୋଇ ଓଡ଼ିଆ ଭାଷା ସାହିତ୍ୟ ଅଧ୍ୟୟନର ପ୍ରମୁଖ କେନ୍ଦ୍ରରେ ପରିଣତ ହୋଇଛି, ସେମାନଙ୍କ ମଧ୍ୟରେ ପ୍ରଫେସର ସାହୁଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ ।

ଶିକ୍ଷାଦାନ ସହିତ ଗବେଷଣା କରିବା ଓ ଗବେଷକମାନଙ୍କୁ ଉଚିତ ଦିଗ୍‌ଦର୍ଶନ ଦେବା ଜଣେ ବିଶ୍ୱବିଦ୍ୟାଳୟ ଶିକ୍ଷକଙ୍କ ଗୌରବ ବୃଦ୍ଧି କରିଥାଏ । ଏଥିପାଇଁ ଲୋଡ଼ା ପ୍ରଚଣ୍ଡ ପ୍ରତିଭା, ପ୍ରଜ୍ଞା ଓ ପାଣ୍ଡିତ୍ୟ । ଓଡ଼ିଆ ଭାଷା ସାହିତ୍ୟର ଗବେଷଣା ଇତିହାସରେ ଡଃ ସାହୁଙ୍କ ଅବଦାନ ଅତ୍ୟୁଚ୍ଚ ସମ୍ମାନ ଦାବି କରେ । 'ଓଡ଼ିଆ ଭାଷା ଉପରେ ବୈଦେଶିକ ଭାଷାର ପ୍ରଭାବ' (୧୯୭୩) ଶୀର୍ଷକ ସନ୍ଦର୍ଭ ତାଙ୍କ ପି.ଏଚ୍.ଡ଼ି ଗବେଷଣାର ଫଳଶ୍ରୁତି । ଏହି ଗବେଷଣା ସନ୍ଦର୍ଭଟି ଓଡ଼ିଆ ଭାଷାରେ ଯାବନିକ, ପର୍ତ୍ତୁଗୀଜ, ଇଂରାଜୀ ଆଦି ବୈଦେଶିକ ଭାଷାର ଆହରଣ ଓ ଆରୋପଣର ଆଧାର ଏବଂ ଧାର ଉପରେ ଆଲୋକପାତ କ୍ରିଅଛି । ୧୯୮୫ ରେ ଉପସ୍ଥାପିତ ତାଙ୍କର ଡି.ଲିଟ୍ ନିବନ୍ଧ ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା' ଦୁଇଖଣ୍ଡରେ ପ୍ରକାଶ ପାଇଛି । ଏଥିରେ ଡଃ ସାହୁ ଜଣେ ଗବେଷକର ଯଥାର୍ଥ ଧୈର୍ଯ୍ୟ,

ନିଷ୍ଠା ସହିତ ବହୁପାଠିତାର ପରିଚୟ ଦେଇଛନ୍ତି । ଓଡ଼ିଶାର ଆରାଧ୍ୟ ଦେବତା ତଥା ଓଡ଼ିଶୀ ସଂସ୍କୃତିର ପ୍ରମୁଖ ଉତ୍ସ ପ୍ରଭୁ ଶ୍ରୀ ଜଗନ୍ନାଥ ସହସ୍ରାଧିକ ବର୍ଷ ଧରି ଶିଳାଲେଖ, ତାମ୍ରଲେଖ, ସଂସ୍କୃତ ପୁରାଣ ତଥା ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ଯେଉଁଭଳି ଭାବରେ ଋଦ୍ଧିମନ୍ତ କରିଛନ୍ତି, ତାହାର ପଟାନ୍ତର ନାହିଁ । ପ୍ରଫେସର ସାହୁ ଏ ସମ୍ପର୍କରେ ବ୍ୟାପକ ଅଧ୍ୟବସାୟ ଓ ଅନୁସନ୍ଧାନ କରି ଯେଉଁ ପ୍ରାମାଣିକ ତଥ୍ୟ ଉପସ୍ଥାପନ କରିଛନ୍ତି, ତାହା ସନ୍ଦର୍ଭଟିକୁ ସତ୍ୟନିଷ୍ଠ ଓ ସମୁଜ୍ଜ୍ୱଳ କରିବାରେ ଯଥେଷ୍ଟ ସହାୟକ ।

ପ୍ରଫେସର ସାହୁଙ୍କ ଜ୍ଞାନର ଗଭୀରତା, ବହୁଶାସ୍ତ୍ରଦର୍ଶିତା, ଯୁକ୍ତିନିଷ୍ଠତା ଓ ନିରପେକ୍ଷ ଦୃଷ୍ଟିକୋଣର ବ୍ୟାପକ ଦିଗ ଉନ୍ମୋଚିତ ହେବ ତାଙ୍କ ଦିଗ୍‌ଦର୍ଶନର ଦୀପ୍ତି ଓ ଦ୍ୟୁତିରୁ । ଅନେକ ଏମ୍.ଫିଲ୍ ଛାତ୍ରଙ୍କ ସହ ପ୍ରାୟ ଷାଠିଏରୁ ଊର୍ଦ୍ଧ୍ୱ ପି.ଏଚ୍.ଡ଼ି ଓ ଡି.ଲିଟ୍ ସ୍କଲାରଙ୍କୁ ସଫଳତାର ସହ ଦିଗ୍‌ଦର୍ଶନ ଦେଇ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଯେଉଁସବୁ ଅଜ୍ଞାତ ଅଧ୍ୟାୟ ଲୋକଲୋଚନକୁ ଆଣିବାରେ ସେ ସହାୟକ ସାଜିଛନ୍ତି, ତହିଁରୁ ତାଙ୍କ ବିଦ୍ୱତାର ପରିଚୟ ମିଳେ । ବହୁ ତରୁଣ, ପ୍ରବୀଣ ତଥା ତାଙ୍କଠାରୁ ବୟସରେ ବଡ଼ ଗବେଷଣା-ପ୍ରୟାସୀଙ୍କୁ ସେ ଦିଗ୍‌ଦର୍ଶନ ଦେଇଛନ୍ତି । ବିଷୟ ନିର୍ବାଚନରେ ତାଙ୍କର ରୁଚି ସ୍ୱତନ୍ତ୍ର । ଅନାଲୋଚିତ ଦିଗ, ଗବେଷକର ଯୋଗ୍ୟତା, ସମୟାନୁଯାୟୀ ଉପଯୋଗିତା, ତଥ୍ୟ ସନ୍ଧାନ ଉତ୍ସର ନିର୍ଦ୍ଦିଷ୍ଟତା, କ୍ଷେତ୍ରୀୟ ପର୍ଯ୍ୟବେକ୍ଷଣର ସୁବିଧା, ଶ୍ରମ-ସମୟ-ଅର୍ଥ ସାପେକ୍ଷତା ପ୍ରଭୃତି ଅନେକ ପ୍ରସଙ୍ଗ ବିଚାରକୁ ନେଇ ସେ ଗବେଷଣାର ବିଷୟ ନିର୍ବାଚନ କରିଥାନ୍ତି । ଆଧୁନିକ ଭାଷାତତ୍ତ୍ୱ, ତୁଳନାତ୍ମକ ଭାଷାବିଜ୍ଞାନ, ଓଡ଼ିଆ ଭାଷାର ଇତିହାସ, ଓଡ଼ିଆ ବ୍ୟାକରଣ, ପ୍ରାଚୀନ-ମଧ୍ୟ-ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ଶାଖା ଓ ଦିଗ ଉପରେ ଦିଗ୍‌ଦର୍ଶନ ଦେବାର ସ୍ପର୍ଦ୍ଧା ଓ ଦକ୍ଷତା ତାଙ୍କ ନିଷ୍କପଟ ବୌଦ୍ଧିକ ସାଧୁତାର ନିଦର୍ଶନ ବହନ କରେ । ଗଭୀର ନିଷ୍ଠା, ଅସୀମ ଧୈର୍ଯ୍ୟ ଓ କଷ୍ଟସାଧ୍ୟ ଅଧ୍ୟବସାୟ ନଥିଲେ କୌଣସି ଗବେଷକ ତାଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବା ବିଡ଼ମ୍ବନା ।

ଓଡ଼ିଶାର ମୁଷ୍ଟିମେୟ ଭାଷାବିତ୍‌ଙ୍କ ମଧ୍ୟରେ ପ୍ରଫେସର ସାହୁ ଅନ୍ୟତମ । ଓଡ଼ିଆ, ଇଂରାଜୀ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଆସାମୀ ଓ ଭୋଜପୁରୀ ପ୍ରଭୃତି ଭାଷା ତଥା ଦେଶିଆ, ଭତ୍ରୀ, ବାଥୁରୀ, ସମ୍ବଲପୁରୀ ଆଦି ଆଞ୍ଚଳିକ ଭାଷା ଆୟତ କରିପାରିଥିବାରୁ ସେ ଭାଷା-ଚର୍ଚ୍ଚା କ୍ଷେତ୍ରରେ ଜଣେ ଆଗଧାଡ଼ିର ବିଦ୍ୱାନ୍ । ସାଧାରଣ ଭାଷାତତ୍ତ୍ୱ ସହ ଓଡ଼ିଆ ଧ୍ୱନିତତ୍ତ୍ୱ, ଶବ୍ଦତତ୍ତ୍ୱ, ଲିପିତତ୍ତ୍ୱ ଇତ୍ୟାଦିର ବୈଜ୍ଞାନିକ ବିଶ୍ଲେଷଣ ପୂର୍ବକ ଯେଉଁସବୁ ବୋଧଗମ୍ୟ ବ୍ୟାଖ୍ୟା ପ୍ରଦାନ କରି ସେ ଭାଷା ଚର୍ଚ୍ଚା କରିଛନ୍ତି, ତାହା ତାଙ୍କୁ ଜଣେ ଚର୍ଚ୍ଚିତ ଭାଷାବିତ୍ ଭାବରେ ପ୍ରତିଷ୍ଠା ଦେଇଛି । ଓଡ଼ିଆ ଭାଷାର ଉତ୍ପତ୍ତି, ବିକାଶ ଏବଂ ଏ ଭାଷାରେ ଅନ୍ୟାନ୍ୟ ଭାଷାର ପ୍ରଭାବ ସମ୍ପର୍କରେ ବିଧିବଦ୍ଧ ଓ ସୁଶୃଙ୍ଖଳିତ ଆଲୋଚନା କରି ସେ ଯେଉଁ ଅଭାବ ପୂରଣ

କରିଛନ୍ତି, ତାହା ବେଶ୍ ପ୍ରଶଂସନୀୟ । ଭାଷା ବିଜ୍ଞାନର ରୂପରେଖ (୧୯୭୫), ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ (୧୯୮୨), ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ (୧୯୮୨), ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟ ଭାଷା (୧୯୮୩), ଭାଷାବିଜ୍ଞାନ ଓ ବିଜ୍ଞାନୀ (୧୯୮୭) ଆଦି ଗ୍ରନ୍ଥ ଏହି ଭାଷାବିଜ୍ଞାନୀଙ୍କର ଗୋଟିଏ ଗୋଟିଏ ଅଦ୍ୱିତୀୟ ଉପହାର । ଓଡ଼ିଆ ଭାଷା-ଗବେଷକ, ଅଧ୍ୟାପକ ତଥା ସ୍ନାତକ ଓ ସ୍ନାତକୋତ୍ତର ଛାତ୍ରଛାତ୍ରୀମାନଙ୍କ ପାଇଁ ଏ ପୁସ୍ତକଗୁଡ଼ିକର ଉପାଦେୟତା ଅତୁଳନୀୟ ।

'ଭାଷା ବିଜ୍ଞାନର ରୂପରେଖ' ଗ୍ରନ୍ଥରେ ଭାଷାର ସଂଜ୍ଞା, ଶ୍ରେଣୀ, ସ୍ୱରୂପ ସହିତ ଧ୍ୱନି, ଲିପି, ଶବ୍ଦ, ରୂପ, ଅର୍ଥ ଓ ବାକ୍ୟ ବିଜ୍ଞାନର ତାତ୍ତ୍ୱିକ ଆକଳନ ହୋଇଥିବାବେଳେ ଓଡ଼ିଆ ଭାଷା ଓ ଓଡ଼ିଆ ଲିପିର ଉତ୍ପତ୍ତି ଓ ଅଗ୍ରଗତି ସମ୍ବନ୍ଧୀୟ ଆଲୋଚନା 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ' ପୁସ୍ତକରେ ସନ୍ନିବେଶିତ । ଓଡ଼ିଆ ଭାଷାରେ ପ୍ରଚଳିତ ନିୟମ ଅର୍ଦ୍ଧତତ୍ସମ୍, ଦେଶଜ ଓ ବୈଦେଶିକ ଶବ୍ଦ ଭଣ୍ଡାରର ବିଭାଗୀକରଣ ଓ ବ୍ୟୁତ୍ପତ୍ତିଧାରା ନିର୍ଣ୍ଣୟ ତାଙ୍କର 'ଓଡ଼ିଆ ଶବ୍ଦବ୍ୟୁତ୍ପତ୍ତି ବିଜ୍ଞାନ' ଗ୍ରନ୍ଥର ବୈଶିଷ୍ଟ୍ୟ । 'ପୃଥିବୀର ଭାଷାଗୋଷ୍ଠୀ' ଓ 'ଭାରତୀୟ ଆର୍ଯ୍ୟଭାଷା' ଗ୍ରନ୍ଥ ଭାଷାର ଏକ ତୁଳନାତ୍ମକ ଓ ଐତିହାସିକ ଅଧ୍ୟୟନ । ପୃଥିବୀରେ ପ୍ରଚଳିତ ଭାଷା ପରିବାର ଓ ଇଣ୍ଡୋ-ୟୁରୋପୀୟ ଭାଷା ପରିବାରର ବିଭାଗୀକରଣ କରି ସେ ସତମ୍ ଓ କେନ୍ତୁମ୍ ଶାଖା ଅନ୍ତର୍ଗତ ଭାଷାଗୋଷ୍ଠୀର ମୌଳିକ ପ୍ରଭେଦ ଓ ସାମଞ୍ଜସ୍ୟ ଦର୍ଶାଇଛନ୍ତି । 'ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ' ପୁସ୍ତକରେ ଭାଷା ଓ ଉପଭାଷାର ବିଭିନ୍ନ କ୍ଷେତ୍ର ଉପରେ ଆଲୋଚନା ସହ କତିପୟ ବିଶିଷ୍ଟ ଭାଷାତତ୍ତ୍ୱବିତ୍‌ଙ୍କ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଚର୍ଚ୍ଚା ପ୍ରକାଶ ପାଉଛି । ପାଣିନି, କାତ୍ୟାୟନ, ପତଞ୍ଜଳି, ଜନବିମ୍ସ, ଗ୍ରୀୟରସନ୍, ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ଭାଷାବିଜ୍ଞାନୀଙ୍କ ଅବଦାନ ସମ୍ପର୍କରେ ଆଲୋକପାତ କରିବାରେ ପ୍ରଫେସର ସାହୁ ଯେଉଁ ପ୍ରଯତ୍ନ କରିଛନ୍ତି, ତାହା ତାଙ୍କ ଭାଷା-ଇତିହାସ ଦୃଷ୍ଟିର ସଫଳ ପରିଚୟ ।

ଭାଷା ଗବେଷଣାରେ ପରିମାଣାତ୍ମକତା ଓ ଗୁଣାତ୍ମକତା ଯୋଗୁ ସେ ଜଣେ ଭାଷାତତ୍ତ୍ୱବିତ୍ ଭାବରେ ଅଧିକ ପରିଚିତ ହେଲେ ମଧ୍ୟ ସାହିତ୍ୟ ସମାଲୋଚନା ଓ ସମୀକ୍ଷା କ୍ଷେତ୍ରରେ ତାଙ୍କର କୃତିତ୍ୱ ଅବିସ୍ମରଣୀୟ, 'ଅଳଙ୍କାରତତ୍ତ୍ୱ', 'ସାହିତ୍ୟିକ ଦିଗ୍‌ଦର୍ଶନ', 'ଓଡ଼ିଆ ସାହିତ୍ୟର ସୃଷ୍ଟି ସମ୍ପଦ', 'ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ', ଓଡ଼ିଆ ସାହିତ୍ୟରେ ଧର୍ମୀୟ ପରମ୍ପରା' ପ୍ରଭୃତି ଗ୍ରନ୍ଥଗୁଡ଼ିକରେ ଡଃ ସାହୁ ଜଣେ ସଫଳ ସମୀକ୍ଷକ ରୂପରେ ଅବତୀର୍ଣ୍ଣ ହୋଇଥିବାର ଜଣାଯାଏ । ଅଳଙ୍କାରର ସଂଜ୍ଞା, ସ୍ୱରୂପ ଓ ଶ୍ରେଣୀ ବିଭାଗ ଏବଂ ଏଥି ସହିତ ରସ, ରୀତି, ଗୁଣ, ଧ୍ୱନି ଓ ବକ୍ରୋକ୍ତିର ସମ୍ପର୍କ ତଥା ସାମଞ୍ଜସ୍ୟ ଖୁବ୍ ସଂକ୍ଷିପ୍ତ ଅଥଚ ପ୍ରାଞ୍ଜଳ ଭାବରେ 'ଅଳଙ୍କାରତତ୍ତ୍ୱ' ପୁସ୍ତକରେ ଦର୍ଶାଇଦିଆଯାଇଛି । ସଂସ୍କୃତ, ଓଡ଼ିଆ,

ବଙ୍ଗଳା ଆଦି ସାହିତ୍ୟରୁ ବିଭିନ୍ନ ଅଳଙ୍କାରର ଦୃଷ୍ଟାନ୍ତ ଉଦ୍ଧାର କରିବାରେ ଓ ସ୍ଥାନ ବିଶେଷରେ ଓଡ଼ିଆ ଅନୁବାଦ କରି ଉପସ୍ଥାପନ କରିବାରେ ସେ ବହୁଭାଷା ଓ ବହୁଶାସ୍ତ୍ର ଜ୍ଞାନର ପରିଚୟ ଦେଇଛନ୍ତି । 'ସାହିତ୍ୟିକ ଦିଗ୍‌ଦର୍ଶନ' ଓ 'ଓଡ଼ିଆ ସାହିତ୍ୟର ସୃଷ୍ଟି ସମ୍ପଦ' ପୁସ୍ତକ ଦ୍ୱୟରୁ ଆଲୋଚନାର ବୈଚିତ୍ର୍ୟ ପରିଦୃଷ୍ଟ ହୁଏ । ଚର୍ଯ୍ୟାଗୀତିକା, ସାରଳା ସାହିତ୍ୟ, ପଞ୍ଚସଖା ସାହିତ୍ୟ, ଭଞ୍ଜ ସାହିତ୍ୟ, ବଡ଼ଜେନା ସାହିତ୍ୟ, ଗଙ୍ଗାଧର-ମଧୁସୂଦନ-ଫକୀରମୋହନ ସାହିତ୍ୟ ସମ୍ପର୍କରେ ବ୍ୟକ୍ତିନିଷ୍ଠ ସୂକ୍ଷ୍ମ ଆଲୋଚନାରୁ ଜଣେ ବିଜ୍ଞ ଆଲୋଚକର ନିଷ୍ଠା, ନିରପେକ୍ଷତା ଓ ମୌଳିକ ଦୃଷ୍ଟଭଂଗୀର ପରିଚୟ ମିଳିଥାଏ ।

ତାଙ୍କର 'ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ' ଓ 'ଆଧୁନିକ ସାହିତ୍ୟ ଭାଷ୍ୟ' ଗ୍ରନ୍ଥ ଦ୍ୱୟରେ ଆଧୁନିକ ଓଡ଼ିଆ ଗଳ୍ପ, ଉପନ୍ୟାସ, କବିତା, ନାଟକ, ଜୀବନୀ ସହ ଆଧୁନିକ ସାହିତ୍ୟର ତାତ୍ତ୍ୱିକ ବିଚାର-ବିମର୍ଶ ପରିଲକ୍ଷିତ ହୁଏ । ଆଧୁନିକ ଓଡ଼ିଆ କବିତାର ଆଙ୍ଗିକ ଓ ଆତ୍ମିକ ଅବବୋଧ ପ୍ରତି ପାଠକୀୟ ଶ୍ରଦ୍ଧା ସୃଷ୍ଟି କରିବାରେ 'ଆଧୁନିକ ସାହିତ୍ୟ ଭାଷ୍ୟ'ରେ ସ୍ଥାନିତ 'ଆଧୁନିକ ଓଡ଼ିଆ କବିତାରେ ଚିତ୍ରକଳ୍ପର ଭୂମିକା', 'ଆଧୁନିକ ଓଡ଼ିଆ କବିତାରେ ପ୍ରତୀକ' ନିବନ୍ଧ ଦୁଇଟି ଅତୀବ ଉପାଦେୟ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମୀକ୍ଷକମାନଙ୍କ ଯୁକ୍ତି ଉପସ୍ଥାପନ ପୂର୍ବକ ଚିତ୍ରକଳ୍ପର ସ୍ୱରୂପ ବିଶ୍ଳେଷଣ ଓ ଇଂରାଜୀ, ଲାଟିନ୍, ଚୈନିକ ଓ ସଂସ୍କୃତ ଆଦି ସାହିତ୍ୟରୁ ଚିତ୍ରକଳ୍ପର ନମୁନା ଉଦ୍ଧାର ଓ ଓଡ଼ିଆ କବିତାରେ ଏହାର ପ୍ରୟୋଗ ସମ୍ପର୍କରେ ଦୀର୍ଘ ଆଲୋଚନା ପ୍ରଫେସର ସାହୁଙ୍କ ବୈଜ୍ଞାନିକ ବ୍ୟାପ୍ତି ସୂଚାଇଥାଏ । 'ଆଧୁନିକ ଓଡ଼ିଆ ଉପନ୍ୟାସରେ ଚେତନା ପ୍ରବାହ' ଓ 'ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପରେ ଯୁଗଯନ୍ତ୍ରଣା' ଶୀର୍ଷକ ସମୀକ୍ଷା ଦୁଇଟିରୁ କଥା ସାହିତ୍ୟ ଉପରେ ତାଙ୍କର ଗଭୀର ଅନୁପ୍ରବେଶ ସୂଚିତ ହୁଏ । କି ପ୍ରାଚୀନ କି ମଧ୍ୟ କି ଆଧୁନିକ ପ୍ରତ୍ୟେକ କାଳର ସାହିତ୍ୟ ଉପରେ ତାଙ୍କର ଯେଉଁ ଅନ୍ତରଙ୍ଗ ଅବଗାହନ ତାହା ବ୍ୟକ୍ତିନିଷ୍ଠ ବିଚାରଧାରାରେ ତାଙ୍କ ସମୀକ୍ଷାବଳୀକୁ ଯେତିକି ଐଶ୍ୱର୍ଯ୍ୟମଣ୍ଡିତ କରିଛି, ନିଜସ୍ୱ ଭାଷା ଶୈଳୀର ସାବଲୀଳ ପ୍ରୟୋଗରେ ସେତିକି ପାଠକପ୍ରିୟ ହୋଇପାରିଛି ।

ସଂକଳନ ଓ ସମ୍ପାଦନା ଦାୟିତ୍ୱ ନିର୍ବାହ ତାଙ୍କ ପ୍ରତିଭାର ଅନ୍ୟତମ ଦିଗ । ସେ ସାରଳା ଦାସଙ୍କ ଚଣ୍ଡୀପୁରାଣ ଓ ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ସୁଲକ୍ଷଣା ଗ୍ରନ୍ଥର ଶୁଦ୍ଧ ସମ୍ପାଦନା ସହ ସମୀକ୍ଷା କରିଛନ୍ତି । ଓଡ଼ିଆ ପୋଥିର ଅନୁସନ୍ଧାନ ଓ ଅଧ୍ୟୟନ କରି ସେ ପ୍ରାଚୀନ ପାଣ୍ଡୁଲିପିଗୁଡ଼ିକର ବର୍ଣ୍ଣନାତ୍ମକ ଗ୍ରନ୍ଥସୂଚୀ ପ୍ରସ୍ତୁତ କରି ଦୁଇଭାଗରେ ପ୍ରକାଶ କରିଛନ୍ତି । Descriptive Catalogue of Oriya Manuscripts (Vol-I-1975, VolI-II 1975) ଗ୍ରନ୍ଥରେ ଡଃ ସାହୁ ୧୧୨ଟି ପୋଥିର ବର୍ଣ୍ଣନାତ୍ମକ ବିବରଣୀ ପ୍ରଦାନ କରି ଯଥେଷ୍ଟ ଶ୍ରମ ସ୍ୱୀକାର ପୂର୍ବକ ବର୍ଣ୍ଣନାତ୍ମକ ଗ୍ରନ୍ଥସୂଚୀ ପ୍ରସ୍ତୁତ କରିଛନ୍ତି । 'ପ୍ରବନ୍ଧ ସମାରୋହ', 'ପ୍ରବନ୍ଧ ସୌରଭ', 'ପ୍ରଦୀପ ଶିଖା', 'ପାରିଜାତକ', 'ମୋ ସାହିତ୍ୟ' ଆଦି ପୁସ୍ତକ ମଧ୍ୟ ସେ

ସଂକଳନ କରିଛନ୍ତି । ଏତଦ୍‌ବ୍ୟତୀତ 'ସାଗରିକା', 'ଉନ୍ମେଷ', 'ସାନ୍ତ୍ୱନା', 'ମନଫସଲ', 'ସଂଜୀବନୀ' ପରି ପତ୍ରିକାମାନଙ୍କର ସମ୍ପାଦକ/ମୁଖ୍ୟ ସଂପାଦକ ଭାବରେ ନିଜ ସାରସ୍ୱତ ପ୍ରତିଭାର ଭିନ୍ନ ଏକ ଦିଗନ୍ତକୁ ପ୍ରକାଶ କରିଛନ୍ତି ।

ଭାଷାବିଜ୍ଞାନୀର ବିଦ୍‌ବତ୍ତା, ସମାଲୋଚକର ସତ୍ୟନିଷ୍ଠତା, ସଂକଳନର ସଂଗ୍ରହାକାଂକ୍ଷା ମଧ୍ୟରେ ଥିବା ବନ୍ଧୁର ଓ କର୍କଶ ବଳୟ ଭେଦକଲାବେଳେ 'ପ୍ରଫେସର ବାସୁଦେବ' ଯେପରି ବଡ଼ ହୋଇ ଦିଶନ୍ତି, ତାଙ୍କ କବିତାର କମ୍ରକାନନ ଓ ଗଳ୍ପର ଗୋଲକ କୁଞ୍ଜରେ ପରିଭ୍ରମଣ କଲାବେଳେ 'ସର୍ଜନଶୀଳ ସ୍ରଷ୍ଟା ବାସୁଦେବ' ସେପରି ସମୁଜ୍ଜ୍ୱଳ ହୋଇଉଠନ୍ତି । ତାଙ୍କର ଏକମାତ୍ର କବିତା ସଂକଳନ 'ସମ୍ବିତ୍' (୧୯୭୨) ରେ ମାଟି ଓ ମଣିଷକୁ ଭଲପାଇବାର ଯେତିକି ଉଷ୍ମ ଆବେଗ ଉଚ୍ଚାରିତ, ରୂପାତୀତ ଅତିନ୍ଦ୍ରିୟ ପ୍ରତି ସେତିକି ଉଦାର ଆଶ୍ଳେଷ ପ୍ରମୂର୍ତ୍ତ । 'ଦାଢ୍ୟତା ଭକ୍ତି'ର କେତେକ ଜନପ୍ରିୟ ପ୍ରସଙ୍ଗକୁ କ୍ଷୁଦ୍ରଗଳ୍ପର ପ୍ରକରଣ ମଧ୍ୟରେ ପ୍ରକାଶ କରିବା ସହିତ ଅନ୍ୟକେତେକ କାହାଣୀ ରଚନା ମଧ୍ୟରେ ବାସୁଦେବଙ୍କ କଥାଶିଳ୍ପୀ ସତ୍ତାଟି ଅଙ୍କୁରିତ । ଭାଷାଚର୍ଚ୍ଚା, ସମୀକ୍ଷା ଓ ଗବେଷଣା ଯେଉଁ ସମୟ ପ୍ରାଚୁର୍ଯ୍ୟ ଦାବି କରିଛି, ତାହା କବି ଓ କଥାକାର ଭାବେ ବାସୁଦେବଙ୍କ ପ୍ରତିଷ୍ଠା ପଥରେ ଅନ୍ତରାୟ ହୋଇଛି । ତେବେ ଏକମାତ୍ର କବିତାଗ୍ରନ୍ଥ ଓ ସ୍ୱଳ୍ପକଥାକୃତି ମଧ୍ୟରେ ତାଙ୍କ ସର୍ଜନଶୀଳ ପ୍ରତିଭାର ଯେଉଁ ଆଭାସ ମିଳେ, ତାହା ବିସ୍ମୟଜନକ ।

ପ୍ରଫେସର ପଦ ମଣ୍ଡନ କରିଥିବା ଓଡ଼ିଆ ଅଧ୍ୟାପକମାନଙ୍କ ମଧ୍ୟରେ ଯେଉଁ ହାତଗଣତି କେତେଜଣ ସ୍ୱନାମ ସୁବିଦିତ କରିଛନ୍ତି, ସେମାନଙ୍କ ମଧ୍ୟରେ ଡଃ ବାସୁଦେବ ସାହୁ ଯେ ଅନ୍ୟତମ ହୋଇ ରହିବେ-ଏହା ନିର୍ବିବାଦରେ ଗ୍ରହଣ କରାଯାଇପାରେ । ନିରବଚ୍ଛିନ୍ନ ନିଷ୍ଠା, ଅନ୍ତହୀନ ଅଧ୍ୟବସାୟ ଓ ଐକାନ୍ତିକ ଆପଣାପଣରେ ସେ ସ୍ୱକୀୟ ବ୍ୟକ୍ତିତ୍ୱର ଯେଉଁ ବର୍ଣ୍ଣାଳି ସୃଷ୍ଟି କରିଛନ୍ତି, ତାହା ମଳିନ ହେବାର ନୁହେଁ ।



ଭଦ୍ରକ ଜୁନିଅର କଲେଜ
ଭଦ୍ରକ

# ସଫଳ ସଂଗଠକ ପ୍ରଫେସର ଡକ୍ଟର ବାସୁଦେବ ସାହୁ

ଡଃ ପ୍ରମୋଦ କୁମାର ଦାଶ

ପ୍ରଫେସର ଡଃ ବାସୁଦେବ ସାହୁ ଏକାଧାରରେ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ତଥା ସୁସଂଗଠକ ଭାବରେ ଅଶେଷ ଖ୍ୟାତି ଅର୍ଜନ କରିଅଛନ୍ତି । ପ୍ରଜ୍ଞାପୁରୁଷ ଆପଣାର ପ୍ରତିଭା ତଥା ଧୀଶକ୍ତି ବଳରେ ଜୀବନରେ ଯେଉଁ ଖ୍ୟାତି ଅର୍ଜନ କରିଯାଇଅଛନ୍ତି ତାହା ଓଡ଼ିଆ ଭାଷା-ସାହିତ୍ୟ କେବଳ ନୁହେଁ, ବିଭିନ୍ନ ଅନୁଷ୍ଠାନ ମଧ୍ୟ ତାଙ୍କୁ ସ୍ମରଣୀୟ କରି ରଖିବ-ଏହା ନିଃସନ୍ଦେହ । ପଙ୍କରୁ ପଙ୍କଜ ଜନ୍ମ ନେଲାଭଳି ସେ ଏକ ସାଧାରଣ ସ୍ତରରୁ ବହୁ ଊର୍ଦ୍ଧ୍ୱକୁ ଉଠି ଆପଣା ସୌରଭରେ ବିଭିନ୍ନ ଅନୁଷ୍ଠାନ, କର୍ମକର୍ତ୍ତା ଓ ବ୍ୟକ୍ତିବିଶେଷଙ୍କୁ ଅନୁପ୍ରାଣିତ କରିଅଛନ୍ତି ଓ ଏକ ଆଦର୍ଶ ବ୍ୟକ୍ତିତ୍ୱ ଭାବରେ ଆପଣା ମହନୀୟତାକୁ ପ୍ରତିପାଦିତ କରିଅଛନ୍ତି । ପ୍ରତିଭାବନ୍ତ ପୁରୁଷ ଡଃ ସାହୁଙ୍କ ପାଖରେ ବିଦ୍ୟା, ବିନୟ, ପ୍ରଜ୍ଞା ତଥା ମହନୀୟତା ଯେଭଳି ଭରି ରହିଥିଲା ସାଂଗଠନିକ କାର୍ଯ୍ୟରେ ସେହିଭଳି ସେ ଆପଣାକୁ ମଜାଇ ଦେଉଥିଲେ । ପରଆପଣା ଭେଦଭାବ ଭୁଲି, ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ବିଭିନ୍ନ ସଂଗଠନ ସହିତ ଆତ୍ମୀୟତା ସେ ସ୍ଥାପନ କରିଥିଲେ । ତେଣୁ ସାହିତ୍ୟିକ, ଲେଖକ, ଛାତ୍ରବତ୍ସଳ ଶିକ୍ଷକ ଭାବରେ ସେ ଯେଉଁଭଳି ଭାବରେ ପ୍ରସିଦ୍ଧି ଅର୍ଜନ କରିଯାଇଅଛନ୍ତି ଜଣେ ସଫଳ ସଂଗଠକ ଭାବରେ ମଧ୍ୟ ସେହି କୀର୍ତ୍ତିର ଅଧିକାରୀ ହୋଇପାରିଛନ୍ତି ।

ବାଲ୍ୟକାଳରୁ ଡଃ ସାହୁଙ୍କ ଶିକ୍ଷାପ୍ରତି ଆଗ୍ରହ ଯେପରି ଥିଲା ସମାଜ ଗଠନରେ ସେହିଭଳି ପ୍ରତିଷ୍ଠା ମଧ୍ୟ ରହିଥିଲା । ଭାରତ ସ୍ୱାଧୀନ ହେବାବେଳକୁ ସେ ଗାଁ ପ୍ରାଥମିକ ବିଦ୍ୟାଳୟର ଛାତ୍ର ଥିଲେ କିନ୍ତୁ ଆପଣା ଗ୍ରାମର ଶିକ୍ଷାର ଉନ୍ନତି ପାଇଁ ନିଃସ୍ୱାର୍ଥ ଓ ବଳିଷ୍ଠ ନେତୃତ୍ୱ ନେଇ ଗାଁରେ ଏକ ''ବାନର ସେନା ସେବାଦଳ'' ଗଢ଼ିଥିଲେ । ସେ ସମୟରେ ଅବିଭକ୍ତ ପୁରୀ ଜିଲ୍ଲାର ଓଡ଼ଗାଁ ନିକଟସ୍ଥ ରଙ୍ଗଣୀପାଟଣାରେ ସେ ଏଭଳି ଏକ ଦଳ ଗଢ଼ି ଆପଣାର ପ୍ରଚଣ୍ଡ ବାଗ୍ମିତା ବଳରେ ଲୋକମାନଙ୍କୁ ଆଶ୍ଚର୍ଯ୍ୟଚକିତ କରିଦେଇଥିଲେ । ଫଳରେ ପ୍ରତିରୋଧ ଓ ପ୍ରତିବାଦ ସତ୍ତ୍ୱେ ଗାଁରେ ଏକ ମାଇନର ସ୍କୁଲ୍ ଗଠନ କରିପାରିଥିଲେ । ସାମୂହିକ ଉଦ୍ୟମ ବଳରେ ଏବଂ ଆପଣା ନେତୃତ୍ୱ ବଳରେ ଶିକ୍ଷାର ଉନ୍ନତି ଘଟାଇ ଏକ ପଲ୍ଲୀଗ୍ରାମକୁ ଲୋକଲୋଚନକୁ ଆଣିପାରିଥିଲେ । କେବଳ ସେତିକି ନୁହେଁ ନବୀନ ଯୁବକମାନଙ୍କୁ

ଆପଣା ଆଦର୍ଶରେ ସେ ଅନୁପ୍ରାଣିତ କରାଇ ଗାଁ ପ୍ରତି, ସମାଜ ପ୍ରତି, ବିଶେଷ କରି ଅଶିକ୍ଷା, କୁସଂସ୍କାର ଆଦିରେ ବୁଡ଼ିରହିଥିବା ଦରିଦ୍ର ଲୋକମାନଙ୍କ ପ୍ରତି ଆମ କର୍ତ୍ତବ୍ୟ ସଂପର୍କରେ ସେ ସଚେତନ କରାଇଥିଲେ । ଆପଣାର ଐକାନ୍ତିକ ଉଦ୍ୟମ, ସାମୂହିକ ପ୍ରଚେଷ୍ଟା ଓ ନିଷ୍ଠା ବଳରେ ସେ ଅସାଧାରଣ କାର୍ଯ୍ୟକୁ ମଧ୍ୟ ସାଧାରଣରେ ପରିଣତ କରିପାରୁଥିଲେ ।

ଅଧ୍ୟାପନାକୁ ଜୀବନର ଏକମାତ୍ର ମୂଳମନ୍ତ୍ର ରୂପେ ଗ୍ରହଣ କରି ସେ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ, ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଆପଣାର ପରାକାଷ୍ଠା, ନିଷ୍ଠା ଓ ଆନ୍ତରିକତା ପ୍ରଦର୍ଶନ କରିଯାଇଛନ୍ତି । ଅଧ୍ୟାପନା ବ୍ୟତୀତ ଏସବୁ ଅନୁଷ୍ଠାନଗୁଡ଼ିକରେ ଅନେକ କର୍ମଦାୟିତ୍ୱରେ ସେ ଦକ୍ଷତା ପ୍ରଦର୍ଶନ କରିପାରିଥିବା ଯୋଗୁ ଅଧିକାଂଶ ବ୍ୟକ୍ତିବିଶେଷଙ୍କର ପ୍ରୀତିଭାଜନ ହୋଇପାରିଛନ୍ତି ଓ ଅନୁଷ୍ଠାନମାନଙ୍କର ମହତ୍ୱ ବଢ଼ାଇପାରିଛନ୍ତି । ବାଣୀବିହାର ଦ୍ୱିତୀୟ ଛାତ୍ରାବାସର ତତ୍ତ୍ୱାବଧାରକ, ନାଟ୍ୟସଂସଦର ଉପସଭାପତି, ଛାତ୍ରସଂସଦ ଉପଦେଷ୍ଟା, ବିବେକାନନ୍ଦ ପାଠାଗାରର ନିର୍ଦ୍ଦେଶକ ଭାବରେ ସେ ପ୍ରାୟ ପ୍ରତ୍ୟେକ ଛାତ୍ର ଓ ଶିକ୍ଷକମାନଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଏହାଛଡ଼ା ଓଡ଼ିଶା ଓ ଓଡ଼ିଶା ବାହାରେ ସେ ବିଭିନ୍ନ ସାଂଗଠନିକ କାର୍ଯ୍ୟରେ ମନୋନିବେଶ କରି ସଫଳକାମ ହୋଇପାରିଛନ୍ତି । ଇନ୍ଦିରାଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟର ଓଡ଼ିଆ ପାଠ୍ୟପୁସ୍ତକ ପ୍ରସ୍ତୁତି କମିଟିର ମୁଖ୍ୟ ସଂପାଦନା ଦାୟିତ୍ୱରେ ରହି ସେ ଚାରିଗୋଟି ପୁସ୍ତକ ସଂକଳନ କରିଛନ୍ତି । ସେହିପରି ମାଧ୍ୟମିକ ଶିକ୍ଷା ପରିଷଦ, ଓଡ଼ିଆ ବ୍ୟାକରଣ ପ୍ରସ୍ତୁତି କମିଟିର ସଂପାଦକ ରୂପେ କାର୍ଯ୍ୟକରି ପ୍ରଶାସନିକ ଓଡ଼ିଆ ଶବ୍ଦକୋଷ ପ୍ରସ୍ତୁତିରେ ମୁଖ୍ୟ-ଭୂମିକା ଗ୍ରହଣ କରିଛନ୍ତି । ବିଶ୍ୱବିଦ୍ୟାଳୟ ଆୟୋଗ ଅନୁଦାନ ଦ୍ୱାରା ପ୍ରତିଷ୍ଠିତ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପର ସଂଯୋଜକ ଭାବରେ କାର୍ଯ୍ୟକରି ସର୍ବଭାରତୀୟ ସାହିତ୍ୟ ଅଧିବେଶନ ସେ ପରିଚାଳନା କରିଛନ୍ତି । ଏହି ପ୍ରକଳ୍ପ ମାଧ୍ୟମରେ ''ପ୍ରକଳ୍ପ ପ୍ରବନ୍ଧାବଳୀ'' ଓ ''ପ୍ରକଳ୍ପ ନିବନ୍ଧାବଳୀ''ର ସଂପାଦନା ଦାୟିତ୍ୱ ମଧ୍ୟ ନେଇଛନ୍ତି । ଏହାବ୍ୟତୀତ ଶିକ୍ଷାର ମାନସିକ କ୍ଲିଷ୍ଟତାକୁ ପରିହାର କରି ଶାରୀରିକ ଶିକ୍ଷାଦିଗରେ ମଧ୍ୟ ସେ ଆଗ୍ରହ ପ୍ରକାଶ କରିଥିବା ଲକ୍ଷ୍ୟ କରାଯାଏ କାରଣ 'ଜାତୀୟ ସେବା ସଂସ୍ଥା'ର ମୁଖ୍ୟ ଦାୟିତ୍ୱରେ ରହି ଛାତ୍ରମାନଙ୍କୁ ବିଭିନ୍ନ ଜନହିତକର କାର୍ଯ୍ୟରେ ନିୟୋଜିତ କରିବା ଏବଂ ତଜ୍ଜନିତ ଆନନ୍ଦ ଉପଲବ୍ଧି କରିବାରେ ତାଙ୍କର ଅବଦାନ ଯଥେଷ୍ଟ ରହିଥିଲା । ୧୯୭୩ ମସିହାରେ ଏକ 'ଜାତୀୟ ସେବା ସଂସ୍ଥା' ଦଳରେ ମୁଁ ତାଙ୍କ ସହ କିଛିଦିନ କଟାଇବାର ସୁଯୋଗ ପାଇଥିଲି । ପ୍ରାୟ ଦଶଦିନ ଧରି ସେ ସଂସ୍ଥାରେ ରହି କେନାଲ ଖୋଳିବା, ରାସ୍ତାଘାଟ ମରାମତି କରିବା, ପୁଷ୍କରିଣୀ ସଫା କରିବା ତଥା ଗ୍ରାମ ଲୋକମାନଙ୍କୁ ଶିକ୍ଷାଦେବା ଶିବିରାର୍ଥୀମାନଙ୍କର ମୁଖ୍ୟକାର୍ଯ୍ୟ ଥିଲା । ସେଥିରେ ସେ ଆପଣାକୁ ମଜ୍ଜାଇଦେଇ ଅଶେଷ ଆନନ୍ଦ ପାଇବା ସହ ଅନେକ ଜନହିତକର କାର୍ଯ୍ୟ କରିଯାଇଛନ୍ତି । କେବଳ

ଆପଣା ଗ୍ରାମରେ ନୁହେଁ ଅନ୍ୟ ଅନେକ ସେବାକାର୍ଯ୍ୟରେ ମଧ ସେ ଶିବିରାର୍ଥୀମାନଙ୍କୁ ସୂଚାରୁ ରୂପେ ପରିଚାଳନା କରିଅଛନ୍ତି । ଗାଁ ଲୋକମାନଙ୍କୁ ଶିକ୍ଷିତ କରାଇବା, ସେମାନଙ୍କୁ ଆପଣାର କରି ତାଙ୍କ ମନରେ ସାହସ ଆଣିଦେବା ଏବଂ ସର୍ବୋପରି ସେମାନଙ୍କ ଭିତରେ ଶିକ୍ଷାର ଆଲୋକ ବର୍ତ୍ତିକା ଜାଳିଦେବା ତାଙ୍କ ଜୀବନର ମୂଳମନ୍ତ୍ର ଥିଲାଭଳି ଜଣାପଡ଼େ । ଜଣେ ସଫଳ ସଂଗଠକ ଓ ଛାତ୍ରବତ୍ସଳ ବ୍ୟକ୍ତିପକ୍ଷରେ ଏହା ହିଁ ସହଜଲଭ୍ୟ ହୋଇପାରେ, ଯାହା ଡଃ ସାହୁଙ୍କ ଜୀବନରେ ହୋଇପାରିଥିଲା ।

ଜଣେ ସଫଳ ସଂଗଠକ ଭାବରେ ସେ ବିଭିନ୍ନ ସରକାରୀ ଓ ବେସରକାରୀ ଅନୁଷ୍ଠାନର ଆଜୀବନ ସଦସ୍ୟ ହୋଇ ଆପଣା କର୍ମଧାରାର ବହୁମୁଖୀ ଦିଗକୁ ପ୍ରସାରିତ କରିପାରିଛନ୍ତି । ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭ୍ୟ ଭାବରେ ସେ କର୍ମ କରିଅଛନ୍ତି । ଶିକ୍ଷକ 'ଉଜ୍ଜୀବନ ପାଠ୍ୟକ୍ରମ'ର ସଂଯୋଜକ ଭାବରେ ଦୀର୍ଘଦିନ ରହି ଆପଣାର କର୍ମଦକ୍ଷତା ପ୍ରତିପାଦନ କରିଛନ୍ତି । ସେହିପରି ବିଶ୍ୱବିଦ୍ୟାଳୟ ଆୟୋଗ ଅନୁଦାନର ବରିଷ୍ଠ ଗବେଷକ ନିର୍ବାଚନ କମିଟିର ସଭ୍ୟ, ଜାତୀୟ ଯୋଗ୍ୟତା ପରୀକ୍ଷାର ପରୀକ୍ଷକ ଭାବରେ ଆପଣା କର୍ମ ଦକ୍ଷତା ପ୍ରଦର୍ଶନ କରିଛନ୍ତି । ଉତ୍କଳ, ସମ୍ବଲପୁର, ବ୍ରହ୍ମପୁର ଓ ବିଶ୍ୱଭାରତୀ ପ୍ରଭୃତି ବିଶ୍ୱବିଦ୍ୟାଳୟ ତଥା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଓଡ଼ିଆ ପାଠ୍ୟଖସଡ଼ା କମିଟିର ସଭ୍ୟ ଭାବରେ ସ୍ୱୀୟ ପ୍ରତିଭା ପ୍ରଦର୍ଶନ କରିଛନ୍ତି । ଏହାଛଡ଼ା ଖଲ୍ଲିକୋଟ, ରେଭେନ୍ସା, ଗଙ୍ଗାଧର ମେହେର ପ୍ରଭୃତି ସ୍ୱୟଂଶାସିତ ମହାବିଦ୍ୟାଳୟର ଓଡ଼ିଆ ପାଠ୍ୟଖସଡ଼ା କମିଟିର ସଭ୍ୟ ଭାବରେ ଦୀର୍ଘଦିନ କାର୍ଯ୍ୟ କରିଛନ୍ତି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପରିଦର୍ଶୀ ପ୍ରଫେସର ଭାବରେ ଯୋଗଦେଇ ଆପଣା ପ୍ରତିଭା ପ୍ରଦର୍ଶନ କରିଯାଇଅଛନ୍ତି । ୟୁନିଅନ୍ ପବ୍ଲିକ୍ ସର୍ଭିସ୍ କମିଶନ ପରୀକ୍ଷା ଖସଡ଼ା ପ୍ରସ୍ତୁତି କମିଟିର ସଭ୍ୟ ଓ ସଂଯୋଜକ ଭାବରେ ତଥା ଭାରତୀୟ ପ୍ରଶାସନିକ ସେବା ପରୀକ୍ଷାର ପରୀକ୍ଷକ ଭାବରେ ସେ ବେଶ୍ କୃତିତ୍ୱର ଅଧିକାରୀ ହୋଇପାରିଛନ୍ତି । ଏହାଛଡ଼ା ଉତ୍କଳ ସାହିତ୍ୟ ସମାଜ, ଓଡ଼ିଶା ସଂସ୍କୃତି ପରିଷଦ, ଅଭ୍ୟୁଦୟ ସାହିତ୍ୟ ସମାଜ ପ୍ରଭୃତିର ଆଜୀବନ ସଭ୍ୟ ଓ ସଂପାଦକୀୟ ଭାବରେ ସୂଚାରୁ ରୂପେ କର୍ମନିର୍ବାହ କରିଛନ୍ତି । ଅଖିଳ ଭାରତ ଭାଷା-ସାହିତ୍ୟ ସମ୍ମେଳନ, ଅମରାବତୀର ଉପସଭାପତି ଏବଂ ଶ୍ରୀଜଗନ୍ନାଥ ଗବେଷଣା ପ୍ରତିଷ୍ଠାନର ଉପସଭାପତି ଭାବରେ ଆପଣା କର୍ମସଂପାଦନ ସୂଚାରୁରୂପେ କରିପାରିଛନ୍ତି । ସ୍ୱୀୟ ପ୍ରତିଭାର ପରାକାଷ୍ଠା ଯୋଗୁ ''ସାହିତ୍ୟ ସଂସଦ'', ''ଯଦୁମଣି ସାହିତ୍ୟ ସଂସଦ'', ''ନିଖିଳ ଭାରତ ମହିଳା ସଂସଦ'', ଲକ୍ଷ୍ନୌ, ଅତିବଡ଼ି ଜଗନ୍ନାଥ ଦାସ ସମ୍ମାନ ପ୍ରଭୃତି ସଂସ୍ଥାମାନଙ୍କରୁ ପୁରସ୍କାର, ମାନପତ୍ର ଓ ଅନେକ ଉପଢୌକନ ଦ୍ୱାରା ସେ ମଣ୍ଡିତ ହୋଇଛନ୍ତି । ଏହାଛଡ଼ା ''ସଂଜୀବନୀ ସାହିତ୍ୟ-ସଂସ୍କୃତି ସଂସ୍ଥାନ'', ଭୁବନେଶ୍ୱରର ସଭାପତି ଭାବରେ ଆପଣା କର୍ମଦକ୍ଷତା ତଥା ସାଂଗଠନିକ ଦକ୍ଷତାର ପ୍ରମାଣ ସେ

ଦେଇପାରିଛନ୍ତି । ଉପୁର୍ଯ୍ୟକ୍ତ ଅନୁଷ୍ଠାନ ଓ ସଂସ୍ଥାର ସଦସ୍ୟ ଭାବରେ ସେ ଆପଣା କର୍ମଧାରାର ବହୁମୁଖୀ ଦିଗକୁ ପ୍ରସାରିତ କରିଅଛନ୍ତି ଏବଂ ଆପଣା ସାଧନା ଓ ସାଂଗଠନିକ ଦାୟିତ୍ୱବୋଧର ବ୍ୟାପକତା ପ୍ରମାଣିତ କରିଅଛନ୍ତି ।

ବିଭିନ୍ନ ଅନୁଷ୍ଠାନ, ଶିକ୍ଷାୟତନ ଓ ସଂଗଠନ ସହିତ ପ୍ରଫେସର ଡଃ ବାସୁଦେବ ସାହୁ ଘନିଷ୍ଠ ଭାବରେ ଜଡ଼ିତ ରହି ସେସବୁକୁ ଆପଣେଇ ନେଇଥିବା ବର୍ତ୍ତମାନ କର୍ମକର୍ତ୍ତାମାନେ ନିଶ୍ଚିତ ଭାବରେ ସ୍ୱୀକାର କରିବେ । ସେହି ମହାନ୍ ପ୍ରତିଭାଧାରୀ ବ୍ୟକ୍ତିତ୍ୱ ଓ ଉଦାର ମହାନୁଭବତା ନିକଟରେ ସେହି ସେହି ଅନୁଷ୍ଠାନମାନ ଋଣୀ ରହିବେ- ଏହା ନିଃସନ୍ଦେହ । ଆଜି ସେହି ମହନୀୟ ବ୍ୟକ୍ତିତ୍ୱଙ୍କ ପ୍ରଥମ ଶାଦ୍ଧବାର୍ଷିକୀ ଅବସରରେ ତାଙ୍କରି ପୂଣ୍ୟ ଆତ୍ମାର ସଦ୍‌ଗତି ନିମନ୍ତେ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ପୂର୍ବକ ଆଶୀର୍ବାଦ ଭିକ୍ଷା କରୁଅଛି ।



ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ,
ପାରଳାଖେମୁଣ୍ଡି

# ପ୍ରତୀତି

## ବାସୁଦେବର ବିଶ୍ୱଦୃଷ୍ଟି

ଡଃ ରେଖା ମହାନ୍ତି

ଜଣେ ଜଣେ ମଣିଷ ଏମିତି ଅଭିଜିତ ମୁହୂର୍ତ୍ତରେ ଜନ୍ମଗ୍ରହଣ କରନ୍ତି ଯେ ସମସ୍ତ ପ୍ରତିକୂଳ ପରିବେଶକୁ ନିଜର ବଳିଷ୍ଠ ଆତ୍ମବିଶ୍ୱାସରେ ପ୍ରତିହତ କରି ପ୍ରତିଷ୍ଠାର ଚରମ ସୋପାନରେ ଅଧିରୂଢ଼ ହୁଅନ୍ତି । ବାସୁ ଥିଲା ସେମିତି ଜଣେ ମଣିଷ-ସାର୍ଥକ ନାମା ମଣିଷଟିଏ । ସେ ନିଜେ ଉପରକୁ ଉଠିବା ସହ ତାର ଚତୁପାର୍ଶ୍ୱର ପରିବେଶକୁ ମଧ୍ୟ ଉନ୍ନତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲା । ସାହାଯ୍ୟ ସହଯୋଗର ହସ୍ତପ୍ରସାରଣ ପୂର୍ବକ ସମସ୍ତଙ୍କ ମନରେ ଆଶାର ଉଦ୍ଦୀପନା ଖେଳାଇ ଦେଇଥିଲା । ନୈରାଶ୍ୟର ଅନ୍ଧକାର ଦୂରେଇ ଯାଇଥିଲା । ଆଶାର ଆଲୋକରେ ତାର ଚର୍ତୁପାର୍ଶ୍ୱ ଥିଲା ତେଜୋଦୀପ୍ତ ।

'ଅସଦୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋଂ ମା ଅମୃତ ଗମୟ ।'

ଅସତ୍‌ରୁ ସତ୍ ପଥକୁ ଆସ, ଅନ୍ଧକାରରୁ ଆଲୋକ ଆଡ଼କୁ ଆସ, ସଂକୀର୍ଣ୍ଣ ଚେତନାରୁ ଉଦାର ଚେତନାରେ ଅଭିମନ୍ତ୍ରିତ ହୁଅ । ଏଇ ହେଉଛି ବିଶ୍ୱବାସୀଙ୍କ ପ୍ରତି ବୈଦିକ ଋଷିଙ୍କ ବାଣୀ । ସମସ୍ତେ ସୁଖରେ ରହ, ସମସ୍ତେ ମଙ୍ଗଳର ଉପାସନା କର, କେବେହେଲେ ଦୁଃଖର ବଶବର୍ତ୍ତୀ ହୁଅ ନାହିଁ । ତା'ହେଲେ ସାରା ପୃଥିବୀରେ ସୁଖ ଆଉ ଶାନ୍ତି ପ୍ରତିଷ୍ଠିତ ହେବ । ଏହି କାଳଜୟୀ ବାଣୀରେ ବାସୁର ହୃଦୟ ହେଇଥିଲା ସ୍ପନ୍ଦିତ । ସେ ଆପଣା ପର ଭେଦ ନ ରଖି ସମସ୍ତଙ୍କୁ ଅକାତରରେ ସାହାଯ୍ୟ ସହାନୁଭୂତି ଦେଖାଇ ଉଚ୍ଚକୁ ଉଠାଇବାକୁ ଚେଷ୍ଟା କରିଥିଲା । ସ୍ତ୍ରୀ, ପୁଅ ଝିଅ ଭଣଜାମାନଙ୍କୁ ଯେମିତି ଶିକ୍ଷିତ କରିଥିଲା, ଗାଁରେ ମାଇନର ସ୍କୁଲ ଓ ହାଇସ୍କୁଲ ପ୍ରତିଷ୍ଠା କରି ଗାଁ ପିଲାମାନଙ୍କୁ ମଧ୍ୟ ଶିକ୍ଷିତ କରିବାର ପଥ ପ୍ରସ୍ତୁତ କରିଥିଲା । ଗାଁର ଚାଷୀ ମୂଲିଆଙ୍କୁ ସଂଘବଦ୍ଧ କରି ସେମାନଙ୍କ ଆର୍ଥିକ ଉନ୍ନତିର ମାର୍ଗ ପ୍ରଶସ୍ତ କରିଥିଲା । ସମସ୍ତେ ଭଲରେ ରହନ୍ତୁ-ସର୍ବେ ସୁଖୀନ ଭବନ୍ତୁ-ଏଇ ଥିଲା ତାର ଜୀବନର ମନ୍ତ୍ରଧ୍ୱନି ।

ଆତ୍ମପ୍ରଚାର ବା ଆତ୍ମପ୍ରତିଷ୍ଠା ପାଇଁ ବାସୁର ତିଳେମାତ୍ର ବ୍ୟାକୁଳତା ନଥିଲା । ନୈତିକତା ଆଉ ଆଦର୍ଶ ଥିଲା ତା' ଜୀବନର ବ୍ରତ । ଆଳସ୍ୟକୁ ସେ ଆଦୌ ପସନ୍ଦ କରୁନଥିଲା ।

ନିଜେ ସେ ଯେମିତି ନିରଳସ କର୍ମ ଦ୍ୟୋତନାରେ ବ୍ରତୀ ଥିଲା, ତାର ପିଲାମାନଙ୍କୁ ସେଇ ଭାବରେ ଅନୁପ୍ରାଣୀତ କରୁଥିଲା । ମଣିଷ ଏ ପୃଥିବୀକୁ ଦାୟିତ୍ୱ ବହନ କରିବାକୁ ଆସିଛି, ଦାୟିତ୍ୱରୁ ମୁକ୍ତ ହେବାକୁ ନୁହେଁ । ବାସୁ ଥିଲା ବାସ୍ତବତା ଆଉ ଆଦର୍ଶର ଏକ ଅପୂର୍ବ ସମନ୍ୱିତ ବିଗ୍ରହ । ଯେମିତି ଭାଷା ଓ ସାହିତ୍ୟରେ ଥିଲା ତାର ଅଗାଧ ପ୍ରବେଶ । ଓଡ଼ିଆ, ଇଂରାଜୀ, ସଂସ୍କୃତ, ହିନ୍ଦୀ ଭାଷାରେ ସେ ଥିଲା କୃତବିଦ୍ୟ ।

ଜୀବନ ପ୍ରତି ବାସୁର ଦୃଷ୍ଟି ଥିଲା ପ୍ରସାରିତ ଦିଗନ୍ତବିସ୍ତାରୀ । ବିନ୍ଦୁରେ ସେ ଦିବ୍ୟ ଦର୍ଶନ । ସମସ୍ତଙ୍କୁ ଏଇ ଦିବ୍ୟଦର୍ଶନର ଅଧିକାରୀ ହେବାକୁ ହେବ । 'ବୌଦ୍ଧ ଚର୍ଯ୍ୟାଗୀତି' ଠାରୁ ଆରମ୍ଭ କରି ସାରଳା ସାହିତ୍ୟ, ଭଂଜ ସାହିତ୍ୟ, ସଚ୍ଚି ରାଉତରାୟଙ୍କର 'ପାଣ୍ଡୁଲିପି' ତାର ସମାଲୋଚନା ଦିଗନ୍ତର ବଳିଷ୍ଠ ଅଭିବ୍ୟକ୍ତି । 'ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା'ରେ ଐତିହାସିକ ତଥ୍ୟ, ଦାର୍ଶନିକ ତତ୍ତ୍ୱ ଓ ସାଂସ୍କୃତିକ ଅଧ୍ୟୟନର ଯେଉଁ ପରିଚୟ ମିଳେ ତାହାହିଁ ବାସୁର ବିଶ୍ୱବିସ୍ତୃତ ଦୃଷ୍ଟିଭଂଗୀର ସମ୍ୟକ ନିଦର୍ଶନ । ଓଡ଼ିଆ ଭାଷା ଓ ସାହିତ୍ୟରେ ବହୁ ପୁସ୍ତକ ରଚନା କରି ଓ ବିଭିନ୍ନ ଭାଷାରେ ଦକ୍ଷତା ଅର୍ଜନ କରି ନିଜକୁ ବିଶ୍ୱତୋମୁଖୀ ଚେତନା ଆଡ଼କ ସଂପ୍ରସାରିତ କରିଥିଲା । ତାର ଛାତ୍ରଛାତ୍ରୀ, ବନ୍ଧୁ ପରିଜନ, ଆତ୍ମୀୟ ସ୍ୱଜନ-ସମସ୍ତଙ୍କ ପାଇଁ ତାର ଦ୍ୱାର ଥିଲା ଉନ୍ମୁକ୍ତ । 'ଦେବଶାନ୍ତି ନିଳୟ' ଯେମିତି ଆହ୍ୱାନ କରୁଥିଲା ଆସ, ସମସ୍ତେ ଆସ । ଆମେ ସମସ୍ତେ ମିଳିମିଶି ସୁନ୍ଦର ପୃଥିବୀଟିଏ ଗଢ଼ିବା । ଏ ଦୁନିଆଁରେ ଯିଏ ଯେଉଁଠି ଥାଉ, ବାସୁ ସଂସ୍ପର୍ଶରେ ଆସିଥିବା କୌଣସି ବ୍ୟକ୍ତି ତାକୁ ଭୁଲିପାରିବେ ନାହିଁ ।

ଯାଦବ ପୁର, ପୁନେ, ସମ୍ବଲପୁର, ବରହମପୁର, ଟିଟିଲାଗଡ଼ ଓ ବିଶ୍ୱଭାରତୀରେ ସର୍ବଭାରତୀୟ ସମ୍ମିଳନୀରେ ଯୋଗ ଦେଇ ବିବିଧ ବିଷୟରେ ଆଲୋଚନା କରି ସେ ଉଚ୍ଚ ପ୍ରଶଂସିତ ହୋଇଥିଲା । ତାର ବ୍ୟକ୍ତିତ୍ୱ ଓ ତାର ସାହିତ୍ୟ ସାଧନା ତାକୁ କିମ୍ବଦନ୍ତୀ ପୁରୁଷରେ ପରିଣତ କରିଛି । ଆଜି ସେ ଆମ ଗ୍ରହଣରେ ନାହିଁ- କିନ୍ତୁ ରଖିଦେଇ ଯାଇଛି ତା' ଜୀବନାଦର୍ଶର ଉତ୍ତୁଙ୍ଗ ମହିମା । ପଦେ କଥାରେ କହିଲେ- The whole world could take refuse in his single heart. ତାର ଥିଲା ସାର୍ବଜନୀନ ସଂପ୍ରୀତି । ଅନ୍ତଃବିଶ୍ୱ ଓ ବହିଃବିଶ୍ୱର ଏକାତ୍ମ ପ୍ରତିଷ୍ଠା ଦିଗରେ ଜଗନ୍ନାଥ ଚେତନା ସଂପର୍କିତ ପୁସ୍ତକ ଏକ ବଳିଷ୍ଠ ପଦକ୍ଷେପ । ନିଜର ବିଶ୍ୱତୋମୁଖୀ ଭାବଚେତନା ଏହି ନିବନ୍ଧରେ ମୂର୍ଚ୍ଛିତ । ନ 1ଟି ପୂର୍ଣ୍ଣ ଜୀବନ, କଠୋର ପରିଶ୍ରମ, ଗୁରୁଜନ ଲଘୁଜନ ସମସ୍ତଙ୍କ ପ୍ରତି ସଦ୍‌ବ୍ୟବହାର, ଉଦାର ମାନବିକତା ଓ ଓଡ଼ିଆ ଭାଷା ସାହିତ୍ୟର ଦିଗ୍‌ବଳୟକୁ ପ୍ରସାରିତ କରିବା ଥିଲା ବାସୁର ଜୀବନବ୍ୟାପୀ ସାଧନା । ତାର ଉତ୍ତର ପୁରୁଷ ଏଇ ଭାବରେ ଅନୁପ୍ରାଣିତ ହେଲେ ସାର୍ଥକ ହେବ ସିଦ୍ଧ ସାଧକର ଜୀବନ ।

ଶେଖ୍ ବଜାର, କଟକ

# ବାସୁ- ବାସୁଥାଅ ଯୁଗେଯୁଗେ

ମୃତ୍ୟୁଞ୍ଜୟ ନାୟକ

ବାସୁ ମୋର ଅନ୍ୟତମ ପ୍ରିୟତମ ଛାତ୍ର । ମହାପ୍ରଭୁ ଜଗନ୍ନାଥଙ୍କ ଚରଣାଶ୍ରିତ ବାସୁଙ୍କୁ ଅକାଳରେ ଅବେଳାରେ ପ୍ରଭୁ ତାଙ୍କ କୋଳକୁ ନେଇଗଲେ ଶୁଣି ଅତ୍ୟନ୍ତ ମର୍ମାହତ ହୋଇପଡ଼ିଲି । ଭଲ ମଣିଷମାନେ ଆଧୁନିକ ପଥଭ୍ରଷ୍ଟ ସମାଜରୁ ଶୀଘ୍ର ଈଶ୍ୱରଙ୍କ ଦରବାରକୁ ଚାଲିଯିବାର ସୌଭାଗ୍ୟ ଅର୍ଜନ କରିଥାନ୍ତି ।

ବାସୁ କେବଳ ମୋର ଛାତ୍ର ନଥିଲେ, ମୋ ଅଞ୍ଚଳବାସୀ ଅର୍ଥାତ ନୟାଗଡ଼ ଜିଲ୍ଲାର ରଘୁନାଥପୀଠ ଓଡ଼ଗାଁ ଅଞ୍ଚଳର ଅଧିବାସୀ ଥିଲେ । ସେଥିଲାଗି ଆମ ଉଭୟଙ୍କ ମଧ୍ୟରେ ଆତ୍ମୀୟତା ଅଧିକ ନିବିଡ଼ ଥିଲା । ଓଡ଼ଗାଁରେ ଜନ୍ମଲାଭ କରି, ବାଣୀବିହାରର ଓଡ଼ିଆ ବିଭାଗର ପ୍ରଫେସର ଭାବେ ଭୁବନେଶ୍ୱରର ବାସିନ୍ଦା ହୋଇଗଲେ ବାସୁଦେବ । କିନ୍ତୁ କାଳର ଗତି ବିଚିତ୍ର । ସୁଦୂର ପୁନେ (ପୁନା) ମାଟିରେ ତାଙ୍କର ମରଶରୀର ମିଶିଗଲା । ତେଣୁ ମଣିଷର ଜନ୍ମ-ମୃତ୍ୟୁ କେଉଁଠାରେ ଓ କିପରି ସମାହିତ ହେବ ତାହା ପୂର୍ବରୁ ଭାଲପଟରେ ଲେଖାହୋଇଥାଏ ।

ମୋ ଦୃଷ୍ଟିରେ ବାସୁ ଜଣେ ବିନୀତ ଛାତ୍ର, ଯାହାକି ଏ ଯୁଗରେ ମିଳିବା ଦୁଷ୍କର । ଯେଉଁଠାରେ ଦେଖିଲେ, ଏପରିକି ବାଣୀବିହାରର ରାଜରାସ୍ତାରେ ପାଦଛୁଇଁ ସାଷ୍ଟାଙ୍ଗ ପ୍ରଣିପାତ କରିଥାନ୍ତି, ଶତ ବାରଣ ସତ୍ତ୍ୱେ । ସେ ଅତ୍ୟନ୍ତ ନମ୍ର, ଧୀର, ବିନୟୀ, ସ୍ୱଳ୍ପଭାଷୀ ଓ ଶାନ୍ତ ସ୍ୱଭାବର ମଣିଷ ଥିଲେ, ଯାହାକି ଜଣେ ସୁମଣିଷର ଗୁଣ ଅଟେ ।

ପ୍ରତିଭାଦୀପ୍ତ ବାସୁ 'ନମନ୍ତି ଫଳିନୋ ବୃକ୍ଷାଃ, ନମନ୍ତି ଗୁଣୀନୋ ଜନଃ'' ପରି ସଦା ଧୀର ସ୍ଥିର ଓ ବିନୟୀ ଥିଲେ । ବହୁ ଗୌରବର ଅଧିକାରୀ ହୋଇ ମଧ୍ୟ କେବେ ଗର୍ବରେ ଫୁଲି ଉଠିବାର ମୋ ନଜରକୁ ଆସିନାହିଁ । ସେ ଯେପରି ମେଧାବୀ ଥିଲେ ସେହିପରି ଅତ୍ୟନ୍ତ କର୍ମପ୍ରବଣ ଓ ପରିଶ୍ରମୀ ଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ଉକ୍ତି ଅନୁଯାୟୀ-

''ମଣିଷ ଜୀବନ ନୁହଁଇ କେବଳ / ବର୍ଷ,ମାସ, ଦିନ, ଦଣ୍ଡ

କର୍ମେ ଜୀଏଁ ନର କର୍ମ ଏକା ତା'ର / ଜୀବନର ମାନଦଣ୍ଡ ।'' ନୀତିରେ ବିଶ୍ୱାସ ସ୍ଥାପନ ପୂର୍ବକ କର୍ମ କରିଚାଲିଥିଲେ ବାସୁ ।

ମେଧାବୀ ଛାତ୍ର ବାସୁ ଆଇ.ଏସ୍‌ସି ପରେ ଅର୍ଥାଭାବ ଯୋଗୁଁ ଡାକ୍ତରୀ ପଢ଼ିପାରିନଥିଲେ । ଏମ୍.ଏ. ଛାତ୍ର ଥିବାବେଳେ ଓ.ଏ.ଏସ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଡେପୁଟି କଲେକ୍ଟର ଚାକିରୀ ପାଇଥିଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ଭବିତବ୍ୟ କାହା ହାତରେ ନଥାଏ । ସୁନାମଧନ୍ୟ ଭାଷାବିତ୍ ପ୍ରଫେସର ଡଃ. କୁଞ୍ଜବିହାରୀ ତ୍ରିପାଠୀ ପ୍ରିୟଛାତ୍ର ବାସୁଙ୍କୁ କହିଲେ- ''ଓଡ଼ିଆ ଭାଷା, ଓଡ଼ିଆ ମା'', ତୁମଠୁ ବହୁତ କିଛି ଆଶା କରିଥିଲା, ହେଉ ଡେପୁଟି କଲେକ୍ଟର ହେବ ଯଦି ହୁଅ ।''

ଗୁରୁଙ୍କର ଏହି ଆଶୀର୍ବାଣୀ ଲାଭ କରି ତାଙ୍କ ମତରେ ପରିବର୍ତ୍ତନ ଘଟିଥିଲା । ସେ ଓ.ଏ.ଏସ୍ ଚାକିରୀକୁ ପ୍ରତ୍ୟାଖ୍ୟାନ କରି ଅଧ୍ୟାପନା ଜୀବନକୁ ବରଣ କରିଥିଲେ । ମାତୃଭୂମି ଓ ମାତୃଭାଷାର ସେବାରେ ସେ ଜୀବନ ପଣ କରିଥିଲେ । ଓଡ଼ିଶାର କତିପୟ ଭାଷାବିତ୍‌ଙ୍କ ମଧ୍ୟରେ ନିଜ ନାମକୁ ସଂଯୋଗ କରି ବାସୁ ଧନ୍ୟ ହୋଇଛନ୍ତି ।

ଅତି ଦରିଦ୍ର ଘରେ ଜନ୍ମଲାଭ କରି କଠୋର ପରିଶ୍ରମ ଓ ଅଧ୍ୟବସାୟ ବଳରେ ସେ ଅନର୍ସ ଓ ଏମ୍.ଏ.ରେ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ । ସରକାରୀ ମହାବିଦ୍ୟାଳୟମାନଙ୍କରେ ଅଧ୍ୟାପକ ରୂପେ କାର୍ଯ୍ୟକରି ଶେଷରେ ବାଣୀବିହାରର ଓଡ଼ିଆ ସାହିତ୍ୟ ଓ ଭାଷା ବିଭାଗର ପ୍ରଫେସର ପଦମଣ୍ଡନ କରିଥିଲେ । ଓଡ଼ିଆ ଭାଷା ବ୍ୟତୀତ, ଇଂରାଜୀ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଅସମୀୟା, ମୈଥିଳୀ, ଭୋଜପୁରୀ ଭାଷାରେ ତାଙ୍କର ଥିଲା ଗଭୀର ପ୍ରବେଶ । ଏହା ବ୍ୟତୀତ ଓଡ଼ିଶାର ଉପଭାଷା ଦେଶିଆ, ଭାତ୍ରୀ, ସାଦ୍ରୀ, ବାଥୁଡ଼ି ଉପରେ ଦକ୍ଷତା ଅର୍ଜନ କରିଥିଲେ ।

ପ୍ରଫେସର ସାହୁ ଜଣେ ସୁଦକ୍ଷ ଅଧ୍ୟାପକ ଓ ଗବେଷକ ଥିଲେ । ଗବେଷଣା କ୍ଷେତ୍ରରେ ତାଙ୍କର ଗଭୀର ଅଧ୍ୟୟନ, ଅଧ୍ୟାପନା ଓ ଦିଗ୍‌ଦର୍ଶନ ମୁଁ ନିଜେ ଦେଖିଛି । ଯେତେ ଅଧ୍ୟାପକ ଓ ଗବେଷକ ତାଙ୍କ ଦିଗ୍‌ଦର୍ଶନରେ ପିଏଚ୍.ଡ଼ି ଓ ଡି.ଲିଟ୍ ଡିଗ୍ରୀ ପ୍ରାପ୍ତ ହୋଇଛନ୍ତି ଏପରି ଜଣେ ଖୁଣ୍ଟିକାଣ୍ଟି ପରୀକ୍ଷକ ଓ କାମନେବାରେ କଠୋର ବ୍ୟକ୍ତିତ୍ୱ-ନିକଟରେ ମଥାନତ କରିଥାନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ବି.ଏ., ଏମ୍.ଏ. ଓ ପିଏଚ୍.ଡ଼ି ପରୀକ୍ଷା ନିୟନ୍ତ୍ରକ ବୋର୍ଡ଼ରେ ମୁଁ ତାଙ୍କ ସହ ବହୁବର୍ଷ କାର୍ଯ୍ୟକରି ତାଙ୍କର ଦକ୍ଷତା ଓ କର୍ମନିଷ୍ଠାକୁ ଲକ୍ଷ୍ୟ କରିଅଛି । ସମ୍ବଲପୁର ବିଶ୍ୱବିଦ୍ୟାଳୟର କଣ୍ଡକଟିଙ୍ଗ୍ ବୋର୍ଡ଼ରେ ପ୍ରଫେସର ଶ୍ରୀନିବାସ ମିଶ୍ର, ମୁଁ ଓ ବାସୁ ଏକାନ୍ତ କାର୍ଯ୍ୟ କରିଥିଲୁ । ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ସୂକ୍ଷ୍ମ ନିରୀକ୍ଷଣ (Meticulus) ଶକ୍ତିର ପରିଚୟ ମିଳିଥାଏ ।

ସେ ଏକାଧାରାରେ ଥିଲେ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ, ଭାଷାତତ୍ତ୍ୱବିତ୍, ସମୀକ୍ଷକ, ଅନୁବାଦକ ଓ ଉଚ୍ଚକୋଟୀର ଗବେଷକ । 'ସଂବିତ୍' ତାଙ୍କ ରଚିତ ଏକ କବିତା ପୁସ୍ତକ । 'ପ୍ରବନ୍ଧ ମଧୁକୋଷ' ତାଙ୍କର ଏକ ପ୍ରବନ୍ଧ ସଂକଳନ । ଭାଷାବିତ୍

ଡଃ ସାହୁଙ୍କ ଭାଷା ବିଷୟକ ପୁସ୍ତକଗୁଡ଼ିକ ହେଉଛି- 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ', 'ଭାଷା ବିଜ୍ଞାନର ରୂପରେଖ', 'ପୃଥିବୀର ଭାଷା ପରିବାର : ପରିଚୟ ଓ ପରିସର, ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା, ଭାଷାବିଜ୍ଞାନ ଓ ଭାଷାବିଜ୍ଞାନୀ, ଓଡ଼ିଆ ଶବ୍ଦବ୍ୟୁତ୍ପତ୍ତି ବିଜ୍ଞାନ, ଅଳଙ୍କାର ତତ୍ତ୍ୱ ପ୍ରଭୃତି ।

ଏହା ବ୍ୟତୀତ ଜଗନ୍ନାଥୈବ ଚେତନା ଓ ଜଗନ୍ନାଥ ଧର୍ମ ଉପରେ ତାଙ୍କର ଅମୂଲ୍ୟ ଗ୍ରନ୍ଥଗୁଡ଼ିକ ଓଡ଼ିଆ ପାଠକ ସମାଜର ଅତ୍ୟନ୍ତ ଉପାଦେୟ ଗ୍ରନ୍ଥ । 'ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ' ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ଚେତନା ୧ମ/୨ୟ ଡି.ଲିଟ୍ ଥେସିସ୍, ଓଡ଼ିଆ ସାହିତ୍ୟର ଧର୍ମଧାରା, ଓଡ଼ିଆ ଭାଷାର ବାହ୍ୟ ପ୍ରଭାବ ପିଏଚ୍.ଡ଼ି ଥେସିସ୍ ପ୍ରଭୃତି । ଏହା ବ୍ୟତୀତ ତାଙ୍କର ସମୀକ୍ଷା ଗ୍ରନ୍ଥଗୁଡ଼ିକ ହେଉଛି-'ସାହିତ୍ୟିକ ଦିଗ୍‌ଦର୍ଶନ, ଆଧୁନିକ ଓଡ଼ିଶା ସାହିତ୍ୟର ମୂଲ୍ୟାୟନ, ଓଡ଼ିଆ ସାହିତ୍ୟର ସୃଷ୍ଟି ସଂପଦ', ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଭାଷାବିଦ୍, ଶିକ୍ଷାବିଦ୍ ବାସୁଦେବ ଥିଲେ ଜଣେ ପରୋପକାରୀ ବ୍ୟକ୍ତି ତଥା ସମାଜସେବୀ । ନିଜ ଗ୍ରାମାଞ୍ଚଳରେ ଯାଇ ସମାଜସେବା, ଲୋକହିତକର କାର୍ଯ୍ୟ କରିବାରେ ସେ ମନୋନିବେଶ କରୁଥିଲେ । ନିଜେ ଗରିବ ପରିବାରରେ ଜନ୍ମ । ଜୀବନର ଅଭାବ, ଅନାଟନ ବୁଝିଥିବାରୁ ସେ ଗରିବ ଛାତ୍ରମାନଙ୍କ ପ୍ରତି ସର୍ବଦା ସହାନୁଭୂତିଶୀଳ ଥିଲେ । ଶିକ୍ଷା ବିଷୟକ, ସାହିତ୍ୟ ଓ ଭାଷା ବିଷୟରେ ସେ ବହୁ ସନ୍ଦର୍ଭ ଲେଖିବା ସହିତ ଭାଷଣମାନ ବିଭିନ୍ନ ସ୍ଥାନରେ ପରିବେଷଣ କରି ସୁନାମ ଅର୍ଜନ କରିଥିଲେ । ସେ ଓଡ଼ିଶାର ଆଞ୍ଚଳିକ ଭାଷାକୋଷ ଗ୍ରନ୍ଥ କରିବାରେ ମନୋନିବେଶ କରିଥିଲେ, ସମ୍ଭବତଃ ତାହା ଅଧୁରା ରହିଯାଇଛି ।

ମୋ ଦ୍ୱାରା ସଂପାଦିତ 'ଦେବେନ୍ଦ୍ର ସାରସ୍ୱତ ମାନସ' ପୁସ୍ତକର ଉନ୍ମୋଚନ ଅବସରରେ ସେ ମୁଖ୍ୟବକ୍ତା ଭାବେ ୧୪ ମାସ ପୂର୍ବେ କଟକସ୍ଥ 'ଦି ୟୁନିଭର୍ସ' ରେ ଯୋଗ ଦେଇଥିଲେ । ଅଳ୍ପଦିନ ଅବଧି ମଧରେ ସେ ଆମଠାରୁ ବହୁ ଦୂରକୁ ଚାଲିଯିବେ, ବିଶ୍ୱାସ କରିହୁଏନା ।

ଶେଷରେ ବକ୍ତବ୍ୟ ହେଉଛି ତାଙ୍କର ସାରସ୍ୱତ କୀର୍ତ୍ତିକୁ ଉତ୍ତର ଦାୟାଦମାନେ ଯଥୋଚିତ ଭାବେ ଅନୁଶୀଳନ କଲେ ସେ ସ୍ୱର୍ଗରେ ଥାଇ ଶାନ୍ତିଲାଭ କରିପାରିବେ । ତାଙ୍କର ସାରସ୍ୱତ କୀର୍ତ୍ତୀରାଜିକୁ ତାଙ୍କ ପରିବାର ଓ ଅନୁଚର ବର୍ଗ ଏକତ୍ରିତ କରି ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବେ ବୋଲି ଆମେ କହି ରହୁଛୁ ।

ତାଙ୍କର ଅବର୍ତ୍ତମାନରେ ପ୍ରଭୁ ଜଗନ୍ନାଥ ତାଙ୍କର ପରିବାରବର୍ଗ ଓ ବନ୍ଧୁ ସୋଦର ମାନଙ୍କୁ ଧୈର୍ଯ୍ୟ ପ୍ରଦାନ କରନ୍ତୁ । ତାଙ୍କର ଆତ୍ମାର ସଦ୍‌ଗତି କାମନା କରି ରହୁଅଛି । ଇତି

ଶୁଭାନୁଧାୟୀ ସାର୍



# ଛାତ୍ରବତ୍ସଳ ପ୍ରଫେସର ବାସୁଦେବ ସାହୁ

ଡଃ ବିମଳେନ୍ଦୁ ମହାନ୍ତି

ପ୍ରଫେସର ବାସୁଦେବ ସାହୁଙ୍କ ଇହଲୀଳା ସମ୍ବରଣ କରିବା ଚାହୁଁଚାହୁଁ ବର୍ଷଟିଏ ହୋଇଗଲା । ଯେତେବେଳେ ତାଙ୍କ ବିଷୟ ମନେପଡ଼େ ଦୁଃଖ ଲାଗେ ଯେ ଜଣେ ବହୁମୁଖୀ ପ୍ରତିଭା ସମ୍ପନ୍ନ ସୃଜନଶୀଳ ବ୍ୟକ୍ତିଙ୍କର ଅକାଳରେ ବିୟୋଗ ଘଟିଲା । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ତାଙ୍କର ଅବଦାନ ଅବିସ୍ମରଣୀୟ କିନ୍ତୁ ଯେଉଁ ଗୁଣଟି ତାଙ୍କୁ ତାଙ୍କ ଛାତ୍ରମାନଙ୍କ ମଧ୍ୟରେ ଓ ପରିଚିତ ବ୍ୟକ୍ତିମାନଙ୍କ ମଧ୍ୟରେ ସବୁଦିନ ପାଇଁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ଭାବରେ ଚିହ୍ନିତ କରାଉଥିବ ତାହା ହେଲା ତାଙ୍କର ଛାତ୍ରବତ୍ସଳତା ।

୧୯୬୪ ମସିହାରେ ତାଙ୍କ ସହିତ ମୋର ପ୍ରଥମ ଦେଖା ହେଲା କଟକର ଏନ୍.ସି.ସି. ଡାଇରେକ୍ଟରେ । ସେ ନାଗପୁରରେ ସିଭିଲ ଡିଫେନ୍ସରେ ତାଲିମ ପାଇବାକୁ ବଛାଯାଇଥାନ୍ତି ଏବଂ ସେହି ତାଲିମ୍ ସମ୍ବନ୍ଧରେ ବୁଝିବାକୁ ଏନ୍.ସି.ସି. ନିର୍ଦ୍ଦେଶାଳୟକୁ ଆସି ମୋ ପାଖରେ ପହଁଚିଥିଲେ । ତାଙ୍କର ସରଳ ସାଧାସିଧା ବ୍ୟକ୍ତିତ୍ୱ ମୋତେ ଆକୃଷ୍ଟ କରିଥିଲା । ତାଙ୍କୁ କହିଥିଲି ନାଗପୁରରୁ ଫେରିଲା ପରେ ମୋ ସାଙ୍ଗରେ ସଂପର୍କ ରଖିବାକୁ । କିନ୍ତୁ କ୍ୱଚିତ୍ ବ୍ୟକ୍ତି କାମ ସରିଗଲା ପରେ ଏହି ସଂପର୍କ ରଖିବା କଥାଟିକୁ ମନେ ରଖିଥାନ୍ତି । ପ୍ରଫେସର ବାସୁଦେବ ସାହୁ କିନ୍ତୁ ନିଆରା ଉପାଦାନରେ ଗଢ଼ା । ସେ ନାଗପୁରରୁ ଫେରି ମୋତେ ସୁନ୍ଦର ଚିଠିଟିଏ ଲେଖିଥିଲେ ଏବଂ ତାଲିମ ସଂପର୍କରେ ତାଙ୍କର ଅନୁଭୂତିକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଥିଲେ । ୧୯୬୪ ମସିହାରୁ ୪୦ ବର୍ଷରୁ ଉର୍ଦ୍ଧ୍ୱକାଳ ପ୍ରଫେସର ସାହୁଙ୍କ ସାଙ୍ଗରେ ମୋ ସଂପର୍କ ଅତୁଟ ରହିଲା । ସେ ବାଣୀବିହାରର ଓଡ଼ିଆ ଅଧ୍ୟାପକ ଭାବେ ତାଙ୍କ ସାଙ୍ଗରେ ସଂପର୍କ ଦୃଢ଼ୀଭୂତ ହେଲା । ସେ ମୋତେ ବଡ଼ଭାଇର ସମ୍ମାନ ଦେଲେ ଏବଂ ଭାଇ ବୋଲି ସମ୍ବୋଧନ କଲେ । ମୁଁ ତାଙ୍କ ଘରକୁ ଯେତେବେଳେ ଯାଇଛି, ଦେଖିଛି ସେ ଛାତ୍ର ମାନଙ୍କୁ କେତେ ଭଲ ପାଆନ୍ତି । ସବୁବେଳେ ସେମାନଙ୍କୁ ପରାମର୍ଶ ଦେଉଥିବାରେ ବ୍ୟସ୍ତ । କାହାକୁ ଗବେଷଣା ପାଇଁ ପ୍ରୋତ୍ସାହନ ଦେଉଥିଲାବେଳେ ଆଉ କାହାକୁ ଜୀବନ ସଂଗ୍ରାମରେ ହାର ନମାନିବାକୁ ପରାମର୍ଶ ଦିଅନ୍ତି । ପ୍ରତ୍ୟେକ ଛାତ୍ରଛାତ୍ରୀର ନାଁ ଧରି ସମ୍ବୋଧନ କରନ୍ତି ସେ । ବ୍ୟକ୍ତିଗତ ଭାବରେ ସମସ୍ତଙ୍କର ଜଣେ ହିତୈଷୀ ଓ ଶୁଭଚିନ୍ତକ ଅଧ୍ୟାପକ ଭାବରେ ତାଙ୍କ

ସୁଖ୍ୟାତି ଛାତ୍ରମାନଙ୍କ ମଧ୍ୟରେ ବ୍ୟାପିଯାଇଥିଲା । ପ୍ରାୟ ୬୦ ଜଣ ଗବେଷକ ତାଙ୍କ ତତ୍ତ୍ୱାବଧନାରେ କାର୍ଯ୍ୟ କରି ପିଏଚ୍.ଡ଼ି ଓ ଡି.ଲିଟ୍ ଉପାଧିରେ ଭୂଷିତ ହୋଇଛନ୍ତି । ତାହାଛଡ଼ା ବହୁ ତରୁଣ ତରୁଣୀ ଗବେଷକଙ୍କର ଗବେଷଣାକୁ ସେ ଅନୁପ୍ରାଣୀତ କରିଛନ୍ତି । ଛାତ୍ରମାନଙ୍କୁ ପଢ଼ାଇଲାବେଳେ ସେ ଓଡ଼ିଶାର ଗୌରବୋଜ୍ଜ୍ୱଳ ଐତିହ୍ୟର ଆଦର୍ଶ ସଂପର୍କରେ ସୂଚାଇ ଜାତୀୟ ପୁର୍ନଗଠନ ଓ ଭାଷାର ସମୃଦ୍ଧି ସଂପାଦନରେ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିବାକୁ ସଦାସର୍ବଦା ପ୍ରେରଣା ଯୋଗାଇଥାନ୍ତି । ଶିକ୍ଷାନୁଷ୍ଠାନ ଛାଡ଼ିଲା ପରେ ଛାତ୍ର ଛାତ୍ରୀମାନେ ତାଙ୍କର ସ୍ନେହ, ଆଦର, ପଢ଼ାଇବାର ଶୈଳୀ, ଭାଷାପ୍ରୀତି ସମ୍ବନ୍ଧରେ ଚର୍ଚ୍ଚାକରି ତାଙ୍କ ନିଜ ଜୀବନର ଆଦର୍ଶ ରୂପେ ଗ୍ରହଣ କରିଥାନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟର ସଭ୍ୟ ଥିଲାବେଳେ ବହୁ ଓଡ଼ିଆ ସ୍ନାତକୋତ୍ତର ବିଭାଗର ଛାତ୍ରଛାତ୍ରୀ ଓ ଓଡ଼ିଆ ବିଭାଗର ଅଧ୍ୟାପକମାନଙ୍କ ସାଙ୍ଗରେ ମିଶିବାର ସୁଯୋଗ ମତେ ମିଳିଥିଲା । ସମସ୍ତେ ପ୍ରଫେସର ବାସୁଦେବ ସାହୁଙ୍କୁ ଜଣେ ଆଦର୍ଶ ଶିକ୍ଷକ ଭାବରେ ଗଣନା କରନ୍ତି । ତାଙ୍କର କଠୋର ପରିଶ୍ରମ କାର୍ଯ୍ୟଦକ୍ଷତା, ସମୟାନୁବର୍ତ୍ତିତା ଛାତ୍ରଛାତ୍ରୀମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା । ଓଡ଼ିଶା ସାହିତ୍ୟ ଆକାଶରେ ତାଙ୍କୁ ଉଜ୍ଜ୍ୱଳ ଜ୍ୟୋତିଷ୍କ ଭାବରେ ପରିଗଣିତ କରାଯାଏ । ସେ ଯେଉଁ ଅଗଣିତ ଛାତ୍ରଛାତ୍ରୀ ସୃଷ୍ଟି କରିଯାଇଛନ୍ତି ସେମାନେ ଯଦି ତାଙ୍କ ଚିନ୍ତାଧାରାକୁ ପରିକଳ୍ପନାକୁ ଉଜ୍ଜିବୀତ କରି ରଖିବେ ତେବେ ତାହା ହେବ ପ୍ରଫେସର ସାହୁଙ୍କ ପ୍ରତି ପ୍ରକୃତ ସମ୍ମାନ ପ୍ରଦର୍ଶନ । ତାଙ୍କ ଭଳି ସ୍ୱାଭିମାନୀ ଅଧ୍ୟାପକ କ୍ୱଚିଦ୍ ଦେଖାଯାନ୍ତି । ଛାତ୍ରମାନଙ୍କୁ କହୁଥିବା ତାଙ୍କର ପ୍ରତ୍ୟେକଟି ବାକ୍ୟ, ଉପଦେଶ ଓ ଆଦେଶର ଅପୂର୍ବ ସମନ୍ୱୟ, କର୍ତ୍ତବ୍ୟନିଷ୍ଠା, ସାଧୁତା ଓ ନୈତିକତା ମୂଲ୍ୟବୋଧର ମୂର୍ତ୍ତିମନ୍ତ ପ୍ରତୀକ ପ୍ରଫେସର ବାସୁଦେବ ସାହୁଙ୍କ ଭଳି ଅଧ୍ୟାପକ ଆଜି ଖୁବ୍ କମ୍ ଅଛନ୍ତି, କିନ୍ତୁ ଚେଷ୍ଟିତ ହେଲେ ତାଙ୍କର ଛାତ୍ରଛାତ୍ରୀମାନେ ସେ ଶୂନ୍ୟସ୍ଥାନକୁ ପୂର୍ଣ୍ଣ କରିପାରିବେ । ତାଙ୍କର ଅବର୍ତ୍ତମାନରେ ଉତ୍କଳଜନନୀ ଏକ ଅନନ୍ୟ ଶିକ୍ଷାବିତ୍, ଚିନ୍ତାନାୟକ, ସାହିତ୍ୟିକ ଓ ଉଦାର ମନୋଭାବ ସଂପନ୍ନ ଶିକ୍ଷାବିତ୍‌କୁ ହରାଇଛି କିନ୍ତୁ ତାଙ୍କର ଆଦର୍ଶ ଚିରକାଳଧରି ଜନମାନସରେ ଜାଜ୍ୱଲ୍ୟମାନ ରହିବ ।



ପୂର୍ବତନ କୁଳପତି, ଉତ୍କଳ ସଂସ୍କୃତ ବିଶ୍ୱବିଦ୍ୟାଳୟ
ଏନ୍ ୩/୩୧୪, ଆଇ.ଆର୍.ସି. ଭିଲେଜ
ଭୁବନେଶ୍ୱର- ୧୫

# ଡଃ ବାସୁଦେବ ସାହୁ-ଏକ ଅମ୍ଳାନ ପ୍ରତିଭା

ଅଧ୍ୟାପକ ପଠାଣି ପଟ୍ଟନାୟକ

ଦୀର୍ଘ ଅଧ୍ୟାପକ ଜୀବନର ଚଲାପଥରେ ଯେଉଁ କେତେଜଣ ମେଧାବୀ ଛାତ୍ରଙ୍କ ପାଇଁ ମନରେ ଗର୍ବ ଅନୁଭବ କରେ, ସେମାନଙ୍କ ମଧ୍ୟରେ ଶ୍ରଦ୍ଧେୟ ବାସୁଦେବ ଥିଲେ ଅନ୍ୟତମ । ଛାତ୍ରଜୀବନ ତାଙ୍କର ଥିଲା ଅତ୍ୟନ୍ତ ସଂଘର୍ଷମୟ । କିନ୍ତୁ ସେ କେବେହେଲେ ହାରିଯାଇ ନଥିଲେ । ପଛକୁ ମଧ୍ୟ ଚାହିଁ ନଥିଲେ । ଅର୍ଥନୈତିକ ଅସ୍ୱଚ୍ଛଳତା ମଧ୍ୟରେ ସେ ଜୀବନସଂଗ୍ରାମର ମୁକାବିଲା କରିଥିଲେ ଅପୂର୍ବ ଧୈର୍ଯ୍ୟ ଓ ସାହସ ଅବଲମ୍ବନ କରି । ଜଣେ ମେଧାବୀ ଛାତ୍ର ହିସାବରେ ସେ କେବଳ ଶ୍ରେଣୀକକ୍ଷରେ ଅଧ୍ୟାପକମାନଙ୍କର ଆଦରଣୀୟ ନଥିଲେ, ସେମାନଙ୍କର ସସ୍ନେହ ଦୃଷ୍ଟି ଆକର୍ଷଣ କରିଥିଲେ ଜଣେ ସାହିତ୍ୟସେବକ ହିସାବରେ ।

ମନେପଡୁଛି ୧୯୫୯-୬୦ ମସିହାର କଥା । ସାହିତ୍ୟପ୍ରେମୀ କତିପୟ ଛାତ୍ରଙ୍କୁ ଏକାଠି କରି ଗଠନ କରିଥିଲି ଅଭ୍ୟୁଦୟ ପାଠଚକ୍ର । ଛୁଟିଦିନରେ ଏହି ପାଠଚକ୍ରର ଅଧିବେଶନ ହୁଏ ସତୀଚଉରାର ନିର୍ଜନ ପରିବେଶ ମଧ୍ୟରେ କୌଣସି ଏକ ବୃକ୍ଷର ଛାୟାତଳେ । ସେତେବେଳେ ମର୍କତନଗର ଜନ୍ମ ଗ୍ରହଣ କରିନଥିଲା । ସେଠାରେ କାଠଯୋଡ଼ିର ପ୍ରବଳ ସ୍ରୋତ ପ୍ରବାହିତ ହେଉଥିଲା । ରିଙ୍ଗ୍‌ରୋଡ଼ର ପ୍ରଶ୍ନ ହିଁ ନଥିଲା । ଯାନବାହନ ଅଥବା ଜନତାଙ୍କର ଚଳାଚଳ କ୍ୱଚିତ୍ ହେଉଥିଲା । ଶ୍ମଶାନ ପଟକୁ କିଏ କାହିଁକି ଯିବ । ସେହି ସତୀଚଉରା ଗଛମୂଳେ ସାହିତ୍ୟ ଆଲୋଚନାର ଆସର ଆହୂତ ହୁଏ । ପୂର୍ବନିର୍ଦ୍ଧାରିତ କୌଣସି ସାହିତ୍ୟର ପ୍ରସଙ୍ଗ ଉପରେ ଆଲୋଚନା କରିବା ପାଇଁ ଛାତ୍ରମାନେ ଏକାଠି ହୁଅନ୍ତି । ଯେଉଁ କେତେଜଣ ଅତ୍ୟନ୍ତ ଆଗ୍ରହୀ ଛାତ୍ର ଏହି ଆଲୋଚନାରେ ଅଂଶ ଗ୍ରହଣ କରୁଥିଲେ, ସେମାନେ ହେଲେ ଭୋଳାନାଥ ରାଉତ, ରବୀନ୍ଦ୍ର ପ୍ରହରାଜ, ବାସୁଦେବ ସାହୁ, ନଗେନ୍ଦ୍ରନାଥ ପ୍ରଧାନ, ବିଜୟାନନ୍ଦ ଦାସ, ବ୍ରହ୍ମାନନ୍ଦ ସିଂହ, ନବକିଶୋର ପୃଷ୍ଟି, ଯତୀନ୍ଦ୍ରନାଥ ମହାନ୍ତି, ଗଙ୍ଗାଧର ନନ୍ଦ, କାଳିନ୍ଦୀଚରଣ ଦାସ ଓ ଆଉ କେତେଜଣ । ସମକାଳୀନ ରେଭେନ୍ସା କଲେଜ ଓ ଟ୍ରେନିଂକଲେଜର କେତେଜଣ ଆଗ୍ରହୀ ଛାତ୍ର ମଧ୍ୟ ଏହି ଆଲୋଚନା ସଭାକୁ ଆକୃଷ୍ଟ ହୋଇଥିବା ମନେପଡୁଛି । ଅଧ୍ୟାପକ ହୋଇଥିବାରୁ ପ୍ରତ୍ୟେକଥର ବୈଠକରେ ମୋତେ ସଭାପତିର ଦାୟିତ୍ୱ ଦିଆଯାଉଥିଲା । ଲକ୍ଷ୍ୟ କରିଛି ଏହି ବୈଠକରେ ବାସୁଙ୍କର ମୌଳିକ ବିଚାର-ଆଲୋଚନା ।

ଯେଉଁ ଛାତ୍ରମାନଙ୍କ ନାମ ଉଲ୍ଲେଖ କରିଛି, ସେମାନେ ନିଜନିଜର କର୍ମକ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରି ବର୍ତ୍ତମାନ ଅବସର ଗ୍ରହଣ କରିଛନ୍ତି । ଜଣେ କର୍ମଠ, ନୀତିବାନ ଏବଂ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ବାସୁଦେବ ସ୍ୱନାମଧନ୍ୟ ହୋଇଥିଲେ ଜଣେ ଦୀପ୍ତିମାନ ଗବେଷକ ଏବଂ ବିଶ୍ୱବିଦ୍ୟାଳୟ ପ୍ରଫେସର ହିସାବରେ । ସାହିତ୍ୟସାଧନାର ପ୍ରେରଣା ଏହି ଛାତ୍ରମାନେ ଲାଭ କରିଥିଲେ ଅଭ୍ୟୁଦୟ ପାଠଚକ୍ରରୁ । ସମସ୍ତେ ଲେଖକ ହିସାବରେ ଯଶସ୍ୱୀ ହୋଇଅଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଅଭ୍ୟୁଦୟ ପାଠଚକ୍ର ଏହି ଛାତ୍ରବନ୍ଧୁମାନଙ୍କୁ ନେଇ ରୂପାୟିତ ହେଲା ଅଭ୍ୟୁଦୟ ସାହିତ୍ୟ ସମାଜ ଭାବରେ । ସଭାପତିର ଦାୟିତ୍ୱ ମଧ୍ୟ ମୋ ଉପରେ ଲଦି ଦିଆଗଲା । ଏଣିକି ସାହିତ୍ୟ ସମାଜର ଆଲୋଚନାର ପରିସର ବ୍ୟାପକ ହୋଇପଡ଼ିଲା । ସତୀଚଉରାର ନିର୍ଜନ ଉପକଣ୍ଠରେ ସୀମିତ ନରହି ଆଲୋଚନା ବୈଠକ ଆହୂତ ହେଲା । ଉତ୍କଳ ସାହିତ୍ୟ ସମାଜ ହଲ୍‌ରେ ଅଥବା ଟାଉନ୍ ହଲ୍‌ରେ । ଅନେକ ବିଦ୍ୱାନ ଅଧ୍ୟାପକ ନିମନ୍ତ୍ରିତ ହୋଇ ଭାଷଣ ଦେଉଥିଲେ ।

କେବଳ ସଭାରେ ଅଭ୍ୟୁଦୟ ସାହିତ୍ୟ ସମାଜ ସନ୍ତୁଷ୍ଟ ହୋଇ ନଥିଲେ । ଏହି ଉତ୍ସାହୀ ଛାତ୍ରବନ୍ଧୁମାନଙ୍କ ଉଦ୍ୟମରେ ଅଭ୍ୟୁଦୟ ସାହିତ୍ୟ ସମାଜ ସଂପାଦନା କରି ପ୍ରକାଶ କଲେ, 'ସାହିତ୍ୟରେ ରହସ୍ୟବାଦ', ଗଙ୍ଗାଧର ମେହେର ଶତବାର୍ଷିକୀ ଉପଲକ୍ଷେ 'ମେହେର ଆଲୋକ' ଓ ଓଡ଼ିଆ ସାହିତ୍ୟର ଏକ ସ୍ମରଣୀୟ ଆଲୋଚନା ଗ୍ରନ୍ଥ ''ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ।'' ଏହି ସମସ୍ତ କାର୍ଯ୍ୟରେ ଅନ୍ୟ ଛାତ୍ରବନ୍ଧୁମାନଙ୍କ ସହିତ ଆଦରଣୀୟ ବାସୁଦେବଙ୍କର ଆନ୍ତରିକ ସହଯୋଗ ସବୁଦିନ ପାଇଁ ଅଭୁଲା ହୋଇ ରହିଛି ।

କାଳଚକ୍ରର ଆବର୍ତ୍ତନରେ କିଏ କେତେବେଳେ ହଜିଯିବେ, ତାହା କଳ୍ପନାର ଅତୀତ । ମହାକାଳ ସାନବଡ଼ର ଭେଦାଭେଦ ସ୍ୱୀକାର କରେ ନାହିଁ । କଥାରେ କହନ୍ତି, ଯାହାକୁ ଈଶ୍ୱର ଅଧିକ ଶ୍ରଦ୍ଧା କରନ୍ତି, ତାକୁ ଚଞ୍ଚଳ ଟାଣି ନିଅନ୍ତି ନିଜ ପାଖକୁ । ବାସୁଦେବଙ୍କର କର୍ମମୟ ଜୀବନ ଥିଲା ଗରିମାମୟ । ଅନେକ କାର୍ଯ୍ୟ ବାକି ରହିଗଲା । ତଥାପି ତାଙ୍କର ସାରସ୍ୱତ କୃତି ପାଇଁ ସେ ଅନେକ ଦିନ ପର୍ଯ୍ୟନ୍ତ ସ୍ମରଣୀୟ ହୋଇ ରହିଥିବେ । ତାଙ୍କର ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।



କେଉଁଝର କଲୋନୀ
ତୁଳସୀପୁର-୮

# ପ୍ରଫେସର ବାସୁଦେବ ସାହୁଙ୍କ ସ୍ମରଣେ

ଡଃ ଗଣେଶ୍ୱର ମିଶ୍ର

ପ୍ରଫେସର ବାସୁଦେବ ସାହୁ (୧୯୩୯-୨୦୦୫) ଥିଲେ ଏକାଧାରରେ ପ୍ରବୀଣ ଅଧ୍ୟାପକ, ଗବେଷକ, ପ୍ରାବନ୍ଧିକ ଏବଂ କବି । ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ଅବଦାନ ବିପୁଳ । ବିଶେଷତଃ ଭାଷାତତ୍ତ୍ୱ ଓ ବ୍ୟାକରଣ ସମ୍ପର୍କରେ ତାଙ୍କ ପ୍ରଣୀତ ଗ୍ରନ୍ଥ ସମୂହ ପାଇଁ ସେ ଅବଶ୍ୟ ସ୍ମରଣୀୟ ହୋଇ ରହିବେ ।

ପ୍ରଫେସର ବାସୁଦେବ ସାହୁଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ପ୍ରକାଶିତ ସ୍ମରଣିକାରେ ତାଙ୍କର ବ୍ୟକ୍ତିତ୍ୱ ତଥା ସାହିତ୍ୟ ସାଧନାର ଏକ ପ୍ରାଥମିକ ଆକଳନ ମାତ୍ର । କହିବା ଅନାବଶ୍ୟକ, ଏଥିରେ ତାଙ୍କର ସାମଗ୍ରିକ କୃତିର ସମ୍ପୂର୍ଣ୍ଣ ମୂଲ୍ୟାୟନ ସମ୍ଭବ ହୋଇ ନାହିଁ । ଆଶା କରିବା ସ୍ୱାଭାବିକ, ବାସୁଦେବ ସାହୁଙ୍କ ଭଳି ବିରଳ ସାହିତ୍ୟ ସାଧକଙ୍କ ସମ୍ପର୍କରେ ଭବିଷ୍ୟତରେ ଅଧିକ ଆଲୋଚନା/ଗବେଷଣା ଜାରି ରହିବ ଏବଂ ସାହୁଙ୍କ ଜୀବନ ଓ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହେବେ ।



ସଭାପତି, ଓଡ଼ିଶା ସାହିତ୍ୟ ଏକାଡ଼େମୀ
ଭୁବନେଶ୍ୱର

# ଏକାନ୍ତ ଅନ୍ତରଙ୍ଗ

ଡଃ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି

ବାସୁ ଥିଲା ମୋର ସାନ ଭାଇ । ତା' ସହିତ ମୋର ରକ୍ତର ସଂପର୍କ ନଥାଇ ବି ସେ ମୋର ଏକାନ୍ତ ଅନ୍ତରଙ୍ଗ । ସେ ଆନ୍ତରିକତାର ଗଭୀରତାରେ ବୁଡ଼ିଗଲେ- କଲମ ସ୍ଥିର ହୋଇଯାଏ- ଭାବାବେଗରେ ଡୁବିଯିବାକୁ ପଡ଼େ । ଏ ସଂପର୍କରେ ଆମ ଦୁହିଁଙ୍କ ପରିବାର ସହିତ ଅନ୍ୟ ଗୋଟିଏ ପରିବାର (ସ୍ୱର୍ଗତ ବ୍ରଜବିହାରୀ ମହାନ୍ତି ଓ ସ୍ୱର୍ଗତ ଆଶାଲତା ମହାନ୍ତିଙ୍କ)ର ସଦସ୍ୟ- ଏ ସଂପର୍କର ସଠିକ ଆକଳନ କରିପାରିବେ । ଅନ୍ୟମାନଙ୍କ ପାଖରେ ତାହା ହୁଏତ ଠିକ୍ ଭାବରେ ପହଂଚି ନପାରେ । ରକ୍ତର ବଂଧନଠାରୁ ସ୍ନେହର ବଂଧନ କିପରି ଦୃଢରୁ ଦୃଢତର ହୋଇଛି-ତାର ଅଳ୍ପ କେତୋଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରୁଛି । ୧୯୫୯ ମସିହା ମେ ମାସ ଶେଷ ସପ୍ତାହ । ସ୍ଥାନ ''ସ୍ୱରାଜ ହୋଟେଲ'' ଜେଲରୋଡ଼ (କଟକର ପୁରୁଣାଜେଲ ଫାଟକର ବିପରୀତ ପାର୍ଶ୍ୱରେ ଏକ ବିରାଟ ଦ୍ୱିତଳ ପ୍ରାସାଦ) । ଆମ ପ୍ରଥମ ସାକ୍ଷାତର ପାର୍ଶ୍ୱରେ ଏକ ବିରାଟ ଦ୍ୱିତଳ ପ୍ରାସାଦ) । ଆମ ପ୍ରଥମ ସାକ୍ଷାତର ସ୍ଥାନ ସେଇଠାରେ ଥିଲା-ଆଜି ତାର ଚିହ୍ନବର୍ଣ୍ଣ ନାହିଁ । ପୁରୀ କଲେଜରୁ ଆଇ.ଏସ୍‌ସି ପାଶ୍ କରି ବାସୁ ଆସିଥାଏ, କଟକରେ ରହି ବି.ଏ ପାଠ ପଢ଼ିବାକୁ ଆଉ ମୁଁ ମୋର କର୍ତ୍ତବ୍ୟ ଅନୁରୋଧରେ ଆଇ.ଏ ପରେ ଭାରତୀୟ ଡାକତାର ବିଭାଗରେ ଚା ୍ୟକ୍ତି ପାଇ ରହୁଥାଏ ସେଇ ସ୍ୱରାଜ ହୋଟେଲର ଗୋଟିଏ ଛୋଟ ବଖରାରେ . ସେଦିନ ଡାଇନିଂଟେବୁଲ ଉପରେ ପରସ୍ପର ମୁହାଁମୁହିଁ ହୋଇ ମଧ୍ୟାହ୍ନ ଭୋଜନ କରୁଥିଲାବେଳେ-ପରସ୍ପର ପ୍ରତି କେଉଁ ଅଦୃଶ୍ୟ ଦେବତାଙ୍କ ଇଂଗିତରେ ଆକୃଷ୍ଟ ହେଲୁ । କାରଣ ହେଲା-ମୁଁ ବରାଦ କରିଥିବା ''ଖାଦ୍ୟ ପ୍ଲେଟ୍'' ଏବଂ ବାସୁ ମଗାଇ ଥିବା ''ଖାଦ୍ୟ ପ୍ଲେଟ୍'' ସମାନ ମୂଲ୍ୟ ଓ ସମାନ ପ୍ରକାରର ଥିଲା । ଖାଉଥିବାବେଳେ ପରସ୍ପରକୁ ବାରମ୍ବାର ଚାହୁଁଥାଉ-ମାତ୍ର କେହି କାହାରିକୁ ଭରସି କରି କହିପାରୁ ନଥାଉ । ଏ ସହର ଏବଂ ଏ ହୋଟେଲରେ ମୁଁ ପୂର୍ବରୁ ରହି ଆସିଛି । ବାସୁ ସଂପୂର୍ଣ୍ଣ ନୂଆ । ପୁରୀରୁ ସିଧା ଆସିଛି କଟକ-ନିଜ ଭାଗ୍ୟ ନିଜେ ନିର୍ଦ୍ଧାରଣ କରିବାକୁ । ତେଣୁ ମୋ ସହିତ କଥା ହେବାକୁ ଇଚ୍ଛା ଥାଇ ବି ସେ କହିପାରୁ ନଥାଏ-ମାତ୍ର ମୋର ମୁଖଭଂଗୀ-ତାର ସ୍ମିତହସ ମୋତେ ବାଧ୍ୟ କଲ ାଗ କଥା ହେବାକୁ । ହୋଟେଲ କାଉଣ୍ଟରରେ

ପଇସା ଦେଇସାରି ଉଭୟେ ଉଭୟଙ୍କର ''ପରିଚୟ'' ଏବଂ ''ଭବିଷ୍ୟତ'' ଲକ୍ଷ୍ୟ ସଂପର୍କରେ ଦୁଃଖସୁଖ ହେବାକୁ । ସେଇ ହୋଟେଲର ମୋ ଛୋଟ କୋଠରୀକୁ ଫେରି ଆସିଲୁ । ଆଳାପ ପରେ -ପରସ୍ପରର ଜନ୍ମ ତାରିଖ ଜାଣିବା ପରେ ''ବଡ଼ଭାଇ'' ହେବାଟା ମୋ ଭାଗ୍ୟରେ ପଡ଼ିଲା ।

ସଚରାଚର ଅଭାବୀ ଓ ମେଧାବୀ ଛାତ୍ରଛାତ୍ରୀଙ୍କର ଆଶା ଆକାଙ୍କ୍ଷା ପୂର୍ଣ୍ଣତା ପାଇଁ ଯେଉଁ ଯେଉଁ ପ୍ରକାର ସଂଘର୍ଷ ଓ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥାଏ ତାହା ବାସୁଦେବଙ୍କ ଭାଗ୍ୟରେ ଓ ମୋ ନିଜ ଭାଗ୍ୟରେ ବି ପଡ଼ିଥିଲା । ଅଭାବର ତାଡ଼ନାରେ-ପରିସ୍ଥିତିର ଦାବିରେ ମୁଁ ଅଧାରୁ ପାଠଛାଡ଼ି ଚାକିରି କରିବାକୁ ନିଷ୍ପତ୍ତିନେଲି । ମାତ୍ର ମନଭିତରେ ଏକ ଭୟଙ୍କର ଶୂନ୍ୟତା ଓ ଅଭାବବୋଧ । ଏହିପରି ମନସ୍ତାପ ଭିତର ଦେଇ ଗତି କରୁଥିବା ସମୟରେ-ସମଧର୍ମା ବଂଧୁ ଭାବରେ ବାସୁ ମୋ ସହିତ ମିଳିତ ହେଲା । ସେଦିନର ସ୍ମୃତି ମୋର ଚିର ଅଭୁଲା ରହିବ । କିନ୍ତୁ ବାସୁର ଲକ୍ଷ୍ୟ ଅନ୍ୟପ୍ରକାରର । ସେ ଯେପରି ହେଉ ପାଠପଢ଼ା ଅବ୍ୟାହତ ରଖିବ । ଆଗକୁ ତା' ପାଇଁ ଯେଉଁ ଦାୟିତ୍ୱ ରହିଛି- ଏ ଛୋଟ ଚାକିରୀରେ ତାର ସମାଧାନ ହୋଇପାରିବ ନାହିଁ । ତା' ଉପରେ ତାର ପିତାମାତା ସହୋଦର ଜ୍ୟେଷ୍ଠାଭଗ୍ନୀ ଓ ତିନୋଟି ଭଣଜାଙ୍କର ଭବିଷ୍ୟତ ଝୁଲୁଥାଏ ।

ଦୁହେଁ ବସି ଚିନ୍ତାକଲୁ-କେଉଁ ଉପାୟରେ ବାସୁର ସମସ୍ୟା ସମାଧାନ ହେବ । ସେ ଚାହିଁଲା ଦୁଇଟି ଟିଉସନ (୨୫/୩୦ ଟଙ୍କା ଭିତରେ) ପାଇଗଲେ ସେ ଖ୍ରୀଏଷ୍ଟ କଲେଜରେ ଓଡ଼ିଆରେ ଅନର୍ସ ନେଇ ବି.ଏ. ପଢ଼ିବ । (ସେତେବେଳେ ଯେ କୌଣସି ମେସ୍‌ରେ ଚଳିବା ପାଇଁ ଟ୩୫ଙ୍କାରୁ ଟ୪୦ଙ୍କା ଖର୍ଚ୍ଚ ଲାଗୁଥିଲା । ତା' ପରେ ସେ ଓ.ଏ.ଏସ୍ ଦେବ ନହେଲେ ଏମ୍.ଏ. ପଢ଼ିବ ଅଧାପକ ହେବ । ଏତେବଡ଼ ବିରାଟ ଆଶାକୁ ପ୍ରତିବଂଧକ ମାତ୍ର ୩୦/ ୪୦ ଟଙ୍କା-ବର୍ତ୍ତମାନ ସମସ୍ତଙ୍କୁ ହସ ଲାଗିପାରେ ମାତ୍ର-ସେତେବେଳେ ତାହାଥିଲା ଏକ ବିରାଟ ସମସ୍ୟା । ଦୁଇଦିନ ଭିତରେ ବାସୁ ଗୋଟିଏ ଟିଉସନ୍ ଠିକ୍ କରିଦେଲା । ଆଉ ଗୋଟିଏ ଦରକାର । ହଠାତ୍ ମୋର ମନେପଡ଼ିଲା-ମୋର ପରମଶୁଭେଚ୍ଛୁ ଓ ସାହାଯ୍ୟଦାତା ସ୍ୱର୍ଗତ ବ୍ରଜବିହାରୀ ମହାନ୍ତି ଓ ଆଶାଲତା ମହାନ୍ତିଙ୍କ କଥା । ତାଙ୍କର ପିଲାମାନେ ରାଉରକେଲାରୁ ଆସି କଟକରେ ପଢ଼ିବାର ବନ୍ଦୋବସ୍ତ ହେଉଥାଏ । ଜଣେ ଭଲ ଗୃହଶିକ୍ଷକର ଅଭାବ ଥାଏ ତାଙ୍କର । ମୁଁ ସେଇ ସ୍ଥାନରେ ବାସୁକୁ ପଂହଚାଇ ଦେଲି ।

ପ୍ରଥମ ସାକ୍ଷାତରୁ ହିଁ 'ବାସୁ' ସେମାନଙ୍କ ମନ କିଣିନେଲା । ଆବଶ୍ୟକୀୟ ଅର୍ଥର ଯୋଗାଡ଼ ହୋଇଗଲା । ବାସୁ ସେଠାରେ ଗୃହଶିକ୍ଷକ ଭାବରେ ନୁହେଁ ପିଲାମାନଙ୍କର ବଡ଼ଭାଇ ଭାବରେ ସେମାନଙ୍କ ପାଠପଢ଼ାର ଦାୟିତ୍ୱ ନେଲା । ଘରର ପୁଅ ଭାବରେ ତାର ନାମ ରହିଲା ସୁବ୍ରତ । ଅଭାବ ଅପସରିଗଲା-ବାସୁ ତାର ସାଧନା ପଥରେ ଆଗେଇ ଚାଲିଲା-

ମୁଁ ମୋର ବିଭାଗୀୟ ଟ୍ରେନିଂ ଦେଇସାରି ଯାଜପୁର ରୋଡ଼ରେ ପୋଷ୍ଟିଂ ହେଲି ।

ଖ୍ରାଏଷ୍ଟ ଓ ରେଭେନ୍ସାରେ ପଢ଼ିଲାବେଳେ ସେ ଉଭୟ କଲେଜର ଓଡ଼ିଆ ବିଭାଗର ପ୍ରାୟ ସବୁ ଅଧ୍ୟାପକମାନଙ୍କର ଅତି ପ୍ରିୟ ଥିଲା । ସେମାନଙ୍କ ମଧ୍ୟରେ ଦିବଂଗତ ଅଧ୍ୟକ୍ଷ ଡଃ ଦେବେନ୍ଦ୍ର ମହାନ୍ତି-ବାସୁକୁ ନିଜର ପୁଅ ପରି ସ୍ନେହ କରୁଥିଲେ । ମାତୃପୋମ ସ୍ନେହ ଓ କରୁଣାରେ ସିକ୍ତ ରଖୁଥିଲେ ପ୍ରଫେସର ଡଃ ରେଖା ମହାନ୍ତି । ସବୁ ଗୁରୁଜନ ଏବଂ ଶୁଭଚିନ୍ତକମାନଙ୍କ ଶୁଭାର୍ଶୀବାଦରୁ ବାସୁର ଚଲାପଥ କୁସୁମିତ ହୋଇଗଲା । ଧର୍ମ ପିତା-ମାତା ସ୍ୱର୍ଗତ ବ୍ରଜବିହାରୀ ମହାନ୍ତି ଓ ସ୍ୱର୍ଗତ ଆଶାଲତା ମହାନ୍ତିଙ୍କର ଅନୁପମ ସ୍ନେହ-ଶ୍ରଦ୍ଧା ଓ ପ୍ରେରଣା ବାସୁକୁ ବେଶ୍ ପ୍ରୋତ୍ସାହିତ କଲା । ଅନ୍ତରଂଗ ବଂଧୁ-ସହପାଠୀ ଓ ପ୍ରିୟଜନମାନଙ୍କ ଶୁଭ କାମନାର ଶୁଭଫଳ ସ୍ୱରୂପ ବାସୁ ୧୯୬୩ ମସିହା ଏମ୍.ଏ. (ଓଡ଼ିଆ) ପରୀକ୍ଷାରେ ପ୍ରଥମଶ୍ରେଣୀରେ ପ୍ରଥମ ହୋଇ ଦୁଇଟି ସ୍ୱର୍ଣ୍ଣପଦକ ବିଜୟୀ ହେଲା । ଏବଂ ସଂଗେସଂଗେ ସେଇ ବର୍ଷ ଏମ୍.ପି.ସି. କଲେଜ ବାରିପଦାରେ ଅଧ୍ୟାପକ ଭାବରେ ଯୋଗ ଦେବାକୁ ଆଡହକ ନିଯୁକ୍ତିର ନିର୍ଦ୍ଦେଶ ପାଇଲି । ଆଡହକ ଚାକିରି କାଳରେ ଦରମା ପାଇବାର କାଳେ ବିଳମ୍ବ ହେବ ସେଥିପାଇଁ, ଡଃ ଦେବେନ୍ଦ୍ର ମହାନ୍ତି, ଆବଶ୍ୟକୀୟ ଅର୍ଥ ବାସୁକୁ ଦେଇଥିଲେ । ଅନ୍ୟ ଅନେକ ଶ୍ରଦ୍ଧାଳୁ-ଶୁଭଚିନ୍ତକ ତାର ବିଜୟ ଯାତ୍ରାରେ ଜୟଧ୍ୱନି କରିଥିଲେ- ମୁଁ ଥିଲି ସେଇମାନଙ୍କ ସାଂଗରେ ।

ବାସୁ ଚାହିଁଥିଲେ ଓ.ଏ.ଏସ୍ ଚାକିରି ପାଇପାରିଥାନ୍ତା-ମାତ୍ର ସେ ଶିକ୍ଷକତାକୁ ବେଶି ପସନ୍ଦ କଲା । ଏବଂ ଜଣେ ଆଦର୍ଶ ଶିକ୍ଷକ ଭାବରେ ପ୍ରତିଷ୍ଠା ଏବଂ ଗୌରବର ଅଧିକାରୀ ହେଲା ।

୧୯୬୨ ମସିହାରେ କଟକ ଓ ଭୁବନେଶ୍ୱରରେ ଦୁଇଟି ସାଂଧ୍ୟକଲେଜ ଖୋଲିଲା । ମୁଁ ଠିକ୍ ସମୟରେ କଲେଜରେ ପଢ଼ିବା ପାଇଁ ମୋ ନିଯୁକ୍ତି କର୍ତ୍ତାଙ୍କଠାରୁ ଅନୁମତି ପତ୍ର ଆଣିପାରିଲି ନାହିଁ-ତେଣୁ ୧୯୬୩ ମସିହାରେ ମୁଁ ରେଭେନ୍ସା ସାଂଧ୍ୟ କଲେଜର ସ୍ନାତକ ଶ୍ରେଣୀରେ ନାମ ଲେଖାଇଲି । ଅତଏବ ଏଇ ୧୯୬୩ ମସିହାଟି ଆମ ଦୁହିଁଙ୍କ ପାଇଁ ଥିଲା ଅତି ଗୁରୁତ୍ୱପୂର୍ଣ୍ଣ-ତାର ଏମ୍.ଏ. ପାଶ୍ ଓ ଅଧ୍ୟାପକ ଚାକିରି ଏବଂ ମୋର ବି.ଏ. ଶ୍ରେଣୀରେ ଅଧ୍ୟୟନ ।

ଚାକିରି କରି ପାଠପଢ଼ିବା କେତେ କଷ୍ଟ-ତାହା କେବଳ ଅନୁଭବିମାନେ ହିଁ ଜାଣନ୍ତି । ସେ ପୁଣି ପୋଷ୍ଟାଲ ଡିପାର୍ଟମେଣ୍ଟ୍‌ରେ । ମୋର ଆଉ ଗୋଟିଏ ଅଡୁଆ ଥାଏ-ସେଇଟି ହେଲା-ମୁଁ ତତ୍‌କାଳର ଡାକତାର ବିଭାଗର ତୃତୀୟ ଶ୍ରେଣୀ କର୍ମଚାରୀ ସଂଘର କଟକ ଶାଖା ସଂପାଦକ ଥିଲି । ସେଥିପାଇଁ ମୋର ଅନେକ ସମୟ ବ୍ୟୟିତ ହେଉଥିଲା । ବାସୁ ପ୍ରତିସପ୍ତାହରେ ଚିଠିରେ ତାଗିଦ୍ କରେ-''ନେତାଗିରି ଛାଡ଼''-ପାଠ ପ୍ରତି ଯତ୍ନ ଦିଅ ।

ସାନଭାଇ ହୋଇ ବଡ଼ଭାଇକୁ ଏପରି ମିଠା-କଡ଼ା ଉପଦେଶ ଦେବା ଭିତରେ ଯେଉଁ ଆନ୍ତରିକତା ଓ ଅନ୍ତରଙ୍ଗତାର ସ୍ପର୍ଶ ରହିଛି-ତାହା ସ୍ମରଣ କଲେ- ଆଖିରେ ଲୁହ ଭର ଯାଉଛି ।

ବାସୁ ମୂଳତଃ କବିଥିଲା-ଏବଂ ଖୁବ୍ ଭଲ କବିତା ଲେଖୁଥିଲା । ଅଧ୍ୟାପକ ହେବାପରେ ତା'ର ଅଧ୍ୟାପନା ଶୈଳୀ-ଆମ ଗୁରୁ ସ୍ୱର୍ଗତ ରାଙ୍କୁ ରାୟଙ୍କ ପରି ହେଉଛି ବୋଲି ତାର ଗୁଣମୁଗ୍ଧ ଛାତ୍ର ଏବଂ ସମବୟସ୍କ ବଂଧୁମାନେ କହୁଥାଆନ୍ତି । ମୋତେ ତାର ପ୍ରଶଂସା ଭଲ ଲାଗେ । ତା' ପରେ ସେ ପୁରୀ ସାମନ୍ତଚନ୍ଦ୍ର ଶେଖର କଲେଜକୁ ବଦଳି ହୋଇ ଚାଲିଆସିଲା-ଏବଂ ଏହି କଲେଜ ହିଁ ତାର ଥିଲା-ଉଚ୍ଚଶିକ୍ଷା ଲାଭର ପ୍ରଥମ ଏବଂ ସାରସ୍ୱତ ସାଧନା ସ୍ଥଳୀ । ତେଣୁ ଏଠାରେ ଯୋଗ ଦେବାପରେ ସେ ସାଧନାରେ ଅଗ୍ରଗତି ଲାଭ କଲା-ଏବଂ ପ୍ରଥମ କବିତା ପୁସ୍ତକ 'ସମ୍ବିତ' ପ୍ରକାଶ ପାଇଲା । ବାସୁ ପୁରୀ ଆସିବା ମୋ ପାଇଁ ଲାଭପ୍ରଦ ହେଲା । ମୁଁ ସାଂଧ୍ୟ କଲେଜରୁ ସ୍ନାତକ ଡିଗ୍ରୀ ହାସଲ ପରେ ରେଭେନ୍ସା କଲେଜରେ ଓଡ଼ିଆ ବିଭାଗରେ ଏମ୍.ଏ. ଶ୍ରେଣୀରେ ଯୋଗ ଦେଇଥାଏ । ପାଲି-ପ୍ରାକୃତ-ଓ ଭାଷାତତ୍ତ୍ୱ ବିଷୟଗୁଡ଼ି ମୋର ସହଜବୋଧ ହେଉନଥାଏ । ସେ ପ୍ରାୟ ୧୫ଦିନ ବା ମାସେ ଅନ୍ତରରେ ଆସି ମୋତେ ଏ ବିଷୟଗୁଡ଼ିକ ବୁଝାଇ ଦିଏ ।

ମୁଁ ଏମ୍.ଏ. ପଢୁଥିଲା ସମୟରେ ମୋତେ ବହୁତ କଷ୍ଟ ପଡୁଥାଏ-କଟକ ଜି.ପି.ଓ ଥାଏ ମୋର କର୍ମକ୍ଷେତ୍ର-ସକାଳ ସାଢ଼େସାତରୁ ସାଢ଼େଦଶ ପର୍ଯ୍ୟନ୍ତ ରାତ୍ରି କାଉଣ୍ଟରରେ କାମ କରି ୧୧ଟା ବେଳକୁ କଲେଜ ଯାଏ- କଲେଜରୁ ଫେରି ସିଧା ଅଫିସରେ ପୁଣି ଲାଗେ କାର୍ଯ୍ୟରେ ଅପରାହ୍ନ ୩ରୁ ରାତି ୮ଟା ପର୍ଯ୍ୟନ୍ତ । ମୋର ଏଇ ଅବସ୍ଥା ଦେଖି ବାସୁ ମୋତେ ଅଧିକ ଉତ୍ସାହିତ କରେ-କହେ "ସଂଗ୍ରାମ" ଆମ ଜୀବନ ସାଥି-ତାକୁ ଆଦରି ନେବା ହେବ ଆମର ଶ୍ରେଷ୍ଠ ଧର୍ମ । ସେ ସମୟରେ ଏମ୍.ଏ. ପରୀକ୍ଷା ମେ ମାସରେ ହେଉଥିଲା । ୬୭ ମସିହାରେ ମୁଁ ଏମ୍.ଏ. ପରୀକ୍ଷା ଦେଉଥାଏ । ବାସୁ ଖରାଦିନ ଛୁଟିରେ ଆସି ମୋରି ଘରେ ରହି ମୋତେ ପରୀକ୍ଷା ପାଇଁ ପ୍ରସ୍ତୁତିରେ ସାହାଯ୍ୟ କରିଛି । କ୍ଳାନ୍ତ ହୋଇ ରାତି ୧୨ଟା ପରେ ମୁଁ ଶୋଇପଡ଼ିଲାବେଳେ ସେ ଜାଗ୍ରତ ରହି କହେ ଭାଇ- "ଆଉ ଦୁଇଟା ବହି ରହିଲାଣି-ତାକୁ ଆଖି ପକାଇବାକୁ ହେବ-ଆଗରେ ଅନେକ ରାତି ଅଛି ଶୋଇବାକୁ-ବର୍ତ୍ତମାନ ଉଠ ଏବଂ ପଢ଼ ।" କିପରି ଭୁଲିହେବ ଏ ଆତ୍ମୀୟତାକୁ ??

ସେ ବର୍ଷ (୧୯୬୬) ଶେଷବେଳକୁ ପରୀକ୍ଷାଫଳ ବାହାରିଲା । ବିଭିନ୍ନ କଲେଜରେ ଓଡ଼ିଆ ଅଧ୍ୟାପକ ପଦବୀ ପାଇଁ ବିଜ୍ଞାପନ ବାହାରୁଥାଏ । ବାସୁ ମୋତେ ଅଧ୍ୟାପକ ହେବାପାଇଁ ପ୍ରବର୍ତ୍ତାଇଲା ଏବଂ ଆବେଦନ କରିବାକୁ କହିଲା । ଭାରତୀୟ ଡାକତାର ବିଭାଗରେ ବିଭାଗୀୟ ପରୀକ୍ଷା ଦେଇ ପଦୋନ୍ନତି ପାଇବାର ସୁଯୋଗ ବେଶ୍ ଥାଏ । ତେଣୁ ଘରୋଇ କଲେଜରେ

ଅଧ୍ୟାପକ ହେବାକୁ ମନରେ କୁଣ୍ଠା ଆସୁଥାଏ । ଏହି ମର୍ମରେ ମୋର ଅନେକ ଶୁଭଚିନ୍ତକ ଏବଂ ଶୁଭାନୁଧ୍ୟାୟୀ ବଂଧୁ ବର୍ଗ ମଧ ପୁରୁଣା ଚାକିରି ଛାଡ଼ିବା ସପକ୍ଷରେ ମତ ଦେଲେ ନାହିଁ । ମୁଁ ବଡ଼ କଠୋର ସମସ୍ୟାରେ ମାନସିକ ସ୍ତରରେ ଆନ୍ଦୋଳିତ ହେଉଥାଏ । 'ନିଶ୍ଚିତ'/ ଏବଂ 'ଅନିଶ୍ଚିତ' ଏଇ ଦୁଇଟି ଶବ୍ଦ ମୋତେ ବାରମ୍ବାର ବିବ୍ରତ କରୁଥାଏ । ସେଇ ସମୟରେ ରେଭେନ୍ସା ସାଂଧ ମହାବିଦ୍ୟାଳୟର ମୋର ପ୍ରିୟ ଗୁରୁ ଅଧ୍ୟାପକ ଡଃ ନଗେନ୍ଦ୍ର ନାଥ ପ୍ରଧାନ ମୋତେ ଅଧ୍ୟାପକ ହେବା ପାଇଁ ପରାମର୍ଶ ଦେଲେ । ମୋ ଧର୍ମପତ୍ନୀ ମଧ 'ବାସୁ' ଓ 'ନଗେନ୍ଦ୍ର ସାର୍‌ଙ୍କ' କଥାମାନି ଅଧ୍ୟାପକ ହେବାପାଇଁ ସମ୍ମତି ଦେଲେ । ମୁଁ ଜୁଲାଇ ୧୯୬୮ରେ ଦେଓଗଡ଼ କଲେଜରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲି । ଅତଏବ ଜୀବନର ଚଲାପଥରେ ଚାଲୁଚାଲୁ ମୁଁ 'ବାସୁ'ର ଅନେକ ପରାମର୍ଶ ଓ ଉପଦେଶକୁ ସମ୍ମାନ ଜଣାଇ ଚାଲିଛି-ସେ'ବି ମଧ ପ୍ରଫେସର ହେବା ପର୍ଯ୍ୟନ୍ତ ତା'ର ଅନେକ ଗୁରୁତ୍ୱ ପୂର୍ଣ୍ଣ ସମସ୍ୟାରେ ମୋର ମତାମତ ଲୋଡ଼ିଛି । ଏଇଟା ତାର ବଡ଼ପଣ ।

ବାସୁର ଅନ୍ୟଏକ ସୁଗୁଣ ସେ ବଡ଼ ବଂଧୁବତ୍ସଳ । ଯିଏ ଥରେ ତାର ବଂଧୁତାର ଆକର୍ଷଣରେ ଆସିଛି-ସେ ନିଶ୍ଚୟ ଏ କଥା ଉପଲବ୍ଧି କରିପାରିବ ।

ମାତ୍ର ୧୦ବର୍ଷ ଚାକିରି କରିବା ପରେ ୧୯୭୩ ମସିହାରେ 'ବାସୁ' ପିଏଚ୍.ଡ଼ି କରିଥିଲା । ସେ ସମୟରେ ଓଡ଼ିଆ ବିଭାଗରେ ଏହା ଥିଲା ଏକ ଚର୍ଚ୍ଚିତ ବିଷୟ । ଯାହାହେଉ ସମୟ କ୍ରମେ ମୁଁ ଦେଓଗଡ଼ କଲେଜର ବ୍ୟାସନଗର କଲେଜକୁ ଚାଲିଆସିଥାଏ ୧୯୭୦ ମସିହାଠାରୁ ।

ମୁଁ ବ୍ୟାସନଗର ଆସିବା ଦିନଠୁଁ ବାସୁର ଗୋଟିଏ ପରାମର୍ଶ, ''ଭାଇ- ପିଏଚ୍.ଡ଼ି ପାଇଁ ଯତ୍ନ କର ।'' ମାତ୍ର ଯତ୍ନ କରିଦେଲେ ଯଦି ରତ୍ନ ମିଳୁଥାନ୍ତା-ତେବେ ଦୁନିଆରେ ଏତେ ଅଭାଗା ନଥାନ୍ତେ । ମୁଁ ଏକଥା କହୁଛି ଅଭିଜ୍ଞତାରୁ । ମୁଁ ତତ୍‌କାଳର ମୋର ତିନିଜଣ ପ୍ରତିଷ୍ଠିତ ପ୍ରଫେସରଙ୍କୁ ମାର୍ଗ ଦର୍ଶକ ହେବାକୁ ଅନୁରୋଧ କରିଛି-ଦୁଇଜଣ ସଫାସଫା ମନାକେରିଦେଲ-ତୃତୀୟ ଜଣକ ମୋର ନିଷ୍ଠା ପରୀକ୍ଷା ପାଇଁ ପ୍ରାୟ ୨୧ଥର ଦଉଡ଼ାଇଲେ । ଏ ସବୁ ଘଟଣା ବାସୁର ଗୋଚରରେ ହେଉଥାଏ । ସେ ପିଏଚ୍.ଡ଼ି ପାଇବା ପରେ ମୁଁ ତାକୁ ଅଭିନନ୍ଦନ ଜଣାଇବା ସଂଗେସଂଗେ ଏଥର ମୋର 'ମାର୍ଗଦର୍ଶକ'ର ଅଭାବ ମେଣ୍ଟିଗଲା ବୋଲି କହିଲି । ଠିକ୍ ସେ ପିଏଚ୍.ଡ଼ି. ପାଇବାର ବର୍ଷକ ପରେ ମୋତେ ତାର ପ୍ରଥମ 'ସ୍କଲାର' ଭାବରେ ଗ୍ରହଣ କରିବାକୁ ସମ୍ମତି ଜଣାଇ-ନିର୍ଦ୍ଦିଷ୍ଟ ଦିନ ଓ ତାରିଖରେ ବାଣୀବିହାର ବସାରେ ପହଂଚିବାକୁ ପରାମର୍ଶ ଦେଲା । ୭୪ ମସିହାରେ ମୁଁ ଫକୀରମୋହନଙ୍କ ସାହିତ୍ୟରେ ଗବେଷଣା ଆରମ୍ଭ କଲି । ବିଧି ପୂର୍ବକ ବିଶ୍ୱବିଦ୍ୟାଳୟର ସମ୍ମତି ପତ୍ର ମଧ ପାଇଗଲି । କାମ ଚାଲିଲା । ୧୯୭୯ ମସିହାରେ ଗବେଷଣା ନିବଂଧ ପ୍ରସ୍ତୁତ କରୁଛି- ହଠାତ୍

ବିଶ୍ୱବିଦ୍ୟାଳୟର କଣ୍ଟ୍ରୋଲରଙ୍କ ପାଖରୁ ଗୋଟିଏ ପରୱାନା ପାଇଲେ-ମୋ 'ଥେସିସ୍' ସଂପର୍କରେ । ଚିଠିଟିର ବିଷୟବସ୍ତୁ ଥିଲା ''ଯେହେତୁ ମୁଁ ରେଜିଷ୍ଟ୍ରେସନ କରିଥିବା ବିଷୟବସ୍ତୁ ଉପରେ (ଫକୀରମୋହନଙ୍କ ସାହିତ୍ୟରେ ସମକାଳୀନ ଓଡ଼ିଶା ଚିତ୍ର) ଆଗରୁ ଜଣେ ଗବେଷକ (ପ୍ର.ଅସିତ କବି ତାଙ୍କ ବିଷୟବସ୍ତୁ ଫକୀରମୋହନଙ୍କ ସାହିତ୍ୟରେ ପ୍ରତିଫଳିତ ସମାଜଚିତ୍ର) ନାମ ରେଜେଷ୍ଟ୍ରି କରାଇଥିବାରୁ ମୋର ଥେସିସ୍‌ରୁ ବିଷୟବସ୍ତୁ ବଦଳାଇବାକୁ ପଡ଼ିବ । ଚିଠିରେ ନିର୍ଦ୍ଦେଶ ଥିଲା-"You can submit your thesis excluding socio economic aspects of Fakirmohan's Literature."

ମୋ ମୁଣ୍ଡରେ ବଜ୍ର ପଡ଼ିଲା ପରି ମନେହେଲା । ଏତେ ପରିଶ୍ରମ ଶେଷକୁ ପାଣିରେ ମିଳାଇଯିବ ? socio economic aspects କୁ ଛାଡ଼ିଦେଲେ ଫକୀରମୋହନଙ୍କ ସାହିତ୍ୟର ମୂଳପୁଂଜି ଆଉ ରହିବ କ'ଣ ? ଏଇ ଚିନ୍ତାରେ ମୁଁ ଭାଗିଂପଡ଼ିଲି । ବାସୁ, ସିଣ୍ଡିକେଟର ଏ ପ୍ରକାର ନିଷ୍ପତ୍ତିରେ ହତଚକିତ ହୋଇପଡ଼ିଲା-ବିଶ୍ୱସ୍ତ ସୂତ୍ରରୁ ବୁଝିଲା-ବାଣଟି ମୋତେ ଲକ୍ଷ୍ୟକରି ମରାଯାଇଥିଲେ ମଧ-ଏହା ବାସ୍ତବରେ 'ତାରି' ପାଇଁ ଉଦ୍ଦିଷ୍ଟ ଥିଲା । ତା'ର ପ୍ରତିପକ୍ଷ-ତା'ର ସୁଖ୍ୟାତି ଓ ଗୌରବକୁ ସହ୍ୟ କରିନପାରି ଆଗାମି ''ପ୍ରଫେସର'' ପାଇଁ ପ୍ରତିଯୋଗିତା ପୂର୍ବରୁ ଏଇ ଚକ୍ରାନ୍ତର ବୁ ୍ୟହ ରଚନା କରିଥିଲେ । ମୁଁ ଏକଥା ଜାଣିବା ପରେ ଭାଂଗି ନପଡ଼ି ଅଧିକ ଦମ୍ଭ ଓ ସାହସରେ ସଂକଟର ସମ୍ମୁଖୀନ ହେଲି । କର୍ତ୍ତୃପକ୍ଷଙ୍କ ସହିତ ପତ୍ରାଳାପ ଚାଲିଲା ଛ'ମାସ ପର୍ଯ୍ୟନ୍ତ । କର୍ତ୍ତୃପକ୍ଷଙ୍କୁ ଜଣାଇ ଦିଆଗଲା-''ତାଙ୍କ ଯୁକ୍ତିର ଅସାରଣ । ଦୁଇଟି ଥେସିସ୍‌ର (i) କଥାବସ୍ତୁ ଆଦୌ ଏକ ନୁହେଁ ବରଂ ଏହା ପୂର୍ବରୁ (ii)''ନାଥ ସାହିତ୍ୟ'' ସାରଳା ସାହିତ୍ୟ, ଏବଂ 'ଉଦ୍‌ଭଟ ନାଟ୍ୟ ପରଂପରା' ଉପରେ ସମାନ ଶୀର୍ଷକରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଦେଇସାରିଛି । ଏବଂ ସବୁଠୁ ଆଶ୍ଚର୍ଯ୍ୟ କଥା-ସେମାନେ ମୋତେ ସମ୍ମତି ପତ୍ର ଦେବା ପୂର୍ବରୁ (Permission for Ph.D. Regn) ଏକଥା ତଦାରଖ ନକଲେ କାହିଁକି ?

ନିବେଦନ ସବୁ ନିଷ୍ଫଳ ହେଲା ବାଧ ହୋଇ ମୁଁ ହାଇକୋର୍ଟର ଦ୍ୱାରସ୍ଥ ହେଲି । (ଏଇ ମୁହୂର୍ତ୍ତରେ ମୋର ସ୍ମରଣରେ ଆସୁଛନ୍ତି ସଂପ୍ରତି ଓଡ଼ିଶା ହାଇକୋର୍ଟର ବରିଷ୍ଠ ନ୍ୟାୟମୂର୍ତ୍ତି ମାନ୍ୟବର ଶ୍ରୀଯୁକ୍ତ ପ୍ରଦ୍ୟୁମ୍ନ କୁମାର ମହାନ୍ତିଙ୍କ କଥା-ସେ ସେତେବେଳେ ସିଣ୍ଡିକେଟ ମେମ୍ବର ଥାଆନ୍ତି-ଏବଂ ଏଇ ଘଟଣାରେ ସେ ଏକା ମୋ ଆବେଦନର ଯଥାର୍ଥତା ଉପରେ ଗୁରୁତ୍ୱ ଦେଇଥିଲେ) ।

ମୋର ଓ ବାସୁର ପରମ ଶୁଭେଚ୍ଛୁ ଓଡ଼ିଶାର ପ୍ରଖ୍ୟାତ ଆଡ଼ଭୋକେଟ ତଥା ସୁସାହିତ୍ୟିକ ଗଂଗାଧର ରଥ ଓ ତାଙ୍କ ପୁତ୍ର ଆଡ଼ଭୋକେଟ ରଜତକୁମାର ରଥଙ୍କୁ ହାଇକୋର୍ଟରେ ରିଟ୍ ପିଟିସନ୍ ଦାଖଲ କରିବାକୁ ଅନୁରୋଧ କଲୁ- ସେ ସମ୍ମତି ଦେଲେ , ଏବଂ ମୋର ନାର୍ଯ୍ୟଦାବି ମୁଁ ତାଙ୍କରି ଯୋଗୁ ପାଇପାରିଲି ।

ମାତ୍ର ୩ ମାସ ବ୍ୟବଧାନରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମୋତେ ଚିଠି ଲେଖି ଜଣାଇଦେଲେ- "You can submit your thesis without any change". ୧୯୮୦ ମସିହା ନଭେମ୍ବର ମାସରେ ମୁଁ ପିଏଚ୍.ଡ଼ି ପାଇଲି । ଚକ୍ରାନ୍ତର ସୂତ୍ରଧରଙ୍କୁ ଡଃ ଅସିତ ବାବୁ ଚିହ୍ନିପାରିଥିଲେ । ତେଣୁ ରାୟ ପ୍ରକାଶ ପରେ ଆମ ସହିତ ତାଙ୍କର ବଂଧୁତା ଅଧିକ ଘନିଷ୍ଠ ହେଲା ।

ଏ ସମସ୍ତ ଘଟଣା-ଚାକିରି ଜୀବନର ଗୋଟିଏ ଗୋଟିଏ ନମୂନା । ଏହାକୁ ବାଦ୍ ଦେଲେ ବ୍ୟକ୍ତିଗତ- ସଂପର୍କ ପ୍ରସଙ୍ଗରେ ଦି'ପଦ କହୁଛି । ବାସୁର ବାପା ଓ ମା- ମୋର ବାପା ଓ ମା' ପରି ମୋତେ ସ୍ନେହ କରୁଥିଲେ । ନାନୀ-ତା ନିଜ ଭାଇ ପରି ମୋତେ ସ୍ନେହ ଆଦର କରୁଥିଲା । ସନ୍ତୋଷ ଓ ସୌଭାଗ୍ୟ ପ୍ରଭୃତି ବାସୁ ଓ ମୋ' ଭିତରେ ଭିନ୍ନତା ଦେଖୁ ନଥିଲେ । ଜିତା-ଈଶୁ-ଟିଂକିଙ୍କର ମୁଁ 'କଟକ ବଡ଼ବାପା' । ''ସତ୍ୟ''ର ବଡ଼ଭାଇ । ମନେପଡୁଛି, ଥେସିସ୍ ପ୍ରସ୍ତୁତ କରୁଥିଲାବେଳେ-ମୁଁ ତାଙ୍କରି ବସା ପାଖରେ ରହୁଥାଏ- ଦିନେ ଲେଖାଲେଖିରେ ବ୍ୟସ୍ତରହି-ଠିକ୍ ସମୟରେ ଖାଇବାକୁ ଯାଇପାରି ନଥିଲି । ବର୍ଷା ହେଉଥାଏ-ଛତାଟିଏ ହାତରେ ଧରି ଅନ୍ୟ ହାତରେ ଟିଫିନ୍ କ୍ୟାରିଅରରେ ବାସୁର ସ୍ତ୍ରୀ ସତ୍ୟ ମୋ ପାଇଁ ମଧ୍ୟାହ୍ନଭୋଜନ ନେଇ ପଂହଚିଗଲା । ମୁଁ ହତବମ୍ଭ ହୋଇ ପଡ଼ିଲି । ନିଜ ମା' ପେଟର ଭଉଣୀ ଏପରି ସେବା କରିବ ନାହିଁ । ଭଗବାନ କେଉଁ କାରଣରୁ ତାକୁ ଏତେ ଶାସ୍ତିଦେଲେ ? ବୁଝି ହୁଏ ନାହିଁ । ବାହାଘର ବେଳେ ଆଶା ମା'ଙ୍କ ସାଙ୍ଗରେ ମୋ ସ୍ତ୍ରୀ ତାଙ୍କ ଗାଁକୁ ଯାଇ (ଓଡ଼ଗାଁ ଓ ରଂଗଣୀ ପାଟଣା) ଥିଲା- ସେଇଦିନଠୁ-ସେମାନେ ଦୁଇ ଭଉଣୀ ପରି ଚଳନ୍ତି ।

ଶେଷରେ ଏତିକି ଇଚ୍ଛା କରିଥିଲି-ବାସୁ ଜ୍ଞାନ ଓ ଗରିମାରେ ପଦ ଓ ପଦବୀରେ, ନିଷ୍ଠା ଓ ସାଧନାରେ, ସୃଷ୍ଟି ଓ ସର୍ଜନାରେ, ଅନ୍ୱେଷା ଓ ଅନ୍ୱେଷଣରେ ଚିନ୍ତା ଓ ଚେତନାରେ ମୋଠାରୁ ବରିଷ୍ଠ ହେଲେ ମଧ ମୁଁ ଆଗ ଜନ୍ମ ହୋଇଥିବା ଯୋଗୁ ତାର ''ବଡ଼ଭାଇ'' ଦାବିରେ, ମୋର ମୃତ୍ୟୁ ପରେ ତା'ଠୁଁ ସ୍ମୃତିଅର୍ଘ୍ୟ ପାଇଥାନ୍ତି, ମାତ୍ର ବିଧିର ବିଧାନ ଅନ୍ୟପ୍ରକାର-ମୁଁ ଆଜି ତା' ପାଇଁ ମୋର ଅଶ୍ରୁ ନୈବେଦ୍ୟ ଅର୍ପଣ କରୁଛି ।

ସେ ଥିଲା-ଆଦର୍ଶ ପୁତ୍ର, ଆଦର୍ଶ ଭ୍ରାତା, ଆଦର୍ଶ ସ୍ୱାମୀ, ଆଦର୍ଶ ପିତା, ଆଦର୍ଶ ମାମୁ, ଆଦର୍ଶ ଶିକ୍ଷକ, ଆଦର୍ଶ ମାର୍ଗଦର୍ଶକ ଓ ସମ୍ବେଦନଶୀଳ ଦରଦୀ ବଂଧୁଟିଏ । ପିତାମାତାଙ୍କ ପ୍ରଦତ୍ତ ନାମ ''ବାସୁଦେବ'' ଯଥାର୍ଥ ପ୍ରମାଣିତ କରିଗଲା । ଜଗତର ସକଳ ଦୁଃଖ କଷ୍ଟକୁ- ଆଂଜୁଳା ଆଂଜୁଳା ପିଇଯାଇ- ବିଞ୍ଚି ଦେଇଗଲା ଭାଷା ଓ ସାହିତ୍ୟକୁ ଅମାପ ସୁଖଶାନ୍ତି । ସତ୍ୟଶାନ୍ତି ପାଇଁ ବାସୁଦେବର ପାର୍ଥୀବ ଶରୀର ଆଉ ଦୃଶ୍ୟମାନ ହେବ ନାହିଁ । ଯାହା ହୋଇଥିଲା-ଗୋପରେ ଓ ଦ୍ୱାରକାରେ । ଏବେ ସତ୍ୟ ପାଇଁ ସକଳ ଜଗତ ''ବାସୁଦେବମୟ''

ହୋଇଗଲା । ଯାହା ହୋଇଥିଲା ଦ୍ୱାପରରେ । ଅଣୁରେ-ପରମାଣୁରେ ବାସୁଦେବ ଭାସି ବୁଲୁଛି । ତେଣୁ-

"Thinks Basudeva as Lord Jagannatha
He is in your heart,
He is in you,
you are in him."

ଅପୂର୍ବ ଏକ ଚୁମ୍ବକୀୟ ଶକ୍ତିର ଆକର୍ଷଣରେ ପୁରୀ-ସମୁଦ୍ରବେଳାରୁ ଉଜାଣି ଭାସିଭାସି ବାସୁଦେବ-ଦ୍ୱାରକା ନିକଟ ଆରବ ସାଗର କୂଳରେ ପଂହଚିଗଲା । ପ୍ରକୃତିରାଣୀ ବନ୍ଧାପନା ଖାଇଲା । ବମ୍ବେ ନଗରୀ ବାରୀଧାରାରେ ପୂର୍ଣ୍ଣ ହୋଇଗଲା । ବାସୁଦେବର ଚିତାଭସ୍ମ-ସେଇଠି ବାସୁଦେବଙ୍କ ଶରୀରରେ ମଗ୍ନ ହୋଇଗଲା । ହେ ବାସୁଦେବ, ପ୍ରଣତି ଘେନ ।



ଅକ୍ଷର,
ମଧୁସୂଦନ ନଗର, କଟକ-୮

# ବାସୁଭାଇ ତୁମେ...

ରତ୍ନାକର ଚଇନି

ସ୍ମୃତିର ସମୁଦ୍ର ପହଁରି ପହଁରି ମନ କାହିଁ କେତେ ଦୂରକୁ ପଳେଇଯାଏ । ଖୋଜି ହୁଏ-ସେଇ ସରଳ, ନିଷ୍ପାପ ଏବଂ ଏକାନ୍ତ ଆପଣାର କରିପାରୁଥିବା ବ୍ୟକ୍ତି-ମଣିଷଟିକୁ । ଦୁନିଆଟାକୁ ନିଜର କରିସାରି ତଥାପି ତାଙ୍କ ପାଖରେ ଆପଣା-ପଣ ବଳିପଡ଼େ । ବଡ଼ବଡ଼ ନିରୀହ ଆଖିରେ ଢଳଢଳ ଚାହାଣୀ । ସତେ ଯେମିତି ସେ ନିସର୍ଗ ପ୍ରତିଶ୍ରୁତିଟିଏ । 'ମତେ ଯେତେବେଳେ କହିବ, ମୁଁ ସାହାଯ୍ୟ କରିବାକୁ ପ୍ରସ୍ତୁତ ।' ମୋର ସୀମା ପ୍ରଫେସର, ଓଡ଼ିଆ ବିଭାଗ, ବାଣୀବିହାର । ଡଃ ବାସୁଦେବ ସାହୁ ।

ବଡ଼ଭାଇ ବୋଲି ମୁଁ ଡାକେ ।

ମୋ ସ୍ତ୍ରୀଙ୍କୁ ସେ 'ବୋହୂ-ମା' ବୋଲି ଡାକନ୍ତି । ମୋ ଘରେ ସେ ଭାରି ସ୍ୱଚ୍ଛ ହୋଇପଡ଼ନ୍ତି । (ବୋଧହୁଏ ଏତେବଡ଼ ଦୁନିଆଟାକୁ ଆପଣାର କରିଥିବାରୁ ସେ ସବୁଠି ସ୍ୱଚ୍ଛ ।) ଅଥଚ କଥା କହିଲା ବେଳେ, ବ୍ୟକ୍ତିଗତ ଆଲୋଚନା କଲାବେଳେ ତାଙ୍କର ଉପସ୍ଥାପନା ଢଙ୍ଗ ଗୋପନୀୟତା ରକ୍ଷା କରିବା ପାଇଁ ପ୍ରେରଣା ଦିଏ ।

ଜୀବନର ସବୁଠୁଁ ଓଜନିଆ ସମୟତକ ସେ ଅଧ୍ୟାପନା ବୃତ୍ତିରେ ବିତେଇଲେ । ସେ କ୍ଷେତ୍ରରେ ସେ ବେଶ୍ ନିଷ୍ଠାବାନ୍ ହେବାକୁ ପ୍ରୟାସ କରିଛନ୍ତି; ଏବଂ ଅନେକ ପରିମାଣରେ ସେ ସଫଳ ହୋଇଛନ୍ତି । ଅଧ୍ୟାପନା କର୍ମ ସହିତ ଅଧ୍ୟୟନର ସଂପର୍କ ନିବିଡ଼ । ଅଧ୍ୟୟନ କରିବାବେଳେ ସେ ଯେଉଁ ଦିଗଟିକୁ ଅନାଲୋକିତ ମନେକରିଛନ୍ତି, ତାହା ଉପରେ ଆଲୋକପାତ କରିବା ପାଇଁ ସେ ଗ୍ରନ୍ଥ ରଚନାରେ ବ୍ରତୀ ହୋଇଛନ୍ତି ।

'ଓଡ଼ିଆ ଭାଷା' ତାଙ୍କ ଆଲୋଚନାର ପରିସରକୁ ଅଧିକ ଦୀପ୍ତିମାନ କରିଛି । ଏହାକୁ ଯଥାସମ୍ଭବ ବୈଜ୍ଞାନିକ ରୀତିରେ ଉପସ୍ଥାପନ କରିବାକୁ ସେ ଚେଷ୍ଟା କରିଛନ୍ତି । ଏହା ବ୍ୟତୀତ ଡଃ ସାହୁ ଭାରି ଈଶ୍ୱରବିଶ୍ୱାସୀ । ତାଙ୍କ ଚେତନାର ସରହଦରେ ଶ୍ରୀଜଗନ୍ନାଥ ବଳିଷ୍ଠ ଆସନ ପାତି ରହିଥିଲେ । ତେଣୁ ସେ ଜଗନ୍ନାଥ ଧର୍ମ-ଦର୍ଶନକୁ ଭିତ୍ତି କରି କେତେକ ପୁସ୍ତକ ରଚନା କରିଯାଇଛନ୍ତି । ଜଗନ୍ନାଥ ଧର୍ମକୁ ସେ ଓଡ଼ିଆ ଭାଷା 'ସାହିତ୍ୟର ସ୍ୱତନ୍ତ୍ର ଅଧ୍ୟୟନ ପତ୍ର ରୂପେ ପ୍ରଚଳନ କରି ସଫଳ ହୋଇଥିଲେ ।

ବାସୁଭାଇଙ୍କ ଅବର୍ତ୍ତମାନରେ ତାଙ୍କ ସ୍ମୃତି ଏବେ ଖୁବ୍ ଜୀବନ୍ତ ହୋଇଉଠୁଚି । ସେ ଅନେକ ଛାତ୍ର-ଛାତ୍ରୀ ତିଆରି କରି ଯାଇଛନ୍ତି; ଅନେକଙ୍କୁ ଅଯାଚିତ ଭାବେ ସାହାଯ୍ୟ କରିଛନ୍ତି । ବିଶେଷକରି ଛାତ୍ରସମାଜକୁ ତାଙ୍କର ଅବଦାନ ଅତୁଳନୀୟ । ଯେକୌଣସି ପରିସ୍ଥିତିରେ ସାହାଯ୍ୟ କରିବାକୁ ସେ ଆଗଭର ହୋଇ ଆସୁଥିଲେ ମାତ୍ର କେଉଁବ୍ୟକ୍ତି ତାଙ୍କ ବ୍ୟକ୍ତିତ୍ୱକ କିପରି ମାପୁଥିଲା, ତାହା ଆକଳନ କରିବାକୁ ସେ ଅପେକ୍ଷା କରୁନଥିଲେ । ସତ କହିବାକୁ ଗଲେ, ସେ ସ୍ନେହ-ପ୍ରେମର ଏକ ମୂର୍ତ୍ତିମାନ ବିଗ୍ରହ ।

ସାରା ଜୀବନ ନିଷ୍ଠାପର ଭାବେ ସେ ସାହିତ୍ୟ ସାଧନା କରିଥିଲେ । ନିଜ ବିଦ୍ୱତ୍ତା ଓ ପାଣ୍ଡିତ୍ୟକୁ କାଳି-କାଗଜରେ ସେ ଲିପିବଦ୍ଧ କରିଗଲେ । ତାଙ୍କ ତିରୋଧାନ ଦିବସ ଗୋଟାଏ ବର୍ଷ ତଳର କଥା । ଏବେ ବି ମନେ ହେଉଚି, ସେ ବଂଚି ରହିଛନ୍ତି; ସାହିତ୍ୟ-ସାଧନା କରୁଛନ୍ତି;ସଭା-ସମିତିରେ ନିଜର ସୀମିତ ବକ୍ତବ୍ୟ ଉପସ୍ଥାପନ କରୁଛନ୍ତି । ତାଙ୍କର ଜାତି ପାଇଁ ଯେଉଁ କର୍ତ୍ତବ୍ୟ ସେ କରିଚାଲିଛନ୍ତି । କିନ୍ତୁ ଆମେ-ଆମେ ତାଙ୍କ ପାଇଁ ଯେଉଁ କର୍ତ୍ତବ୍ୟ ତାହା କରୁଚେ କି ?



# ଗୁରୁ ସ୍ମରଣେ

ଡଃ କୁମୁଦିନୀ ମିଶ୍ର

ଖ୍ରୀ: ୧୯୬୯ ରେ ଉତ୍କଳ ବିଶ୍ୱବିଦ୍ୟାଳୟ-ବାଣୀବିହାରରେ ଓଡ଼ିଆରେ ଏମ୍.ଏ. ଖୋଲିଲା । ସ୍ନାତକୋତ୍ତର ଓଡ଼ିଆ ବିଭାଗର ପଞ୍ଚମ ବାର୍ଷିକ ଛାତ୍ରଛାତ୍ରୀ ଭାବେ ଆମେ ଷୋଳଜଣ ନାମ ଲେଖାଇଲୁ । ପଢ଼ାଇବା ପାଇଁ ପ୍ରାଧ୍ୟାପକ ତଥା ବିଭାଗ ମୁଖ୍ୟ ରୂପେ ଡଃ ବଂଶୀଧର ମହାନ୍ତି ଏବଂ ଅଧ୍ୟାପକ ରୂପେ ଡଃ ନିତ୍ୟାନନ୍ଦ ଶତପଥୀ ଓ ଡଃ ବାସୁଦେବ ସାହୁ ଯୋଗ ଦେଲେ ।

ଆମର ତିନିଜଣ ସାର୍‌ଙ୍କ ପଢ଼ାଇବା ପ୍ରଣାଳୀ ତିନିପ୍ରକାରର ଥିଲା । ବଂଶୀ ସାର୍ ଥିଲେ ଖୁବ୍ ଜ୍ଞାନୀ, ପ୍ରତିଷ୍ଠିତ ଭାଷାବିତ୍, ପୋଥି ସଂଗ୍ରାହକ ଏବଂ ଅନେକ ପୁସ୍ତକର ରଚୟିତା, କିନ୍ତୁ ତାଙ୍କ ପଢ଼ାଇବା ଶୈଳୀ ଥିଲା ବେଶ୍ ମାନ୍ଦା । ସେ କମ୍ ସ୍ୱରରେ କଥା କହନ୍ତି, ଅଳ୍ପ କହନ୍ତି; ହେଲେ ତା'ରି ଭିତରେ କେତେକ ଉଚ୍ଚମାନର ସହାୟକ ପୁସ୍ତକର ସୂଚନା ଦିଅନ୍ତି, ତାହା ପଢ଼ି ଆମେ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉ । ନିତ୍ୟାନନ୍ଦ ସାର୍‌ଙ୍କ ପଢ଼ାଇବା ଶୈଳୀ ଚମତ୍କାର । ତାଙ୍କର ପ୍ରଭାବଶାଳୀ ବାକ୍‌ଭଂଗୀ, ବାକ୍ୟାବଳିରେ ନୂତନ ନୂତନ ଶବ୍ଦ ପ୍ରୟୋଗର ଦକ୍ଷତା ଏବଂ କୌଣସି ବିଷୟ ପଢ଼ାଇବା ସମୟରେ ତୁଳନାତ୍ମକ ଭାବେ ବଙ୍ଗଳା ଓ ଇଂରାଜୀ ସାହିତ୍ୟର ଉଦ୍ଧୃତ ଆମକୁ ଶ୍ରେଣୀକକ୍ଷରେ ବଶୀଭୂତ କରି ରଖୁଥିଲା । ସେ ଆମକୁ କେବେ ନୋଟ୍ ଡାକୁ ନଥିଲେ, କିନ୍ତୁ ଆମେ ତାଙ୍କ ଆଲୋଚନାକୁ ଆମ ନୋଟ୍ ଖାତାରେ ବାନ୍ଧି ରଖିବାକୁ ସଯତ୍ନ ପ୍ରୟାସ କରୁଥିଲୁ । ପଢ଼ାଇବା ସମୟରେ ସେ ଆମକୁ ଗୋଟିଏ ବିଷୟରୁ ଅନ୍ୟ ବହୁ ବିଷୟ ଆଡ଼କୁ ଟାଣି ନେଉଥିଲେ ।

ନିତ୍ୟାନନ୍ଦ ସାର୍‌ଙ୍କ ପଢ଼ାଇବା ପଦ୍ଧତି ରମ୍ୟରଚନା ପରି ଥିବାବେଳେ ବାସୁ ସାର୍‌ଙ୍କ ପଢ଼ାଇବା ପଦ୍ଧତି ଥିଲା ତତ୍ତ୍ୱନିଷ୍ଠ ପ୍ରବନ୍ଧ ପରି । ତାଙ୍କର ମାର୍ଜିତ ତତ୍ସମ ବହୁଳ ଭାଷା, ସର୍ବୋପରି ଗୁରୁଜନୋଚିତ ଉପଦେଶାବଳି ଆମର ଜ୍ଞାନଚକ୍ଷୁକୁ ଉନ୍ମୋଚିତ କରିଦେଉଥିଲା । ସେ ଶ୍ରେଣୀଗୃହକୁ ପ୍ରବେଶ କରୁଥିଲେ ଆଠ/ଦଶଗୋଟି ପୁସ୍ତକ ଓ ଗୋଟିଏ ଦୁଇଟି ନୋଟ୍ ଖାତା ସହ । ରୀତିଯୁଗୀୟ କାବ୍ୟ-କବିତା ହେଉ ବା ଲୋକ ସାହିତ୍ୟ ହେଉ, ପାଲି-ପ୍ରାକୃତ ଭାଷାର ସାହିତ୍ୟ ହେଉ ବା ଭାଷାତତ୍ତ୍ୱ ଓ ବ୍ୟାକରଣ ହେଉ, ସେ ଯେଉଁ ବିଷୟ ପଢାଉଥିଲେ

ତାହାକୁ ପୁଙ୍ଖାନୁପୁଙ୍ଖଭାବେ ଅନୁଧାନ କରି, ସେହି ବିଷୟରେ ବିଭିନ୍ନ ପତ୍ର-ପତ୍ରିକା ବା ସମୀକ୍ଷା ପୁସ୍ତକରେ ଯାହା ସବୁ ଆଲୋଚିତ ହୋଇଛି ତାକୁ ସଂଗ୍ରହ କରି ଶ୍ରେଣୀ କକ୍ଷକୁ ଆସନ୍ତି । ବିଭିନ୍ନ ପୁସ୍ତକ ଓ ନୋଟ୍ ଖାତା ତାଙ୍କ ଟେବୁଲ୍‌ରେ ଖୋଲା ହୋଇ ରହେ ତା'ପରେ ସେ ଅବିଶ୍ରାନ୍ତ ପାଠ୍ୟ ବିଷୟ ଉପରେ ଆଲୋଚନା କରି ନୋଟ୍ ଡାକି ଚାଲନ୍ତି ଏବଂ ଆମେ ଲେଖିଚାଲୁ । ହଲଚଲ୍ ହେବାର ଉପାୟ ନାହିଁ । ପୂର୍ବରୁ ଆମକୁ ନିର୍ଦ୍ଦେଶ ଥାଏ, ପ୍ରତ୍ୟେକ ବିଷୟ ପାଇଁ ସ୍ୱତନ୍ତ୍ର ନୋଟ୍ ଖାତା କରିବା ପାଇଁ । ମହୁମାଛି ବିଭିନ୍ନ ପୁଷ୍ପରୁ ମଧୁ ସଂଗ୍ରହ କରି ମଧୁକୋଷକୁ ପରିପୂର୍ଣ୍ଣ କରିବା ପରି ବାସୁ ସାର୍‌ଙ୍କ ନୋଟ୍ ବିଭିନ୍ନ ସମୀକ୍ଷା ପୁସ୍ତକରେ ଆଲୋଚିତ ବିଷୟର ସାର ନିର୍ଯ୍ୟାସରେ ପୂରି ରହିଥାଏ । ପରୀକ୍ଷା ସମୟରେ ସେ ନୋଟ୍ ପଢ଼ିଲେ ଅନ୍ୟ କୌଣସି ଆଲୋଚନା ଗ୍ରନ୍ଥ ପଢ଼ିବାର ଆବଶ୍ୟକତା ନଥାଏ ।

ଷୋଳଜଣ ଛାତ୍ରଛାତ୍ରୀଙ୍କ ମଧ୍ୟରୁ ଆମ ଶ୍ରେଣୀରେ ଆମେ ପାଞ୍ଚ-ଛଅଜଣ ବିବାହିତ ଥିଲୁ । ଘର ସଂସାର ତଥା ଛୋଟ ଛୁଆଙ୍କ ଦାୟିତ୍ୱ ନେଇ ବସ୍‌ରେ ବାଣୀବିହାରକୁ ଯିବା ଆସିବା କରି ପଢ଼ିବା ବେଳେ ବାସୁ ସାର୍‌ଙ୍କ ନୋଟ୍ ଆମକୁ ବହୁଭାବେ ଅନୁଗୃହୀତ କରିଥିଲା ।

ରୀତିଯୁଗୀୟ କାବ୍ୟ ପଢ଼ାଇବା ସମୟରେ ସେଥିରେ ପ୍ରତ୍ୟେକ ଶବ୍ଦ ଓ ପ୍ରତ୍ୟେକ ଅଲଙ୍କାରର ପ୍ରୟୋଗ ସଂପର୍କରେ ବାସୁ ସାର୍ ଯେଭଳି ପ୍ରାଞ୍ଜଳ ଭାବେ ବୁଝାଇ ଦେଉଥିଲେ ତାହା ଆଉ ଜୀବନକାଳରେ ଭୁଲିବାର ନୁହେଁ, ତାଙ୍କ କାବ୍ୟ-ପଠନର ଉଚ୍ଛ୍ୱାସକୁ ଦେଖିଲେ ମନେହେଉଥିଲା ସେ ସତେ ଯେପରି ଗୌରୀ କୁମାର ବ୍ରହ୍ମାଙ୍କ ଉପଯୁକ୍ତ ଦାୟାଦ ।

ଭାଷାତତ୍ତ୍ୱ ବିଭିନ୍ନ ରୂପରେଖକୁ ତନ୍ନତନ୍ନ କରି ବିଶ୍ଳେଷଣ କରି ବୁଝାଇଦେବାରେ ବାସୁ ସାର୍‌ଙ୍କ ଦକ୍ଷତା ଦେଖି ଆମେ ବିସ୍ମିତ ହେଉଥିଲୁ, ତାଙ୍କ ରଚିତ ''ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ', ''ଭାଷା ବିଜ୍ଞାନର ରୂପରେଖ'', ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା'', ଭାଷା ବିଜ୍ଞାନ ଓ ଭାଷାବିଜ୍ଞାନୀ'' ଏବଂ ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ'', ଗ୍ରନ୍ଥଗୁଡ଼ିକରୁ ତାଙ୍କ ଭାଷାବିଜ୍ଞାନର ଗଭୀରତା ମାପି ହୁଏ । ''ଓଡ଼ିଆ ଭାଷା ଉପରେ ବୈଦେଶିକ ଭାଷାର ପ୍ରଭାବ'' ଶୀର୍ଷକ ସନ୍ଦର୍ଭ ଲେଖି ସେ ପିଏଚ୍.ଡ଼ି (Ph.D) ଉପାଧି ଲାଭ କରିଥିଲେ ।

ଜଗନ୍ନାଥ ସଂସ୍କୃତିକୁ ଚିହ୍ନି ଚିହ୍ନାଇ ଦେବାରେ ବାସୁ ସାର୍ ଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ବେଣୀମାଧବ ପାଢ଼ୀ ଏବଂ ଡକ୍ଟର ହରେକୃଷ୍ଣ ମହତାବଙ୍କର ଉପଯୁକ୍ତ ଦାୟାଦ । ''ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା'' ଶୀର୍ଷକ ସନ୍ଦର୍ଭ ପାଇଁ ସେ ଡି.ଲିଟ୍ (D.Litt) ଉପାଧିର ଅଧିକାରୀ ହୋଇଥିଲେ । ''ଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ'' ଗ୍ରନ୍ଥରେ ସେ ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ତତ୍ତ୍ୱ ଓ ଜଗନ୍ନାଥ ଦର୍ଶନର ପ୍ରଭାବ ଯେଭଳି ଭାବେ ଉପସ୍ଥାପନ କରିଛନ୍ତି ସେଥିରୁ ତାଙ୍କ ବହୁଶାସ୍ତ୍ରଦର୍ଶୀ ବିଦଗ୍ଧ ମାନସିକତାର ପରିଚୟ ମିଳେ । ତାଙ୍କର ଗବେଷଣା କାର୍ଯ୍ୟ କେବଳ ସ୍ୱପ୍ରସ୍ତୁତ ସନ୍ଦର୍ଭରେ ସୀମିତ ନଥିଲା । ତାଙ୍କ ନିର୍ଦ୍ଦେଶନା

ତଥା ତତ୍ତ୍ୱାବଧାନରେ ଅର୍ଦ୍ଧଶତୋତ୍ତର ଗବେଷକ ଓଡ଼ିଆ ଭାଷା ଓ ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ଗବେଷଣା କରି ପିଏଚ୍.ଡ଼ି ଓ ଡି.ଲିଟ୍ ଉପାଧି ଲାଭ କରିଛନ୍ତି ।

ଜଣେ ଆଦର୍ଶ ଶିକ୍ଷକ ଓ ଜଣେ ଗବେଷକ ଭାବେ ବାସୁ ସାର୍ ଯେତିକି ପ୍ରତିଷ୍ଠା ଅର୍ଜନ କରିଥିଲେ ଜଣେ କର୍ମନିଷ୍ଠ, ବିନମ୍ର, ଶ୍ରଦ୍ଧାଳୁ, ସ୍ନେହୀ ମଣିଷ ଭାବରେ ତଦୁପରି ସମସ୍ତଙ୍କ ପ୍ରିୟଭାଜନ ହୋଇପାରିଥିଲେ । ଓଡ଼ିଆ ବିଭାଗରେ ଏକ ପାରିବାରିକ ସଂପର୍କ ରକ୍ଷା ଦିଗରେ ସେ ସତତ ପ୍ରୟାସୀ ଥିଲେ । ବଂଶୀ ସାର୍‌ଙ୍କୁ ସେ ପିତୃତୁଲ୍ୟ ଭକ୍ତି କରୁଥିଲେ ଏବଂ ତାଙ୍କ ସ୍ତ୍ରୀଙ୍କୁ ମା' ବୋଲି ସମ୍ବୋଧନ କରୁଥିଲେ । ନିତ୍ୟାନନ୍ଦ ସାର୍ ଓ ପ୍ରତିଭା ମାଡ଼ାମ୍‌ଙ୍କୁ ଭାଇନା, ଭାଉଜ ଡାକୁଥିଲେ । ଆମେ ସବୁ ଛାତ୍ରଛାତ୍ରୀ ଥିଲୁ ତାଙ୍କର ଅତି ଆଦରର ସାନ ଭାଇ ଭଉଣୀ ଏବଂ ତାଙ୍କ ସ୍ତ୍ରୀ ଆମର ସ୍ନେହମୟୀ ଭାଉଜ ।

ପାଠ ପଢ଼ାଇବା ବ୍ୟତୀତ ଓଡ଼ିଆ ବିଭାଗର ଅନ୍ୟ ସମସ୍ତ କର୍ତ୍ତ ମଧ୍ୟ ସେ ଆଗ୍ରହର ସହ ସଂପାଦନ କରୁଥିଲେ । ପାଠଚକ୍ରର ପରାମର୍ଶଦାତା ରୂପେ ପାଠଚକ୍ରମାନ ଆୟୋଜନ କରାଇବାରେ ଏବଂ ସେଥିରେ ପ୍ରବନ୍ଧ ପାଠ ପାଇଁ ଛାତ୍ରଛାତ୍ରୀଙ୍କୁ ନିର୍ଦ୍ଦେଶନା ଦେବାରେ ସେ କେବେ ବି କୁଣ୍ଠାବୋଧ କରୁନଥିଲେ । ପୁଣି ଛାତ୍ରଛାତ୍ରୀଙ୍କୁ ନେଇ ଶିକ୍ଷାପ୍ରଦ ସ୍ଥାନକୁ ପରିଭ୍ରମଣରେ ଯିବା ଏବଂ ବଣଭୋଜିମାନ ଆୟୋଜନ କରିବା ଦାୟିତ୍ୱ ମଧ୍ୟ ତାଙ୍କରି ଉପରେ ନ୍ୟସ୍ତ ଥାଏ ।

ବାସୁ ସାର୍‌ଙ୍କ ଛାତ୍ରବତ୍ସଳତା ସଂପର୍କରେ ମୋ ଅନୁଭୂତିରୁ ଗୋଟିଏ ଉଦାହରଣ ଦେବି । ଖ୍ରୀ. ୧୯୭୧ ଜୁଲାଇ ମାସରେ ଆମେ ଏମ୍.ଏ. ପରୀକ୍ଷା ଦେବାର ଥିଲା । କିନ୍ତୁ ସେଇବର୍ଷ ପ୍ରଚଣ୍ଡ ବାତ୍ୟା ଓ ବ୍ୟାପକ ଆଖିଧରା ରୋଗ ଯୋଗୁ ରୀକ୍ଷା ଚାରିମାସ ଘୁଞ୍ଚିଗଲା । ପରୀକ୍ଷାବେଳକୁ ମୁଁ ଥାଏ ଆସନ୍ନ ପ୍ରସବା । କେଉଁ ସମୟରେ ଯେ ମୁଁ ପରୀକ୍ଷା ଦେବା ବନ୍ଦ କରିଦେବି ଠିକଣା ନଥାଏ । ପ୍ରତି ପତ୍ରରେ ପରୀକ୍ଷା ଦେବାକୁ ଯିବାବେଳେ ବାସୁ ସାର୍ ହିଁ ମୋତେ ପ୍ରେରଣା ଓ ଉତ୍ସାହ ଯୋଗାଉଥାନ୍ତି । ଯାହାହେଉ ଆଠଟିଯାକ ପତ୍ରରେ ମୁଁ କୌଣସି ମତେ ପରୀକ୍ଷା ଦେଇପାରିଲି । ପରୀକ୍ଷାଫଳ ପ୍ରକାଶ ପାଇବାବେଳକୁ ମୋ ପୁଅକୁ ଏକମାସ ହୋଇସାରିଥାଏ । ଛୋଟ ଛୋଟ ଦୁଇ ଝିଅ ଓ ପୁଅକୁ ଧରି ମୁଁ ଏକୁଟିଆ ଆଦିବାସୀ ପଡ଼ିଆ ପାଖ କ୍ୱାଟରରେ ରହୁଥାଏ । ବାଣୀବିହାର ଯାଇ ପରୀକ୍ଷା ଫଳ ଜାଣିବାର ଉପାୟ ନଥାଏ । ସଂଧ୍ୟାବେଳେ ପୁଅକୁ ତେଲ ମାଲିସ୍ କରୁଛି, ବାସୁ ସାର୍ ଟାଉନ୍‌ବସ୍‌ରୁ ଓହ୍ଲାଇ ରାଜମହଲ ଛକରୁ ଚାଲିଚାଲି ଆସି ଆମଘରେ ପହଞ୍ଚିଲେ । ମତେ ଆଶୀର୍ବାଦ କରି କହିଲେ-'ତୋ ପରିଶ୍ରମ ସାର୍ଥକ ହୋଇଛି । ତୁ ପ୍ରଥମ ଶ୍ରେଣୀରେ ପାସ୍ କରିଛୁ ।' ସେ ସମୟରେ ପ୍ରଥମ ଶ୍ରେଣୀ ପାଇବା ସହଜ ବ୍ୟାପାର ନଥିଲା । ମୁଁ ଯେଉଁ ପରିସ୍ଥିତିରେ ବସ୍‌ରେ ଯାଇ ଆସି ପରୀକ୍ଷା ଦେଇଥିଲି, ସେଥିରେ ଯେ ପ୍ରଥମ ଶ୍ରେଣୀ ପାଇପାରିଲି ତାହା ଜାଣି ମୋ ଅପେକ୍ଷା

ବାସୁସାର୍ ଅଧିକ ଆନନ୍ଦିତ ହୋଇଥିଲେ । ସେଇଦିନ ମୁଁ ଅନୁଭବ କଲି, ଛାତ୍ରଛାତ୍ରୀଙ୍କ ପ୍ରତି ତାଙ୍କ ମମତାର ଡୋରି କେତେ ଶକ୍ତ ଥିଲା ।

ତନ୍ତ୍ର ଶାସ୍ତ୍ରରେ ଉଲ୍ଲେଖ ଅଛି-

''ଗୁରୁବୋ ବହବଃସନ୍ତି ଶିଷ୍ୟ ବିତ୍ତାପ ହାରକଃ
ଦୁର୍ଲଭୋଽୟଂ ଗୁରୁଦେବ ଶିଷ୍ୟ ସନ୍ତାପ ହାରକଃ''

ଶିଷ୍ୟମାନଙ୍କ ବିତ୍ତକୁ ଅପହରଣ ନକରି ନିଃସ୍ୱାର୍ଥପର ଭାବେ ବିଦ୍ୟାଦାନ ପୂର୍ବକ ସେମାନଙ୍କ ସନ୍ତାପହାରକ ହୋଇଥିବା ମୁଷ୍ଟିମେୟ ଗୁରୁମାନଙ୍କ ମଧ୍ୟରେ ବାସୁସାର୍ ଥିଲେ ଅନ୍ୟତମ । ଶାସ୍ତ୍ରାନୁସାରେ, ଯିଏ ନିଜେ ସର୍ବଦା ବିଦ୍ୟାର ଅନୁଶୀଳନ କରୁଥିବ, ବିଦ୍ୟାଲୋଚନାରେ ବ୍ରତୀ ଥିବ ଏବଂ ବାଣୀସାଧନାରେ ନିମଜ୍ଜିତ ରହୁଥିବ, ସେଇ କେବଳ ବିଦ୍ୟାର୍ଥୀମାନଙ୍କୁ ବିଦ୍ୟାଦାନ କରିପାରିବ । ବାସୁ ସାର୍‌ଙ୍କ ଜୀବନରେ ଏହା ଅକ୍ଷରେ ଅକ୍ଷରେ ସତ୍ୟ ଥିଲା । ତେଣୁ ସେ ଯଥାର୍ଥରେ ଶାସ୍ତ୍ରୋକ୍ତ 'ଗୁରୁ' ପଦବାଚ୍ୟ ଥିଲେ । ଅସମୟରେ ତାଙ୍କ ପରି ବିଦ୍ୱାନ ଗୁରୁଙ୍କର ବିୟୋଗ ଓଡ଼ିଆ ଭାଷା ଓ ସାହିତ୍ୟର ଚର୍ଚ୍ଚା କ୍ଷେତ୍ରରେ ଏକ ବିରାଟ ଶୂନ୍ୟସ୍ଥାନ ସୃଷ୍ଟି କରିଛି । ତାଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକରେ ମୋର ଭକ୍ତିପୂତ ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।



ପ୍ଲଟ୍ ନଂ-୪୩୬
ଶହୀଦନଗର, ଭୁବନେଶ୍ୱର

# ପ୍ରଫେସର ଡଃ ବାସୁଦେବ ସାହୁ-ଏକ ଶ୍ରଦ୍ଧାଞ୍ଜଳି

ଡଃ ନୀଳକଣ୍ଠ ଷଡ଼ଙ୍ଗୀ

ପ୍ରଫେସର ବାସୁଦେବ ସାହୁ ଏକାଧାରାରେ ସୁ-ସାହିତ୍ୟିକ, ଭାଷାବିତ୍‌, ସୁବକ୍ତା, ବନ୍ଧୁସ୍ନେହି, ଛାତ୍ରବତ୍ସଳ ଓ ପ୍ରବୀଣ ଅଧ୍ୟାପକ ଥିଲେ । ଓଡ଼ିଆ ସାହିତ୍ୟ ଓ ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଡଃ ସାହୁ ଓଡ଼ିଆ ଭାଷାତତ୍ତ୍ୱ ଓ ବିଜ୍ଞାନ ଉପରେ ବହୁ ଉପାଦେୟ ପୁସ୍ତକ ରଚନା କରି ନିଜକୁ ଜଣେ ପ୍ରତିଷ୍ଠିତ ଭାଷାବିଜ୍ଞାନୀ ଭାବେ ଓଡ଼ିଶା ତଥା ଓଡ଼ିଶା ବାହାରେ ପରିଚିତ କରାଇ ପାରିଛନ୍ତି । ତାଙ୍କ ରଚିତ ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ, ଭାଷାବିଜ୍ଞାନର ରୂପରେଖ, ପୃଥିବୀର ଭାଷାଗୋଷ୍ଠୀ ଓ ଭାରତୀୟ ଆର୍ଯ୍ୟଭାଷା, ଭାଷାବିଜ୍ଞାନ ଓ ବିଜ୍ଞାନୀ ଓ ଓଡ଼ିଆ ଶବ୍ଦବ୍ୟୁତ୍ପତ୍ତି ବିଜ୍ଞାନ ପୁସ୍ତକଗୁଡ଼ିକ ଓଡ଼ିଆ ଭାଷା ସାହିତ୍ୟକୁ ଋଦ୍ଧିମନ୍ତ କରିଛି ।

ଓଡ଼ିଆ ସାହିତ୍ୟ ଗବେଷଣା ଇତିହାସରେ ଡଃ ସାହୁଙ୍କର ଅବଦାନ ଅତୁଳନୀୟ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା, ଗବେଷଣା, ଓ ଦିଗ୍‌ଦର୍ଶନରେ ସେ ନିଜର ସାଧନାର ଉତ୍କର୍ଷତା ବଜାୟ ରଖିଛନ୍ତି । ନିଜର କର୍ତ୍ତବ୍ୟନିଷ୍ଠା, ଅକ୍ଳାନ୍ତ ପରିଶ୍ରମ, ନିୟମାନୁବର୍ତ୍ତିତା, କଠୋର ସାଧନା, ଗଭୀର ଆତ୍ମପ୍ରତ୍ୟୟ ତାଙ୍କୁ ଉଚ୍ଚଶିକ୍ଷା ପ୍ରାପ୍ତି ଓ ଉଚ୍ଚ ସୋପାନକୁ ଉନ୍ନୀତ କରିବାରେ ସହାୟକ ହୋଇଥିଲା । ତାଙ୍କର ଛାତ୍ରମାନଙ୍କ ପ୍ରତି ସ୍ନେହ, ଗୁରୁଜନମାନଙ୍କ ପ୍ରତି ଭକ୍ତି ଓ ବଂଧୁମାନଙ୍କ ପ୍ରତି ଆଦରର ଗଭୀରତା କେତେ ଥିଲା ଯେ ତାଙ୍କ ସାଥିରେ ନଆସିଛି ତାକୁ କଳ୍ପନା କରିପାରିବ ନାହିଁ ।

ଡଃ ସାହୁ ବାଣୀବିହାରରେ ଜଣେ ଛାତ୍ରବତ୍ସଳ ଓ ବଂଧୁସ୍ନେହୀ ଅଧ୍ୟାପକ ଭାବରେ ସୁପରିଚିତ ଥିଲେ । ନିଜର କର୍ମ ନିପୁଣତା, ଉଚ୍ଚକୋଟିର ଅଧ୍ୟାପନା, ଗବେଷଣା, ଧୀଷଣା ବଳରେ ବିଶ୍ୱବିଦ୍ୟାଳୟ ପ୍ରଶାସନ, ସାହିତ୍ୟ ସାଧକ ଓ ଜ୍ଞାନୀମାନଙ୍କ ଦ୍ୱାରା ଆଦୃତ ହୋଇଥିଲେ । ଡଃ ସାହୁଙ୍କ ସରଳ ବ୍ୟବହାର ଅନାବିଳ ସ୍ନେହ, ଉଚ୍ଚମାନର ଅଧ୍ୟାପନା, ଦିଗ୍‌ଦର୍ଶନ ପ୍ରତ୍ୟେକ ଛାତ୍ରଛାତ୍ରୀ ଓ ଗବେଷକମାନଙ୍କୁ ଆକୃଷ୍ଟ କରୁଥିଲା । ଗବେଷକ ତଥା ଛାତ୍ରଛାତ୍ରୀଙ୍କ ସ୍ନେହ ଓ ଭକ୍ତିର ଉତ୍ସ କେତେ ଥିଲା ତାହା ଡଃ ସାହୁଙ୍କର ଷଷ୍ଠି ପୂର୍ତ୍ତି ଉତ୍ସବରେ ପ୍ରମାଣିତ ହୋଇଅଛି ।

ଡଃ ସାହୁ ଜଣେ ପୁସ୍ତକପ୍ରେମୀ ଥିଲେ । ସେ ବହୁ ସମୟରେ ପରିଡ଼ା ପାଠାଗାରକୁ ଆସି ବିଭିନ୍ନ ପୁସ୍ତକ ଓ ତାଳପତ୍ର ପୋଥି ପଢୁଥିଲେ । ସେ ପରିଡ଼ା ପାଠାଗାରର ସମସ୍ତ କର୍ମଚାରୀଙ୍କୁ ଜାଣିଥିଲେ । କୌଣସି ବହି ଖୋଜିବାରେ ଅସୁବିଧା ହେଲେ ସାଂଗେ ସାଂଗେ ମୋତେ ଜଣାଉଥିଲେ । ବହି ଖୋଜି ନେବାରେ ସଂପର୍କ ବଢ଼ିଲା । ଦିନେ ଶ୍ରୀରାମ ସାହିତ୍ୟ ଉପରେ କେତୋଟି ବହି ତାଲିକା ଦେଲେ ତାକୁ ଖୋଜି ବାହାର କରିବା ପାଇଁ । ସପ୍ତାହେ ଭିତରେ ବହି ବାହାର କରି ଡଃ ସାହୁଙ୍କୁ ଖବର ଦେଇଥିଲି । ସେ ଆସି ବହିଦେଖି ଖୁସିହେଲେ । କିଛି ସମୟ ପଢ଼ିଲେ ଏବଂ ମୋତେ କହିଲେ ତୁମର ତ ରାମ ସାହିତ୍ୟ ଉପରେ ଭଲ ଜ୍ଞାନ ଅଛି ଗବେଷଣା କର । ଏପରି ସୁଯୋଗର ହାତଛଡ଼ା ନକରି ସାଂଗେସାଂଗେ ମୋର ସମ୍ମତି ପ୍ରଦାନ କଲି । ରଘୁନାଥ ବିଳାସ କାବ୍ୟ ଉପରେ ଗବେଷଣା ଆରମ୍ଭ କଲି । ଡଃ ସାହୁ ଗବେଷକମାନଙ୍କୁ ନିଜର ସାନଭାଇ ଭଳି ଆଦର ଓ ସ୍ନେହ କରନ୍ତି । ସେ ନିଜ କଥା ଭୁଲିଯାଇ ଆମମାନଙ୍କ ସୁବିଧା ଅସୁବିଧା ବାରମ୍ବାର ପଚାରି ବୁଝୁଥିଲେ । ଛାତ୍ରମାନେ କିଛି ଲେଖା ନେଇ ଆଲୋଚନା କରିବାକୁ ଗଲେ ସେ କେବେ ନିରାଶ ନକରି ତତ୍‌କାଳରେ ଭ୍ରମସଂଶୋଧନ କରିଦେଉଥିଲେ । ଥରେ ମୁଁ ମୋର ଲେଖା ନେଇ ସାର୍‌ଙ୍କ ପାଖକୁ ଗଲାବେଳକୁ ଶୁଣିଲି ସାର୍‌ଙ୍କର ଦେହ ଅସୁସ୍ଥ । ଭାବିଲି ସାର୍‌ଙ୍କୁ ଦେଖାକରି ଚାଲିଆସିବି । ତଥାପି ସାର୍ ଗୋଟିଏ ଚାଦର ଘୋଡ଼ି ହୋଇ ଆସିଲେ । ମୁଁ ନମସ୍କାର କଲି । ସେ ହସିହସି ପ୍ରତିନମସ୍କାର ଜଣାଇଲେ । ମୁଁ ପଚାରିଲି ସାର୍ ଆପଣଙ୍କର ଦେହ କିପରି ଅଛି । ସାର୍ କହିଲେ, ''ମୋର ଦେହ ଭଲ ହୋଇଗଲାଣି ।'' ତୁମର ଲେଖା କେତେବାଟ ଗଲା । ମୁଁ ବାଧ ହୋଇ ସାର୍‌ଙ୍କୁ ଲେଖାଗୁଡ଼ିକ ଦେଖାଇଲି । ସାର୍ ଖୁବ୍ ଖୁସି ହୋଇଗଲେ ଏବଂ ଧୈର୍ଯ୍ୟର ସହିତ ସେ ଲେଖାକୁ ଟିକିନିଖି ପରଖିଥିଲେ । ଆଗରୁ ଅନ୍ୟ ଗବେଷକଙ୍କଠାରୁ ସାର୍‌ଙ୍କର ସ୍ନେହପୂର୍ଣ୍ଣ ବ୍ୟବହାର ଶୁଣିଥିଲି । ତାଙ୍କର ଦେହ ଖରାପରେ ମୋ ପାଇଁ ଯେଉଁ ଅକୁଣ୍ଠିତ ସାହାଯ୍ୟ କଲେ ତାହା ଭୁଲିପାରୁ ନାହିଁ ।

ଆଉ ଗୋଟିଏ ଦିନର ଘଟଣା । ମୁଁ କିଛି ଲେଖାନେଇ ସାର୍‌ଙ୍କ ଘରେ ପହଞ୍ଚିଲି । ଦେଖିଲି ଏକ ଟ୍ୟାକ୍ସି ସାର୍‌ଙ୍କ ଗେଟ୍ ପାଖରେ ଅଛି । ଭିତରକୁ ଗଲି ବୁଝିଲି ସାର୍ କଟକରେ ଗୋଟିଏ ସଭାରେ ଯୋଗ ଦେବା ପାଇଁ ବାହାରିଛନ୍ତି । ଭାବିଲି ଅପେକ୍ଷା କରିବି ସାର୍ ଆସିଲେ ଦେଖାକରି ଯିବି । ସାର୍ ଆସିଲେ । ପଚାରିଲେ କିଛି ଲେଖା ଆଣିଛକି ? ସାର୍‌ଙ୍କୁ ଲେଖା ଦେଖାଇଲି । ସଂଗେସଂଗେ ସାର୍ ଘଣ୍ଟାକୁ ଚାହିଁଲେ ଓ ପକେଟରୁ ନାଲିକଲମ ବାହାର କରି ଆମୂଳଚୂଳ ଟିକ୍‌ନିଖ୍ ସଂଶୋଧନ କଲେ । ପ୍ରାୟ ଦେଖିବା ପାଇଁ ଏକ ଘଣ୍ଟାରୁ ଅଧିକ ସମୟ ଲାଗିଲା । ମୁଁ ମଝିରେ ଥରେ କହିଲି ସାର୍ ଥାଉ ପରେ ଆସିବି । ସାର୍ କହିଲେ, ତୁମେ ପରିଶ୍ରମ କରି ଆସିଛ ଫେରିଯିବ । ସେଇଦିନରୁ ଡଃ ସାହୁଙ୍କର କର୍ତ୍ତବ୍ୟନିଷ୍ଠା,

ଛାତ୍ରବତ୍ସଳତା ଓ ବନ୍ଧୁସ୍ନେହର ପ୍ରମାଣ ପାଇପାରିଥିଲି । ପରେ ବୁଝିଲି ସାର୍ ସେଦିନ ସଭାର ନିର୍ଦ୍ଧାରିତ ସମୟର ଦୁଇଘଣ୍ଟା ପୂର୍ବରୁ କଟକ ଯିବାର ବ୍ୟବସ୍ଥା କରିଥିଲେ । କାରଣ ପ୍ରଥମେ ସେ ଗୋଟିଏ ପ୍ରେସ୍‌କୁ ଯାଇଥାନ୍ତେ ଯେଉଁଠାରେ ତାଙ୍କର ବହି ଛପା ହେଉଥିଲା । ତାଙ୍କର ମୂଲ୍ୟବାନ ସମୟରୁ କିଛି ସମୟ ମୋର ଲେଖା ସଂଶୋଧନ କରିବାରେ କଟାଇଲେ । ଟ୍ୟାକ୍ସିଟି ଦୁଇଘଣ୍ଟା ଦୁଆରେ ରହିଲା । ସେଥିପାଇଁ ସାର୍‌ଙ୍କୁ କିଛି ଦେବାକୁ ପଡ଼ିଥିବ । କିନ୍ତୁ ସେଥିରେ ସାର୍‌ଙ୍କର କିଛି ଦୁଃଖ ନାହିଁ ।

ଛାତ୍ରମାନଙ୍କ ପାଇଁ ସାର୍ ପଇସା ଖର୍ଚ୍ଚ କରିବାରେ ଆନନ୍ଦ ପାଆନ୍ତି । କେତେଥର ମୁଁ ଦେଖିଛି ଛାତ୍ରମାନେ ପରୀକ୍ଷା ଫିସ୍ କିମ୍ବା ଦରମା ଦେବାରେ ଅସୁବିଧା ହେଲେ ସାର୍‌ଙ୍କ ପାଖକୁ ଆସିଛି । ସଂଗେସଂଗେ ନିଜ ପକେଟରୁ ଛାତ୍ରଙ୍କୁ ପଇସା ଦିଅନ୍ତି । ମୋର ମନେଅଛି ଥରେ ମୁଁ ସାର୍‌ଙ୍କୁ ପଚାରିଲି ସାର୍ ସେ ଛାତ୍ର କେବେ ଆପଣଙ୍କୁ ଟଙ୍କା ଫେରାଇବ କିଛି କହିଲେ ନାହିଁ । ସାର୍ ଉତ୍ତର ଦେଲେ, ''ସେ ଆଗ ପରୀକ୍ଷା ଦେଇ ପାସ୍ କରି ମଣିଷ ହୋଇଯାଉ ।'' ଡଃ ସାହୁ ଗରିବ ମେଧାବୀ ଛାତ୍ରଙ୍କୁ ସାହାଯ୍ୟ କରିବାରେ ଆନନ୍ଦ ଅନୁଭବ କରୁଥିଲେ ।

ସେହି ମହାନ୍ ଦିଗ୍‌ଦର୍ଶକ, ଛାତ୍ରବତ୍ସଳ, ବଂଧୁସ୍ନେହୀ, ପରୋପକାରୀ ସ୍ୱର୍ଗତ ବାସୁଦେବ ସାହୁଙ୍କୁ ମୋର କୋଟି କୋଟି ପ୍ରଣମ କରିବା ସହିତ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ଏଭଳି ଜଣେ ସାହିତ୍ୟ ସାଧକ ପ୍ରଜ୍ଞାପୁରୁଷଙ୍କ ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛି ।



ଅବସରପ୍ରାପ୍ତ ମୁଖ୍ୟ ଗ୍ରନ୍ଥାଗାରିକ
ଉତ୍କଳବିଶ୍ୱବିଦ୍ୟାଳୟ, ୪୪/୬୦୭
ଲକ୍ଷ୍ମୀବିହାର, ଭୁବନେଶ୍ୱର-୫

# ମଣିଷ ପରି ମଣିଷଟିଏ

ଡଃ ଶୁଭେନ୍ଦୁ ମୁଣ୍ଡ

ଆମର ପ୍ରଥମ ସାକ୍ଷାତ ବୋଧହୁଏ ୧୯୭୩ରେ- ତେତିଶ ବର୍ଷ ତଳେ । ଭବାନୀପାଟଣାରେ, ଓଡ଼ିଆ ଯୁବ ଲେଖକ ସମ୍ମେଳନର ବାର୍ଷିକ ଅଧିବେଶନରେ । ମୁଁ ସେତେବେଳେ ଥାଏଁ ସମ୍ମେଳନର ସାଧାରଣ ସଂପାଦକ । ପଞ୍ଚାୟତ କଲେଜ (ବରଗଡ଼) ରେ ଥାଏଁ ଅଧ୍ୟାପକ ।

ପ୍ରଥମ ଦେଖାରୁ ହିଁ ସାର୍‌ଙ୍କ ପ୍ରତି ସ୍ୱତଃସ୍ଫୁର୍ତ୍ତ ଭାବରେ ଆସିଯାଏ ସ୍ନେହମିଶା ସମ୍ମାନର ଭାବ । ଶେଷ ପର୍ଯ୍ୟନ୍ତ ତାଙ୍କଠାରୁ ମୁଁ ଅନୁଜର ସ୍ନେହ ପାଇଛି ।

ଖୁବ୍ ସ୍ନେହୀ ଲୋକ ଥିଲେ ସିଏ । ମୃଦୁଭାଷୀ, ଭଦ୍ର ଏବଂ ମାର୍ଜିତ । ତାଙ୍କ ଛାତ୍ରମାନଙ୍କୁ ସେ ଖୁବ୍ ଭଲ ପାଉଥିଲେ, ଏବଂ ସେମାନେ ବି ସାର୍‌ଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ ବୋଲି ମୁଁ ଜାଣିଛି ।

ସାର୍ ଥିଲେ ଅତ୍ୟନ୍ତ ପରିଶ୍ରମୀ । ଗବେଷଣା ଛାତ୍ରମାନଙ୍କ ପାଇଁ ସେ କଠୋର ପରିଶ୍ରମ କରୁଥିଲେ । ନିଜେ ମଧ୍ୟ ଗବେଷଣା ତଥା ସାହିତ୍ୟ ସମାଲୋଚନା ଲେଖା ଓ ବକ୍ତୃତା କାର୍ଯ୍ୟରେ ନିଜକୁ ନିୟୋଜିତ ରଖୁଥିଲେ । ଅତ୍ୟଧିକ ପରିଶ୍ରମର ଅଭ୍ୟାସ ତାଙ୍କର ରହିଥିଲା ଶେଷ ଜୀବନ ଯାଏ । ନିଜେ ତ ଆବଶ୍ୟକତାରୁ ଅଧିକ ପରିଶ୍ରମ କରୁଥିଲେ, ସେ ଅନ୍ୟମାନଙ୍କଠାରୁ ମଧ୍ୟ ସେଭଳି ପରିଶ୍ରମର ପ୍ରତ୍ୟାଶା ରଖୁଥିଲେ ।

ସେଇ ଭବାନୀପାଟଣା ସମ୍ମେଳନବେଳେ ମୋ ବାପା ସ୍ୱର୍ଗତ ପରଶୁରାମ ମୁଣ୍ଡଙ୍କ ସହ ତାଙ୍କର ପରିଚୟ ହୋଇଥିଲା । ସେ ତାଙ୍କର ମୂଲିଆ ପିଲା ଉପନ୍ୟାସ ପଢ଼ିଥିଲେ । ଅନ୍ୟ ପ୍ରକାଶିତ ଉପନ୍ୟାସଗୁଡ଼ିକୁ ସଂଗ୍ରହ କରି ତାହା ଉପରେ କୌଣସି ଗବେଷକ ପିଏଚ୍.ଡ଼ି ସନ୍ଦର୍ଭ ଲେଖିବା ପାଇଁ ପ୍ରୋତ୍ସାହିତ କରିବେ ବୋଲି କହୁଥିଲେ ।

ସାର୍‌ଙ୍କ ଅସୁସ୍ଥତା କଥା ମୁଁ ଜାଣିଥିଲି । ତାଙ୍କର ଚେନ୍ନାଇ ଯାଇ ଚିକିତ୍ସା ଗ୍ରହଣ କରିବା ମଧ୍ୟ ଜାଣିଥିଲି । ସେ ଚେନ୍ନାଇରେ ଥିବାବେଳେ ତାଙ୍କ ସାଂଗେ ଫୋନ୍‌ରେ ବି କଥାବାର୍ତ୍ତା କରିଥିଲି । ସେଠାରୁ ଫେରିବା ପରେ ସେ ସୁସ୍ଥ ଜଣାପଡୁଥିଲେ ଏବଂ କ୍ରମେ ଆରୋଗ୍ୟ ଲାଭ କରିବେ ବୋଲି ସେ ମନେକରୁଥିଲେ । ଆମେ ବି ଭାବୁଥିଲୁ ସେ ଶୀଘ୍ର

ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରିବେ ଏବଂ ପୂର୍ବଭଳି କର୍ମତତ୍ପର ହୋଇ ଓଡ଼ିଆ ସାହିତ୍ୟକୁ ଅଧିକ ଋଦ୍ଧିମନ୍ତ କରିବେ ।

ସଂସ୍କୃତି ବିଭାଗର ତତ୍ତ୍ୱାବଧାନରେ ପ୍ରଣୟନ କରାଯାଉଥିବା 'ଚଳନ୍ତି ଓଡ଼ିଆ ଅଭିଧାନ' ର ବିଶେଷଜ୍ଞ ମଣ୍ଡଳୀରେ ଅନ୍ୟ ବିଦ୍ୱାନ୍‌ମାନଙ୍କ ସହ ଆମେ ଦୁହେଁ ମଧ ଥିଲୁ । ଆମେ ତେଣୁ ସେହି ପ୍ରକଳ୍ପରେ ଏକତ୍ର କାର୍ଯ୍ୟ କରିଥିଲୁ । ଅସୁସ୍ଥତାବଶତଃ ସେ ଆଉ ସହଯୋଗ କରିପାରିଲେ ନାହିଁ ।

ଶୋକ ସମ୍ବାଦ ପାଇବା ପରେ ମୁଁ ତାଙ୍କ ଘରକୁ ଯାଇଥିଲି । ଶୂନ୍ୟମନ୍ଦିରରେ ତାଲା ପଡ଼ିଥିଲା । ଶେଷଦର୍ଶନ କରିବାର ସୁଯୋଗ ମଧ ପାଇପାରିଲି ନାହିଁ ।

ମଣିଷ ପରି ମଣିଷଟିଏ ଥିଲେ ସେ । ସଶରୀରେ ନଥିଲେ ବି ସେ ଚିରକାଳ ଆମ ହୃଦୟରେ ଶ୍ରଦ୍ଧା ଓ ସମ୍ମାନର ସହ ବିରାଜିତ ହୋଇ ରହିଥିବେ ।



ଆଇ.ଏମ୍-୩୭
ବାଣୀବିହାର, ଭୁବନେଶ୍ୱର-୨୧

# ଶିକ୍ଷାବିତ୍ ଡକ୍ଟର ବାସୁଦେବ ସାହୁ

ଡଃ ଜାନକୀ ଜେନା

ଏତେଶୀଘ୍ର ଚାଲିଯିବେ, କିଏ ବା ଜାଣିଥିଲା ? ଭୁବନେଶ୍ୱର ମାଟିରେ ପାଦ ଦେଲେ ସ୍ନେହ, ମମତାରେ ଭରପୂର ସେ ମୁହଁଟି ସ୍ୱତଃ ଟାଣିନିଏ ତାଙ୍କ ପାଖକୁ । ହୃଦୟରେ ସାଇତା ଅନେକ ସ୍ମୃତି, ୧୯୭୮ ମସିହା ଜୁଲାଇ ମାସ ବାଣୀବିହାରରେ ଅଧ୍ୟୟନ ଲାଗି ନାମ ଲେଖାଇବା ଦିନରୁ ୨୦୦୫ ଜୁଲାଇ ୨୭ ତାରିଖର ଦୁଃଖଦ ସମୟ ପର୍ଯ୍ୟନ୍ତ । ଶେଷ ଦର୍ଶନର ସୌଭାଗ୍ୟ ପର୍ଯ୍ୟନ୍ତି ମିଳିଲା ନାହିଁ । ସବୁରି ମୁହଁରେ ହସ ଫୁଟେଇଥିବା ମଣିଷଟି ମୁହଁ ଛପେଇ ଦେଲେ ସୁଦୂର ପୁନେ (ମୁମ୍ବାଇ) ମାଟିରେ । ସ୍ମୃତି ପରିଷଦ ଆନୁକୂଲ୍ୟରେ ପ୍ରକାଶ ପାଇବାକୁ ଯାଉଥିବା ସ୍ମରଣିକା ଗ୍ରନ୍ଥ ପାଇଁ ନିବନ୍ଧଟିଏ ତାଙ୍କ ଉଦ୍ଦେଶ୍ୟରେ ଲେଖିବାବେଳେ ସତକୁ ସତ ଭାଷା ଖୋଜି ପାଉନାହିଁ । ଭାଷାବିଜ୍ଞାନୀଙ୍କୁ କେଉଁ ଭାଷାରେ ରୂପ ଦେବି ମୁଁ ?

୨୦୦୨ ମସିହା ଫେବୃୟାରୀ (୧୦ ତାରିଖରୁ ୧୬ ତାରିଖ) ''ଧରିତ୍ରୀର''ର ଛୁଟିଦିନ ସଂଖ୍ୟାରେ ଡକ୍ଟର ବାସୁଦେବ ସାହୁଙ୍କର ସ୍ମୃତିଛବି ପ୍ରକାଶିତ ହୋଇଥିଲା । ''ସଂଘର୍ଷର ଅନ୍ୟନାମ ବାସୁଦେବ''- ଶୀର୍ଷକଟି ତାଙ୍କ ବ୍ୟକ୍ତିତ୍ୱକୁ ସଫଳ ଭାବେ ପରିପ୍ରକାଶ କରିବାରେ ସମର୍ଥ ହୋଇପାରିଥିଲା । ଅଭାବ, ଅନାଟନର ବଳୟରେ ପେଷି ହୋଇ ସେ ଜୀବନକୁ ଚିହ୍ନିଥିଲେ । ଯନ୍ତ୍ରଣାର ବଳୟରୁ ମୁକ୍ତି ପାଇ ସେ ନିଜ ଚତୁଃପାର୍ଶ୍ୱରେ ସୃଷ୍ଟି କରିଥିଲେ ଶିକ୍ଷାର ବଳୟ । ଜନ୍ମିତ ସନ୍ତାନ, ଛାତ୍ରଛାତ୍ରୀ, ଗବେଷକ-ଗବେଷିକା-ସମସ୍ତଙ୍କ ନିଜ ଶିକ୍ଷାଦାନ ପ୍ରଣାଳୀରେ ମୁଗ୍ଧ, ଚକିତ, ଅଭିମନ୍ତ୍ରିତ କରି ସବୁରି ହୃଦୟରେ ନିଜ ପାଇଁ ସ୍ୱତନ୍ତ୍ର ଆସନ ଗଢ଼ି ନେଇଥିଲେ ସେ ।

ବାରିପଦାସ୍ଥିତ ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରୁ ଅଧ୍ୟାପନା ଜୀବନର ଶୁଭାରମ୍ଭ, ୧୯୬୬ ମସିହାରେ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀକୁ ବଦଳି ଓ ୧୯୬୯ ମସିହାରେ ଉତ୍କଳବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ଯୋଗଦାନ କରି ଦୀର୍ଘ ୩୬ ବର୍ଷରୁ ଊର୍ଦ୍ଧ୍ୱକାଳ ଅଧ୍ୟୟନ ଓ ଅଧ୍ୟାପନା, ନିରବଚ୍ଛିନ୍ନ ସାହିତ୍ୟସାଧନା, ଗବେଷଣା କ୍ଷେତ୍ରରେ ଦିଗ୍‌ଦର୍ଶନ-ଅଗଣିତ ଛାତ୍ର ତଥା ଗବେଷକମାନଙ୍କୁ ବହୁ ନୂତନ ସରଣୀର ସନ୍ଧାନ ଦେଇଛି । ଅଧ୍ୟୟନ ଓ ଅଧ୍ୟାପନା କେବଳ ତାଙ୍କର ବୃତ୍ତି ନ ଥିଲା, ତାହା ତାଙ୍କ ଜୀବନର ବ୍ରତ ଥିଲା ।

ପ୍ରଫେସର ସାହୁ ଥିଲେ ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ କିମ୍ବଦନ୍ତୀ ପୁରୁଷ । ତାଙ୍କର ଭାଷାବିଜ୍ଞାନ ଚର୍ଚ୍ଚା, ସାହିତ୍ୟ ସମାଲୋଚନା, ଗଳ୍ପ, ଏକାଙ୍କିକା ଓ କବିତା ସୃଷ୍ଟି ସଂପର୍କରେ ତଦ୍‌ବିଦ୍‌ମାନେ ଅତି ଉଚ୍ଚକୋଟୀର ସମୀକ୍ଷା କରିଛନ୍ତି । ଜଣେ କର୍ତ୍ତବ୍ୟନିଷ୍ଠ ସାଧକ, ଗୁଣଗ୍ରାହୀ ବନ୍ଧୁ, ଛାତ୍ରବତ୍ସଳ ଅଧ୍ୟାପକ ସର୍ବୋପରି ଆଦର୍ଶ ଶିକ୍ଷାବିତ୍ ଭାବରେ ପ୍ରଫେସର ସାହୁ ଓଡ଼ିଆ ଭାଷା ତଥା ସାହିତ୍ୟ ଅଧ୍ୟାପନା କ୍ଷେତ୍ରରେ ବିଶିଷ୍ଟ ସମ୍ମାନର ଅଧିକାରୀ ।

ପ୍ରଫେସର ବାସୁଦେବ ସାହୁଙ୍କ ସଂସ୍ପର୍ଶରେ ଆସିଥିବା ଛାତ୍ର-ଛାତ୍ରୀ, ଗବେଷକ-ଗବେଷିକା ନିଶ୍ଚିତ ଭାବରେ ତାଙ୍କର ଶିକ୍ଷାଦାନ ପ୍ରଣାଳୀକୁ ପ୍ରଶଂସା ନ କରି ରହିପାରିବେ ନାହିଁ । ଅଧ୍ୟାପନାକୁ କେବଳ ବୃତ୍ତି ହିସାବରେ ଗ୍ରହଣ କରିଥିବା କୌଣସି ଶିକ୍ଷକ କେବେ ଏତେମାତ୍ରାରେ ନିଷ୍ଠାବାନ ହୋଇପାରିବେ ନାହିଁ । ଡକ୍ଟର ସାହୁ ଜଣେ ବୃତ୍ତିଧାରୀ ଶିକ୍ଷକ ନଥିଲେ । 'ଶିକ୍ଷା'କୁ ସେ ଜୀବନର 'ବ୍ରତ' ଭାବରେ ଗ୍ରହଣ କରିଥିବା କାରଣରୁ ନୀତିନିଷ୍ଠ ଶିକ୍ଷକ ଭାବରେ ନିଜର ପ୍ରତିଟି ଆଚରଣରେ ସେ ତାହାକୁ ପରିପ୍ରକାଶ କରିଥିଲେ । ତାଙ୍କ ପାଖରେ ସମୟର ନିଷ୍ଠା ଥିଲା । କର୍ତ୍ତବ୍ୟ-ଦାୟରେ ସେ ଶ୍ରେଣୀଗୃହକୁ ପ୍ରବେଶ କରୁ ନଥିଲେ । ଶ୍ରେଣୀଗୃହର ପରିବେଶ, ଛାତ୍ରର ମାନସିକତା, ପଠିତ ବିଷୟ ଉପରେ ଛାତ୍ରର ପୂର୍ବାର୍ଜିତ ଜ୍ଞାନର ପରିସୀମା, ପାଠ୍ୟକ୍ରମ ପ୍ରତି ତା'ର ଆଗ୍ରହଭାବ-ଏ ସବୁକୁ ଆଖି ଆଗରେ ରଖି ସେ ଜଣେ ଶିକ୍ଷକର ଭୂମିକା ନିର୍ବାହ କରୁଥିଲେ । ସର୍ବୋପରି ତା'ର ଶାରୀରିକ, ମାନସିକ, ଆର୍ଥିକ, ଚାରିତ୍ରିକ, ପାରିପାର୍ଶ୍ୱିକ ପରିସ୍ଥିତି ପ୍ରତି ସେ ସଚେତନ, ସଜାଗ ଥିଲେ । ତାଙ୍କର ଜ୍ଞାନଦୀପ୍ତ, ସୁତୀକ୍ଷ୍ଣ ଦୃଷ୍ଟିରୁ କୌଣସି ଛାତ୍ରର ଅପାରଗପଣିଆ ବାଦ୍ ପଡୁନଥିଲା । ଡକ୍ଟର ବାସୁଦେବ ସାହୁଙ୍କୁ ଶିକ୍ଷକ ଭାବରେ ପାଇ ପ୍ରତ୍ୟେକ ଛାତ୍ର-ଛାତ୍ରୀ ଗର୍ବ ଅନୁଭବ କରୁଥିଲେ ।

ଓଡ଼ିଆ ଭାଷା ଓ ସାହିତ୍ୟର ଅଧ୍ୟାପକ ହୋଇଥିଲେ ମଧ୍ୟ ଇଂରାଜୀ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଅସମୀୟା, ଭୋଜପୁରୀ, ମୈଥିଳୀ ଆଦି ଭାଷାରେ ତାଙ୍କର ଦକ୍ଷତା ଥିଲା ।

ଓଡ଼ିଆ ଭାଷା ଉପରେ ବୈଦେଶିକ ଭାଷାର ପ୍ରଭାବକୁ ନେଇ ସେ ତାଙ୍କର ଗବେଷଣା ନିବନ୍ଧ ପ୍ରସ୍ତୁତ କରିଥିଲେ ହେଁ ପରବର୍ତ୍ତୀ ସମୟରେ ''ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା'' ଉପରେ ସନ୍ଦର୍ଭ ପ୍ରସ୍ତୁତ କରି ସେ ଡି.ଲିଟ୍. ଡିଗ୍ରୀ ଲାଭ କରିଥିଲେ । ଓଡ଼ିଆ ଭାଷା ତଥା ସାହିତ୍ୟ-ଉଭୟର ସେ ଥିଲେ ଯଥାର୍ଥ ସାଧକ ।

ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସେ ନିଜ ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରିଥିଲେ । କବିତା ଓ ଗଳ୍ପ ରଚନା କ୍ଷେତ୍ରରେ ସେ ନିଜସ୍ୱ ରୁଚିର ସ୍ୱାକ୍ଷର ରଖିବା ହସ ଝଙ୍କାର, ସମାବେଶ, ଆସନ୍ତାକାଲି, ଶ୍ରୀ ଜଗନ୍ନାଥ ଆଦି ପତ୍ରିକା ମାନଙ୍କରେ ତାଙ୍କର ଦେଢ଼ଶତରୁ ଉର୍ଦ୍ଧ୍ୱ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ ପାଇଥିଲା । ଏସ୍.ଇ.ଆର୍.ଟି. ଦ୍ୱାରା ପ୍ରସ୍ତୁତ ପ୍ରଥମ, ଦ୍ୱିତୀୟ, ତୃତୀୟ ଶ୍ରେଣୀ ପାଇଁ ପାଠ୍ୟ ନିମନ୍ତେ ଯଥାକ୍ରମେ ଆମ ପାଠବହି (ମିଳିତ ରଚନା ଓ ମୁଖ୍ୟ ସଂପାଦନା), ଆମ ପାଠ ବହି (ମିଳିତ ରଚନା ଓ

ମୁଖ୍ୟ ସଂପାଦନା), ମୋ ସାହିତ୍ୟ (ମିଳିତ ରଚନା ଓ ମୁଖ୍ୟ ସଂପାଦନା) ମଧ୍ୟ ସେ ପ୍ରସ୍ତୁତ କରିଥିଲେ । ଭାଷା ବିଜ୍ଞାନଠାରୁ ଆରମ୍ଭ କରି ଅଳଙ୍କାର ତତ୍ତ୍ୱ, ଓଡ଼ିଆ ସାହିତ୍ୟରେ ଧର୍ମୀୟ ପରମ୍ପରା, ଚଣ୍ଡୀପୁରାଣ : ସଂପାଦନା ଓ ସମୀକ୍ଷା, ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଓ ଘର ସଂସାର, ପ୍ରବନ୍ଧ ସମାରୋହ ଆଦି ତାଙ୍କର ପ୍ରକାଶିତ ଗ୍ରନ୍ଥମାନଙ୍କୁ ସମୀକ୍ଷା କଲାବେଳେ ବିଭିନ୍ନ କ୍ଷେତ୍ରରେ ତାଙ୍କର ବିଦ୍‌ବତ୍ତା ସ୍ପଷ୍ଟ ବାରି ହୋଇପଡ଼େ ।

ଭାଷାବିଜ୍ଞାନ, ବ୍ୟାକରଣ, ପ୍ରାଚୀନ, ମଧ୍ୟଯୁଗୀୟ, ଆଧୁନିକ ଓଡ଼ିଆ ସାହିତ୍ୟ, ଗଳ୍ପ, ଉପନ୍ୟାସ, କାବ୍ୟ-କବିତା, ପୋଥି ସଂପାଦନା ଓ ସମୀକ୍ଷା, ଧର୍ମୀୟ ସାହିତ୍ୟ, ଅନୁବାଦ ସାହିତ୍ୟ- ବହୁବିଧ କ୍ଷେତ୍ରରେ ଦିଗ୍‌ଦର୍ଶନ ଦେଇ ପ୍ରଫେସର ସାହୁ ଗବେଷଣାର ଚୌହଦୀ ପ୍ରସ୍ତୁତ କରିଯାଇଛନ୍ତି । ପ୍ରାୟ ଷାଠିଏରୁ ଊର୍ଦ୍ଧ୍ୱ ଗବେଷକ, ଗବେଷିକା ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗ ଉପରେ ଆଲୋକପାତ କରିବା ସହ ସିଂହଭୂମିର ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି, କଲିକତାରେ ପ୍ରକାଶିତ ଓଡ଼ିଆ ପତ୍ରପତ୍ରିକା, ଓଡ଼ିଆ ଓ ଅସମୀୟା ଲୋକ ସାହିତ୍ୟ, ଓଡ଼ିଆ ସାହିତ୍ୟକୁ ଆକାଶବାଣୀର ଅବଦାନ-ଏହିଭଳି ନୂତନ ଦିଗନ୍ତ ଉପରେ ନିବନ୍ଧ ରଚନା କରି ପ୍ରଫେସର ସାହୁଙ୍କ ଦିଗ୍‌ଦର୍ଶନର ପରିସୀମାକୁ ବ୍ୟାପ୍ତ କରିଛନ୍ତି ।

ଓଡ଼ିଶା ମାଧ୍ୟମିକ ଶିକ୍ଷାପରିଷଦ, କଟକ, ପାଠ୍ୟ ଖସଡ଼ା କମିଟିର ମୁଖ୍ୟ, ପାଠ୍ୟ ପୁସ୍ତକ ସମୀକ୍ଷକ, ଓଡ଼ିଶା ସରକାରଙ୍କ ''ପ୍ରଶାସନିକ ଓଡ଼ିଆ ଶବ୍ଦକୋଷ'' ପ୍ରଣୟନ ସମିତିର ସଭ୍ୟ, ଭାରତୀୟ ପ୍ରଶାସନିକ ସେବା ପରୀକ୍ଷାର ପରୀକ୍ଷକ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ବରିଷ୍ଠ ଗବେଷକ ନିର୍ବାଚନ କମିଟିର ସଭ୍ୟ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଜାତୀୟ ଯୋଗ୍ୟତା ପରୀକ୍ଷାର ପରୀକ୍ଷକ, ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ପାଠ୍ୟ ଖସଡ଼ା କମିଟିର ଚେୟାର୍‌ମ୍ୟାନ୍, ସମ୍ବଲପୁର, ବ୍ରହ୍ମପୁର, ବିଶ୍ୱଭାରତୀ, ବନାରସ ଆଦି ବିଶ୍ୱବିଦ୍ୟାଳୟର ଓଡ଼ିଆ ପାଠ୍ୟଖସଡ଼ା କମିଟିର ସଭ୍ୟ, ପ୍ରାୟ ଏ ସବୁ ବିଶ୍ୱବିଦ୍ୟାଳୟର ପିଏଚ୍.ଡ଼ି ଓ ଡି.ଲିଟ୍ ସନ୍ଦର୍ଭର ପରୀକ୍ଷକ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭ୍ୟ, ପରିଦର୍ଶୀ ବିଦ୍ୱାନ୍ ପ୍ରଫେସର ଭାବରେ ଡକ୍ଟର ବାସୁଦେବ ସାହୁ ଜଣେ ଆଦର୍ଶ, ନିରପେକ୍ଷ ତଥା କର୍ତ୍ତବ୍ୟନିଷ୍ଠ ଶିକ୍ଷାବିତ୍‌ର ଆସନ ଅଳଙ୍କୃତ କରି ଯେଉଁ ବହୁମୁଖୀ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି, ତାହା ତାଙ୍କୁ କେବଳ ଜଣେ ବ୍ୟକ୍ତିର ପ୍ରତିଷ୍ଠା ପ୍ରଦାନ କରିନାହିଁ, ଅଧିକନ୍ତୁ ଏକ ଅନୁଷ୍ଠାନରେ ପରିଣତ କରିଛି ।

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ପରମ ସାଧକ, ନିରଳସ କର୍ମଯୋଗୀ, ଯଶସ୍ୱୀ, ଅନନ୍ୟ ପ୍ରତିଭାଧାରୀ, ଭାଷାତତ୍ତ୍ୱବିତ୍ ପ୍ରଫେସର ବାସୁଦେବ ସାହୁଙ୍କ ଅମର ଆତ୍ମା ପ୍ରତି ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ।

ଅଧ୍ୟାପିକା, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
କୁନ୍ତଳା କୁମାରୀ ସାବତ ମହାବିଦ୍ୟାଳୟ, ବାଲେଶ୍ୱର

# ବ୍ୟକ୍ତିତ୍ୱର ଗୋଟିଏ ପାର୍ଶ୍ୱ

**ଡଃ ପ୍ରସନ୍ନ କୁମାର ପଟ୍ଟନାୟକ**

ନିଜର ହେଉ ବା ପରର, ପିଲାଙ୍କୁ ମଣିଷ କରିବା ଥିଲା ଡକ୍ଟର ବାସୁଦେବ ସାହୁଙ୍କ ବ୍ୟକ୍ତିତ୍ୱର ଉଜ୍ଜ୍ୱଳତମ ପରିପାର୍ଶ୍ୱ । ଏ ସଂପର୍କରେ ବହୁ ଆତ୍ମସ୍ୱୀକାରୋକ୍ତି ତାଙ୍କ ସ୍ମୃତି ସଂକଳନରେ ରହିଛି । କିନ୍ତୁ ଏଠାରେ ଅନ୍ୟଗୋଟିଏ ପରିପାର୍ଶ୍ୱ ସଂପର୍କରେ କୁହାଯାଉଛି ।

ଅକସ୍‌ଫୋର୍ଡ୍‌ର ଅଧ୍ୟାପକ ବିଖ୍ୟାତ ଦାର୍ଶନିକ ପ୍ରଫେସର ଆର୍.ଜି.କଲିଙ୍ଗଉଡ୍ ତାଙ୍କର 'An Eassy on Metaphysics' ପୁସ୍ତକର ଅଗ୍ରଲେଖରେ କହିଛନ୍ତି- "The work of a Professor may not be very arduous but it is certainly not conjevial for writing a book." ଏକଥାଟି ଆପାତତଃ ଏକ ବିରୋଧାଭାସ ଭଳି ମନେହେଲେ ବି, ଏବଂ ଆମ ଦେଶରେ ଅଧ୍ୟାପକମାନେ ହିଁ ଅଧିକ ସଂଖ୍ୟାରେ ବହି ଲେଖୁଥିଲେ ବି, କଥାଟିର ସତ୍ୟତାକୁ ଅବମାନନା କରାଯାଇ ନପାରେ । ପ୍ରକୃତରେ ମୌଳିକ ପୁସ୍ତକଟିଏ ଲେଖିବା ପାଇଁ ଏକାନ୍ତ ଅନୁକୂଳ ନିକାଞ୍ଚନ ସମୟ ଏ ବର୍ଗର ଲୋକମାନେ କ୍ୱଚିତ୍ ପାଇଥାନ୍ତି । ଅଧ୍ୟାପକମାନଙ୍କର କର୍ମମୟ ଜୀବନ ଅଧିକାଂଶତଃ ପୀଡ଼ାଦାୟକ ଭାବେ କୋଳାହଳମୟ । ଅଧିକନ୍ତୁ ନିର୍ଦ୍ଧାରିତ ପାଠ୍ୟକ୍ରମର ଜାଲ ଭିତରେ ସର୍ବଦା ଏମାନଙ୍କୁ ଏପରି ଛନ୍ଦି ହୋଇ ରହିବାକୁ ହୁଏ ଯେ ସ୍ୱାଧୀନଭାବେ କୌଣସି ମୌଳିକ ଚିନ୍ତା ସହଜରେ ମୁଣ୍ଡ ଟେକି ପାରେ ନାହିଁ । ଶ୍ରେଣୀ ନିର୍ଘଣ୍ଟ, ପାଠ୍ୟକ୍ରମ ଓ କୋଳାହଳମୟ ପରିବେଷ୍ଟନୀ ଭିତରେ ରହିରହି ସମାଲୋଚନା-ସଂକଳନ-ସଂପାଦନା-ଗବେଷଣା ଭିତରେ ଏମାନଙ୍କର ସର୍ଜନଶୀଳତା ବିମର୍ଦ୍ଦିତ ହୋଇଯାଏ । ଏହାକୁ ଏକ ବିଡ଼ମ୍ବିତ ବଳିଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ବିଭୂଷିତ ଛାତ୍ର ହିସାବରେ ପ୍ରଫେସର ସାହୁଙ୍କୁ ତାଙ୍କର ଅଗଣିତ ବିବନ୍ଦିଷୁ ଛାତ୍ର ଜାଣନ୍ତି ଭାଷାତତ୍ତ୍ୱର ପ୍ରବୀଣ ଅଧ୍ୟାପକ ରୂପେ ଯଦିବା ସେ ଅନ୍ୟାନ୍ୟ କ୍ଷେତ୍ରରେ ନିଜ ବିଦ୍‌ବତ୍ତାର ସମଧିକ ସ୍ୱାକ୍ଷର ଛାଡ଼ିଯାଇଛନ୍ତି । 'ସାହିତ୍ୟିକ ଦିଗ୍‌ଦର୍ଶନ', 'ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ', 'ଓଡ଼ିଆ ସାହିତ୍ୟର ସୃଷ୍ଟି ସଂପଦ', 'ଆଧୁନିକ ସାହିତ୍ୟ ଭାଷ୍ୟ' ଏବଂ ସର୍ବୋପରି 'ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା' ସାହିତ୍ୟ ସମାଲୋଚକ ରୂପେ ତାଙ୍କ ଜ୍ଞାନ-ଗାରିମାର ପ୍ରମାଣ ପାଇଁ ଆଦୌ ଅପ୍ରତୁଳ ନହେଲେ ହେଁ ଭାଷାତତ୍ତ୍ୱ ସମ୍ବନ୍ଧୀୟ ପୁସ୍ତକ 'ଓଡ଼ିଆ ଭାଷାର ଉନ୍ମେଷ ଓ ବିକାଶ', 'ଓଡ଼ିଆ

ଭାଷା ବିଜ୍ଞାନର ରୂପରେଖ', 'ଭାଷା ବିଜ୍ଞାନ ଓ ଭାଷାବିଜ୍ଞାନୀ', 'ଓଡ଼ିଆ ଶବ୍ଦ ବ୍ୟୁତ୍ପତ୍ତି ବିଜ୍ଞାନ' ପ୍ରଭୃତି ପୁସ୍ତକ ବିଭାଗୀୟ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଅଧିକ ଗ୍ରାହ୍ୟ ହୋଇଛି । କାରଣ ଭାଷାତତ୍ତ୍ୱ ସମ୍ବନ୍ଧୀୟ ଲେଖକ ଆମ ରାଜ୍ୟରେ କେବଳ ନୁହନ୍ତି, ସାରା ଦେଶରେ ମଧ୍ୟ ଅତ୍ୟନ୍ତ ବିରଳ ଏବଂ ବିଭାଗୀୟ ଛାତ୍ରଛାତ୍ରୀମାନଙ୍କ ପାଇଁ ଏ କ୍ଷେତ୍ରରେ ବିକଳ୍ପ ପୁସ୍ତକ ବହୁତ ସୀମିତ । ଭାଷାତତ୍ତ୍ୱ ସମ୍ବନ୍ଧୀୟ ଏସବୁ ପୁସ୍ତକଗୁଡ଼ିକରୁ ନୋମ୍ ଚମ୍‌ସ୍‌କିଙ୍କ 'ଟ୍ରାନସ୍‌ଫରମେସନାଲ ଜେନେରେଟିଭ୍ ଗ୍ରାମାର୍' ଭଳି କିମ୍ବା ଉଇଟ୍‌ଗେନ୍ ଷ୍ଟାଇନଙ୍କ 'ଲିଙ୍ଗୁଇଷ୍ଟିକ୍ ଫିଲୋସଫି' ପରି ବିଶ୍ୱବିଶ୍ରୁତ ଆଲୋଡ଼ନ ସୃଷ୍ଟିକାରୀ ତତ୍ତ୍ୱ ପ୍ରତ୍ୟାଶିତ ନୁହେଁ ଯେହେତୁ ମୂଳତଃ ଏ ଗ୍ରନ୍ଥଗୁଡ଼ିକ ପାରଂପାରିକ ଭାଷାତତ୍ତ୍ୱ ଉପରେ ଆଧାରିତ ଏବଂ ଛାତ୍ରଛାତ୍ରୀମାନଙ୍କ ସୀମିତ ଆବଶ୍ୟକତା ପରିପୂର୍ତ୍ତି ଉଦ୍ଦେଶ୍ୟରେ ଲିଖିତ । ସେହିପରି 'ଅଳଙ୍କାରତତ୍ତ୍ୱ' ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଓ ଘର ସଂସାର', 'ଓଡ଼ିଆ ସାହିତ୍ୟରେ ଧର୍ମୀୟ ପରଂପରା' ପ୍ରଭୃତିରେ ଏହି ଉଦ୍ଦେଶ୍ୟ ହିଁ ଆମୂଳାନ୍ତ ଅଭିପ୍ରେତ । ପାଠ୍ୟପୁସ୍ତକ ଲେଖିବା ଏକ ଗୌଣକାର୍ଯ୍ୟ ନୁହେଁ । ବରଂ ଉପଯୁକ୍ତ ବୋଧଶକ୍ତି ଓ ସ୍ୱଚ୍ଛତର ଧାରଣା ନଥିଲେ ସଫଳ ପାଠ୍ୟପୁସ୍ତକ ଲେଖକ ହେବା ସମ୍ଭବପର ନୁହେଁ । ଡକ୍ଟର ସାହୁଙ୍କ ପୁସ୍ତକଗୁଡ଼ିକ ଏ ଦୃଷ୍ଟିରୁ ଅତ୍ୟନ୍ତ ଅଭିନନ୍ଦନୀୟ ନିଶ୍ଚୟ । କିନ୍ତୁ ଆମେ ଯେତେବେଳେ ଦେଖୁ ଯେ ଆମ ରାଜ୍ୟର ବିଖ୍ୟାତତମ ବିଶ୍ୱବିଦ୍ୟାଳୟର ଜଣେ ଖ୍ୟାତନାମା ପ୍ରଫେସର 'ମୋ ସାହିତ୍ୟ', 'ଆମ ପାଠବହି' ପରି ପ୍ରାଥମିକ ବିଦ୍ୟାଳୟର ପାଠ୍ୟପୁସ୍ତକ ରଚନା ସହିତ ମଧ୍ୟ ସଂପୃକ୍ତ-ପ୍ରତିଭାର ଯେ ଏହା ଯଥାଯୋଗ୍ୟ ଉପଯୋଗ, ଏଥିନେଇ ମନରେ ସନ୍ଦେହ ଦେଖାଦିଏ । ଆମେ ହୁଏତ ଯୁକ୍ତି କରିବା ଯେ ରାଧାନାଥ-ମଧୁସୂଦନ-ଫକୀରମୋହନ ମଧ୍ୟ ଅନୁରୂପ ପାଠ୍ୟପୁସ୍ତକ ରଚନାରେ ବହୁ ସମୟ ଓ ଶ୍ରମ ବିନିଯୋଗ କରିଥିଲେ । କିନ୍ତୁ ଏକଥା ମଧ୍ୟ ସତ୍ୟ ଯେ ସେମାନେ ନିଜର ସର୍ଜନାତ୍ମକ ଶକ୍ତିର ସୁସ୍ଥ ବିକାଶ ପାଇଁ ମଧ କମ୍ ଉଦ୍ୟମ କରିନଥିଲେ । ପାଠ୍ୟପୁସ୍ତକ ପାଇଁ ନୁହେଁ, ସେମାନେ ଚିରସ୍ମରଣୀୟ ହୋଇପାରିଛନ୍ତି କାବ୍ୟ-କବିତା-ଗଳ୍ପ-ଉପନ୍ୟାସ ଇତ୍ୟାଦି ସର୍ଜନାତ୍ମକ ଲେଖା ପାଇଁ ।

ସର୍ଜନାତ୍ମକ ଶକ୍ତିର ଅପମୃତ୍ୟୁ ଜନିତ ଆକୁଳତା ଯେ ଡକ୍ଟର ସାହୁଙ୍କୁ ସନ୍ତାପିତ କରୁଥିଲା-ଏହା ବାହ୍ୟତଃ ପ୍ରକାଶ ନପାଇଲେ ମଧ୍ୟ, ସେ ଆଦ୍ୟ ଅର୍ଘ୍ୟ ହିସାବରେ ଅର୍ପଣ କରିଥିବା 'ସଂବିତ୍' ଏବଂ ସମୟ ସମୟରେ ପତ୍ରପତ୍ରିକାରେ ପ୍ରକାଶ ପାଇଥିବା କେତେକ କବିତା, 'ନଈ ସେପାରି ଗାଁ', 'ସର୍ବନାମ'; କେତେକ ଗଳ୍ପ-'ଭାବକୁ ନିକଟ ଅଭାବେ ଅଭେଟ', 'ଜ୍ୱଳନରୁ ପୁନର୍ଜନ୍ମ' ପ୍ରଭୃତି ତାହା ଅବଶ୍ୟ ପ୍ରତିପାଦନ କରିଥାଏ ।

ଗବେଷଣା କ୍ଷେତ୍ରରେ ଦିଗ୍‌ଦର୍ଶନ ଦେବା ଏବଂ ନିଜେ ଗବେଷଣା କରିବା- ଏ ଉଭୟ କ୍ଷେତ୍ରରେ ପରିମାଣାତ୍ମକ ଭାବେ ତାଙ୍କ ସିଦ୍ଧି ଅତୁଳନୀୟ । 'Descriptive

Catalogue of 'Oriya Manuscript' (vol-I & II) ଆମର ଓଡ଼ିଆ ସାହିତ୍ୟର ଇତିହାସ ପୁନର୍ଲିଖନ ପାଇଁ ପ୍ରଚୋଦନା ସୃଷ୍ଟି କଲାଭଳି ଏକ ଅତି ଉପାଦେୟ ଗ୍ରନ୍ଥ ଏବଂ ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା ନିଜସ୍ୱ ଗୁଣରେ ଭାସ୍ୱର । ଚଣ୍ଡୀପୁରାଣ, ମଥୁରାମଙ୍ଗଳ, ସୁଲକ୍ଷଣା ପ୍ରଭୃତି ସଂପାଦନା କରି ସେ ସଂପାଦନା କ୍ଷେତ୍ରରେ ନିଜ ଦକ୍ଷତାର ପରିଚୟ ଦେଇଛନ୍ତି । ସେହିପରି ପ୍ରବନ୍ଧ ସମାରୋହ, ପାରିଜାତକ, ପ୍ରଦୀପଶିଖା ଇତ୍ୟାଦି ସଂକଳନ-ଦକ୍ଷତାର ପରିଚାୟକ । ବିଶ୍ୱବିଦ୍ୟାଳୟସ୍ତରର ଜଣେ ଶିକ୍ଷକ ଭାବରେ ସେ ଥିଲେ ସର୍ବଗୁଣ ସଂପନ୍ନ ଏବଂ ଅଧ୍ୟାପନାର ସମସ୍ତ ପାର୍ଶ୍ୱ ତାଙ୍କର ନିଜ କୃତିତ୍ୱର ପରିପୂର୍ଣ୍ଣ । ତାଙ୍କ ଛାତ୍ର ବୋଲି ନିଜକୁ ପରିଚିତ କରାଇବାରେ ଯେ କେହି ଗର୍ବ ଅନୁଭବ କରିବ ।



ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ
ଖଲ୍ଲିକୋଟ କଲେଜ, ବ୍ରହ୍ମପୁର

# ଆଦ୍ୟ ଅନୁଭବ

ଡଃ ରମାକାନ୍ତ ବେହେରା

ଲିଙ୍ଗରାଜଙ୍କୁ ଆଣ୍ଠୁମାଡ଼ି ପ୍ରଣାମ କରି ଉଠିଲା ବେଳକୁ ଦେଖିଲି ମୋ ପାଖରେ ଜଣେ ଭଦ୍ରଲୋକ ସାଷ୍ଟାଙ୍ଗ ପ୍ରଣାମ କରୁଛନ୍ତି । ମୁଁ ତାଙ୍କୁ କୌତୂହଳରେ ଅନାଇଲି । ଚିହ୍ନାଚିହ୍ନା ଲାଗୁଛନ୍ତି, କେବେ କେଉଁଠି ଦେଖିଛି ହେଜି ପାରିଲି ନାହିଁ । ଭଦ୍ରଲୋକ କିଛି ମିନିଟ୍ ପରେ ଝାଡ଼ିଝୁଡ଼ି ଉଠିଲେ, ଅତ୍ୟନ୍ତ ନମ୍ର ଭାବେ ପୂଜକଙ୍କୁ ପ୍ରଣାମ କରି ମୁଣ୍ଡରେ ଚନ୍ଦନଟୀକା ଘେନିଲେ । ହାତରେ ତାଙ୍କର ସୁଦୃଶ୍ୟ ବନ୍ଧେଇ ବହିଟେ ଥାଏ, ମୁଁ ଭରସି କଥା ହୋଇପାରୁ ନଥାଏଁ ।

ନିଜ ମୁହଁରେ ନିଜର ପରିଚୟ ଦେଇ ଉପରେ ପଡ଼ି କଥା ହେଲେ ସେ କ'ଣ ଭାବିପାରନ୍ତି-ଅପରିଚିତ ତ ! କିନ୍ତୁ ଆଗ୍ରହ ଥାଏ । ମନ୍ଦିରକୁ ବହି ଧରି ବା କିଏ ଆସିବ, ନିଶ୍ଚୟ କେହି ବିଦ୍ୱାନ ହୋଇଥିବେ ।

ସଂଶୟ କ୍ରମେ ସ୍ପଷ୍ଟ ହେଲା, ସ୍ମୃତିରେ ଧରା ଦେବା ନଦେବା ଅବସ୍ଥାରେ ମନେପଡ଼ିଲା ପରୀକ୍ଷାବେଳର କଥା । ପ୍ରାୟ ବର୍ଷକ ତଳେ ଏମ୍.ଏ. ପରୀକ୍ଷା ଦେଲାବେଳେ ଏହାଙ୍କୁ ବାଣୀବିହାରରେ ଦେଖିଛି-ସେତେବେଳେ ପରୀକ୍ଷା ହଲ୍‌ରେ ନିବିଷ୍ଟ ମନରେ ଲେଖୁଥାଏଁ, ଶେଷପତ୍ର, ଶେଷ ପ୍ରଶ୍ନର ଉତ୍ତର ତରବରରେ ଲେଖୁଥାଏ, ଶେଷଘଣ୍ଟା ବାଜିବାକୁ ଅଳ୍ପ ବାକି, ପୂର୍ଣ୍ଣଚ୍ଛେଦ ଟାଣି ଖାତା ବନ୍ଧାବେଳକୁ ହଠାତ୍ କାନ୍ଧରେ କାହାର ମୃଦୁ ସ୍ପର୍ଶ ପାଇ ଚମକି ପଡ଼ିଲି- କାନରେ ସ୍ନେହଭରା ସାବାସି ଧ୍ୱନି ଶୁଣିଲି-'ବେଶ୍ ବେଶ୍ ଭଲ ଲେଖୁଛି ।'

ଘୂରି ପଡ଼ି ଦେଖିଲି ମୁହଁରେ ସ୍ମିତହସ ଖେଳାଇ ପରୀକ୍ଷା ପରିଚାଳକ (ଇନଭିଜିଲେଟର୍) ମହୋଦୟ ପିଠି ଥାପୁଡ଼ାଇ ଯାଉଛନ୍ତି, ମୋ ଶରୀର ରୋମାଞ୍ଚିତ ହେଲା । ସାର୍ ବେଶ୍ ସ୍ୱାସ୍ଥ୍ୟବାନ, ଠିକ୍ ଜଗନ୍ନାଥଙ୍କ ଭଳି ପୂରିଲା ପୂରିଲା ମୁହଁ । ମୋ ଅଜାଣାରେ ହୁଏତ କିଛି ସମୟ ପଛରୁ ଉତ୍ତରଟି ଉପରେ ଆଖିବୁଲେଇ ନେଇଥିବେ !

ସେ ସମୟରେ ଅବକାଶ ନଥିଲା ପରିଚୟ ପାଇଁ । ପଞ୍ଚମ ବର୍ଷ ଓଡ଼ିଆ ଏମ୍.ଏ. ପଢୁଥିବା ରମାକାନ୍ତ ଭଞ୍ଜ ସାର୍‌ଙ୍କ ଅତି ପ୍ରିୟ ଛାତ୍ର ଥିବାରୁ ସେ ମୋତେ ସାର୍‌ଙ୍କ ପୂର୍ଣ୍ଣ ପରିଚୟ ଦେଇଥିଲେ ।

ଏ ହେଉଛନ୍ତି ସେଇ ପରମ ବିଦ୍ୱାନ ଛାତ୍ର ପ୍ରିୟ ପ୍ରଫେସର- ବାସୁ ସାର୍ !

ସାର୍ ମନ୍ଦିରରୁ ବାହାରୁଥିଲେ, ମୁଁ ହଠାତ୍ କ୍ଷିପ୍ର ପଦରେ ଆଗେଇ ଆସି ନମ୍ର ପ୍ରଣତି ଜଣାଇଲି । ସେ ବିସ୍ମୟରେ ଅଟକି ଯାଇ ଚାହିଁ ରହିଲେ ମୁଁ ମୋର ପରିଚୟ ଦେଇ ପରୀକ୍ଷା ସମୟରେ ତାଙ୍କର ସେ ଅଯାଚିତ ଆଶୀର୍ବାଦ ଘଟଣା ସ୍ମରଣ କଲି- ସେ ମନେପକାଇଲା ଭଳି ହସି ହସି କହିଲେ-'ହଁ, ତମକଥା ଶୁଣିଛି ରମାକାନ୍ତଠାରୁ, ତମ ଉପାନ୍ୟାସ ମଧ ପଢ଼ିଛି, ତମ ଜୀବନ ଖୁବ୍ ସଂଘର୍ଷମୟ-ଥକିପଡ଼ନା-ଆଗେଇଚାଲ ।''

ତାଙ୍କର ଏଇ 'ଆଗେଇ ଚାଲ' ମଧ୍ୟରେ ଆର୍ଷ ଆଶିଷ 'ଚରୈବେତୀ' ର ଧ୍ୱନି ମୁଁ ଅନୁଭବ କଲି ଏବଂ ଅଜ୍ଞାତରେ ମୁଁ ଯେମିତି ସେଇ ଇଙ୍ଗିତରେ ଚାଳିତ ହେଲି । କିଏ ଜାଣିଥିଲା ତାଙ୍କର ଏଇ ପଦକ ମୋ ଜୀବନରେ ଉତ୍‌ଥାନର ଦିଶାଦର୍ଶନ କରାଇବ ?

ସେ ଆଗେଇ ଯାଉଥିଲେ-ମୁଁ ତାଙ୍କ ସହ ତାଳଦେଇ ସମ୍ବୋଧନ କଲି-'ସାର୍ !'

ସେ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁ କହିଉଠିଲେ-'ଓଃ ମୁଁ କୁଆଡ଼େ ଯିବି ପଚାରୁଛ ? ଆଗରେ ଏକାମ୍ର ନିବାସ-ଓଡ଼ିଶାର ଭାଗ୍ୟ ନିର୍ମାତାଙ୍କୁ/ଭେଟିବି-ତାଙ୍କୁ ଏ ବହିଟି ଉପହାର ଦେବି, ଯିବ ?'

ଆଧୁନିକ ଓଡ଼ିଶାର ଭାଗ୍ୟ ନିର୍ମାତା-ଅର୍ଥାତ୍ ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କୁ ଭେଟିବେ ! ମୁହୂର୍ତ୍ତ ମଧ୍ୟରେ ମୋ ଦେହ ଶିହରୀ ଉଠିଲା, ଆଦ୍ୟ ଯୌବନରେ ଦୁଇ ଦଶକ ତଳେ ଯାହାଙ୍କ ଆଲିଙ୍ଗନ... ନା ଥାଉ-ସେ ଭିନ୍ନ ପ୍ରସଙ୍ଗ-ମୁଁ ହଁ ଭରିଲି ଏବଂ ବଡ଼ ସଂକୋଚରେ ତାଙ୍କ ସହଯାତ୍ରୀ ହେଲି ।

ଏକାନ୍ତ ଅଭାବିତ ଏ ସାକ୍ଷାତ, ଏ ସୌଜନ୍ୟ, ଜୀବନରେ ଏହିଭଳି ବେଳେବେଳେ କିଛି ଘଟେ ଯା'ର ପରିଣତ ଶୁଭଙ୍କର ସ୍ମୃତିର ଆଲେଖ୍ୟ ହୋଇ ପରବର୍ତ୍ତୀ ସମୟକୁ/ ଆହ୍ଲାଦ ଦିଏ । କିଏ ଜାଣିଥିଲା-ଓଡ଼ିଶାର ଭାଗ୍ୟବିଧାତା ମୋର ବି ଭାଗ୍ୟ ବିଧାତା ହେବେ ଏବଂ ସେ ଯେ ସାଂପ୍ରତିକ ଓଡ଼ିଶାର ଦେହ ଆତ୍ମାର ଭାଗ୍ୟନିର୍ମାତା ତାହା ମୋ ଲେଖନୀରେ ସାବ୍ୟସ୍ତ ହେବ ? ଅନ୍ତତଃ ଏଇ ସାକ୍ଷାତ ହେବ ତାର ହେତୁ ?

ମୋ ଜୀବନରେ ଡଃ ସାହୁଙ୍କ ସହ ଏ ଆକସ୍ମିକ ସାକ୍ଷାତ ସେଇ ଆନନ୍ଦମୟ ସ୍ମୃତିରେ ଉଜ୍ଜ୍ୱଳ !

ସେଦିନ ଡଃ ମହତାବଙ୍କ ସହ ସାକ୍ଷାତର ବୃତ୍ତାନ୍ତ ବଖାଣୁ ନାହିଁ, ତାହା ଭିନ୍ନ ପ୍ରସଙ୍ଗ, କିନ୍ତୁ ସେଦିନର ସେଇ ଅଭାବିତ ସାକ୍ଷାତ ସୌଭାଗ୍ୟର ଫଳଶ୍ରୁତି ହେଲା-ମହତାବଙ୍କ ସାହିତ୍ୟକୃତି ଉପରେ ମୋର ପରବର୍ତ୍ତୀ ଗବେଷଣା ଏବଂ ଡଃ ସାହୁଙ୍କୁ ସେ ଗବେଷଣାର ନିର୍ଦ୍ଦେଶକ ଭାବେ ତାଙ୍କର ମହାନ ବ୍ୟକ୍ତିତ୍ୱର ନିବିଡ଼ ସାନ୍ନିଧ ଲାଭ !

ଅବଶ୍ୟ ସେଦିନ ମୁଁ ସାର୍‌ଙ୍କୁ ବଡ଼ ଅଶ୍ୱସ୍ତିକର ପରିସ୍ଥିତିରେ ପକାଇଲି, ସେ ତାଙ୍କ ଜୀବନର ଶେଷକୃତି ତଥା ଆମ ସାହିତ୍ୟର ଅନ୍ୟତମ ମହାନ କୀର୍ତ୍ତିଟିକୁ ଉପହାର ଦେବାକୁ

ଯାଇଥିଲେ, ବହିଟିର ନାମ 'ଶ୍ରୀଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ'- ଏକ ମହାନ ସୃଷ୍ଟି ଯେଉଁମାନେ ପଢ଼ିଛନ୍ତି ନିଶ୍ଚୟ ଅନୁଭବ କରିବେ ସହଜରେ ଏଭଳି କୃତି ସମ୍ଭବ ନୁହେଁ, ଦୀର୍ଘ ଗବେଷଣା ଗଭୀର ନିଷ୍ଠା, ଭକ୍ତିପୂତ ସାଧନା ତଥା ଖୋଦ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦ ଥିଲେ ଏମଳି ମହାନ ଗ୍ରନ୍ଥର ରଚନା ସମ୍ଭବ ହୁଏ । ଡଃ ସାହୁ ଏକାନ୍ତର ସାନ୍ନିଧ୍ୟରେ ଏ ନେଇ ତାଙ୍କର ଦୁର୍ଲ୍ଲଭ ଅନୁଭୂତି ବର୍ଣ୍ଣିଥାନ୍ତେ । ଡଃ ମହତାବ ମଧ୍ୟ ଶ୍ରୀ ଜଗନ୍ନାଥ ତତ୍ତ୍ୱର ଆଦ୍ୟ ଗବେଷକ, ସେ ବି ଏଭଳି ଏକ ଐତିହାସିକ ଏବଂ ପୌରାଣିକ ତତ୍ତ୍ୱ ଓ ତଥ୍ୟ ଉପରେ ବିଶେଷ ଆଲୋକପାତ କରିଥାନ୍ତେ, କିନ୍ତୁ ସେଦିନର ମୋର ଏ ଅନାକାଂକ୍ଷିତ ଉପସ୍ଥିତି ଏ ସମସ୍ତ ସମ୍ଭାବନାକୁ ବିଗାଡ଼ି ଦେଲା, ପରିସ୍ଥିତି ଏମିତି ହେଲା ଯେ ସାର୍‌ଙ୍କ ମନର କଥା ଅକୁହା ରହିଲା, ସେ ହେଲେ କେବଳ ଜଣେ ନୀରବ ଶ୍ରୋତା, ଆଲୋଚନାର ମୋଡ଼ ବଦଳି ଗଲା, ଡଃ ମହତାବ ଏମିତି ପ୍ରସଙ୍ଗ ଉତ୍‌ଥାପନ କଲେ ଯେ ଡଃ ସାହୁ ମୁହଁ ଖୋଲିବାକୁ ସୁଯୋଗ ପାଇଲେ ନାହିଁ ।

ଏଭଳି ଘଟିବ ସେ ଭାବି ନଥିଲେ କି ମୁଁ ବି ଭାବି ନଥିଲି । କିନ୍ତୁ ମୋରି ପାଇଁ ପ୍ରସଙ୍ଗ ଭିନ୍ନ ମୋଡ଼ ନେଲା । ସାର୍ ଯେ ଏ ପାଇଁ ମନରେ ଆଘାତ ପାଇଛନ୍ତି ଏହା ମୁଁ ବେଶ୍ ଅନୁଭବ କଲି । ସେ ହୁଏତ ଭାବିଥିବେ ମୁଁ ଅଭିସନ୍ଧି ରଖି ତଥା ମୋ ଉଦ୍ଦେଶ୍ୟକୁ ଗୋପନ ରଖି ତାଙ୍କ ସହ ସାଥୀ ହୋଇଥିଲି । ଏହା ଭାବିବା ସ୍ୱାଭାବିକ, ମୁଁ ନିଜକୁ ଅପରାଧି ଅପରାଧୀ ବୋଧ କଲି । ମାତ୍ର ଏସବୁତ ଅପ୍ରତ୍ୟାଶିତ ଭାବେ ଘଟିଗଲା, ମୁଁ ଭାଷା ପାଉନଥାଏଁ, କ'ଣ କହି, କିପରି କହି ସାର୍‌ଙ୍କ ମନର ବ୍ୟଥା ଦୂର କରିବି ।-ମାତ୍ର ସାର୍‌ଙ୍କ ହୃଦୟ ଉଦାର, ନିଜ ପାଇଁ ବ୍ୟଥିତ ନହୋଇ ସେ ମୋ ପାଇଁ ବ୍ୟସ୍ତ ହୋଇଉଠିଲେ । ବାହାରକୁ ଆସି କିଛି ସମୟ ବଙ୍ଗଳାରେ ବସିଗଲେ । ମୋତେ ଶାନ୍ତଭାବେ ବୁଝାଇଲେ- 'ରମାକାନ୍ତ-ଡଃ ମହତାବଙ୍କ ସାହିତ୍ୟ ସାଧନା ଉପରେ ଗବେଷଣା କ'ଣ ସହଜ କଥା, କେତେ ପ୍ରତିଷ୍ଠିତ ଲେଖକ, ଗବେଷକ, ପ୍ରଫେସର ନାହାନ୍ତି କଟକ, ଭୁବନେଶ୍ୱର-ସେମାନେ କ'ଣ କରିପାରନ୍ତେ ନାହିଁ ? ଜୀବନ୍ତ ପ୍ରତିଭା ଉପରେ ଓଡ଼ିଶାରେ ଏଯାଏଁ ଗବେଷଣା ହୋଇନାହିଁ-ବିଶେଷତଃ ମହତାବଙ୍କ ଉପରେ କରିବା ଖଣ୍ଡାଧାରରେ ଚାଲିବା କଥା, ଲେଖା ଅତି ଉଚ୍ଚମାନର ହେବା ଚାହି ତାଙ୍କ ସାହିତ୍ୟ ଉପରେ କୌଣସି ଆଲୋଚନା ବା ସମୀକ୍ଷା ଗ୍ରନ୍ଥ ନାହିଁ, ଅମଡ଼ା ବାଟରେ ଚାଲିବ, ବୃଥା ପ୍ରଶଂସା କଲେ ଖୋସାମଦ ଅପବାଦ ପାଇବ, ଖୋଦ୍ ମହତାବ ବି ନାକ ଟେକିବେ, ଆଉ କିଛି ନିରପେକ୍ଷ ପ୍ରତିକୂଳ ମନ୍ତବ୍ୟ ଦେଲ ତ କହିବେ ବଡ଼ ପଣ୍ଡିତଟା, ମହତାବଙ୍କୁ ଖୁଣୁଛି ! ଏସବୁ ମୁଣ୍ଡରେ ରଖି ତୁମକୁ ସଂକଳ୍ପ ନେବାକୁ ହେବ । ତୁମ ପ୍ରବନ୍ଧ ବା ଆଲୋଚନା ମୂଳକ ଲେଖା ନେଇ ମୋର କିଛି ଧାରଣା ନାହିଁ । କାମଟା ହାଲୁକା ହେଲେ ତ ତମେ ବିଫଳ ହେବ-ଡଃ ମହତାବ ବି କ୍ଷୁବ୍ଧ ହେବେ...

ସାର୍ କହୁଥିବାବେଳେ ମୁଁ ଭାବୁଥାଏଁ, ସାର୍‌ଙ୍କ କଥା ଠିକ୍. ସାର୍‌ଙ୍କ ସାଙ୍ଗରେ ଯାଇ ଏଭଳି ସିଦ୍ଧାନ୍ତ ନେବା ଏକ କାକତାଳୀୟ ଘଟଣା ବୋଲି କିଏ ଭାବିବ ? ବିଶେଷତଃ ଡଃ ମହତାବ ଓ ସାହୁଙ୍କୁ ହିଁ ଦାୟୀ କରିବେ । ତାଙ୍କ ଭଳି ପ୍ରଚଣ୍ଡ ପ୍ରଭାବଶାଳୀ ପ୍ରତିଭା ଉପରେ ତତୁଲ୍ୟ ଖ୍ୟାତିମାନ ଲେଖକଙ୍କ ଲେଖନୀର ସିନା ଦମ୍ଭ ଅଛି ଲେଖିବେ, ନିନ୍ଦା ପ୍ରଶଂସା ସବୁ ଗୌରବାବହ-ମାତ୍ର ଲେଖନୀର କ'ଣ ସେ ଶକ୍ତି ଅଛି ? ମୋତେ ସାର୍ କେତେ ମାତ୍ର ବା ଜାଣିଛନ୍ତି, ଜଣେ ଅଖ୍ୟାତନାମାଙ୍କ ପାଇଁ ସାର୍ ବା କାହିଁକି ରିସ୍କ ନେବେ !

ମୁଁ ନମ୍ରଭାବେ କହିଲି- ମୁଁ ଦୁଃଖିତ, ଆପଣଙ୍କୁ ଅଯଥାରେ ଯନ୍ତ୍ରଣା ଦେଲି, ମାଫ୍ କରନ୍ତୁ ସାର୍, କଥା ଏମିତି ଆଗେଇବ ମୁଁ ଜାଣି ନଥିଲି-ପଙ୍ଗୁର ପାହାଡ଼ ଚଢ଼ା ସ୍ୱପ୍ନ ଏତିକିରେ ଥାଉ, ମୁଁ ବରଂ ଅନ୍ୟ କେଉଁ ବିଷୟ...

ମୋ କଥା ସରିବା ପୂର୍ବରୁ ସେ କହିଉଠିଲେ-

-ଛିଃ, ଏ କ'ଣ କହୁଛ ? 'ମନ୍ତ୍ରର ସାଧନ ଅବା ଶରୀର ପାତନ'- କ'ଣ ମନେ ନାହିଁ ? ଗୀତାରେ ଭଗବାନ କ'ଣ କହିନାହାନ୍ତି-'ନ ହୀନସ୍ତି ଆତ୍ମନାତ୍ମାନମ୍ ତତୋଯାତି ପରାଂପଗତିମ୍ ? (୧୩/୨୮) ନିଜକୁ ନିଜେ ହୀନ ନଭାବି କର୍ତ୍ତବ୍ୟ ସଂପାଦନ କର- ପରମ ସିଦ୍ଧି ପ୍ରାପ୍ତ ହେବ- ମାତ୍ର କୋଡ଼ିଏ ବର୍ଷ ବୟସରେ ତ ସେଭଳି ଉପନ୍ୟାସ ଲେଖିଛି-କେଉଁ ଲେଖକଙ୍କ ଏଇ ବୟସର ପ୍ରଥମ କୃତି ଏଭଳି ମୁଁ ତ ଜାଣେନା ? ନିଜକୁ ଦୁର୍ବଳ କାହିଁକି ଭାବୁଛ ? ଟେକ୍ ଇଟ୍ ଏଜ୍ ଏ ଚାଲେଞ୍ଜ...ତୁମେ ପାରିବ...'

ରାମାୟଣରେ ଜାମ୍ବମାନଙ୍କ ଦ୍ୱାରା ବିଷର୍ଣ୍ଣ ହନୁମାନଙ୍କ ସୁପ୍ତ ଆତ୍ମଶକ୍ତି ଜାଗ୍ରତ ହୋଇଥିଲା, ସେ ଅକ୍ଲେଶରେ ସମୁଦ୍ର ଲଂଘନ କରିଥିଲେ । ସେଇ ଦୃଶ୍ୟ କ୍ଷଣକରେ ମୋ ଆଖିରେ ଭାସିଉଠିଲା-ସାର୍‌ଙ୍କ କଣ୍ଠରେ ସେଇ ସ୍ୱର, ସେଇ ଚେତାବନି-ପ୍ରଜ୍ଞାବନ୍ତ ସାର୍ ସିନା ଜାମ୍ବବାନ ହୋଇପାରିବେ-ମାତ୍ରେ ମୁଁ ତ ହନୁମାନ ନୁହେଁ !

କିନ୍ତୁ ମୁଁ ଶୁଣିଛି-ସାର୍‌ଙ୍କ ଦିଗ୍‌ଦର୍ଶନରେ ଅନେକ ଗବେଷକ ଅସାଧ ସାଧିଛନ୍ତି- ମୁଁ ସାର୍‌ଙ୍କ ପଦଧୂଳି ମୁଣ୍ଡରେ ମାରିଲି...

ତା'ପର କଥା ଲେଖୁ ନାହିଁ, 'ସାହିତ୍ୟ-ସାଧକ-ମହତାବ' ସୃଷ୍ଟିର ସମସ୍ତ ଶ୍ରେୟ ସାର୍‌ଙ୍କର ମୁଁ ନିମିତ୍ତ ମାତ୍ର-ଆଜି ମହତାବ ନାହାନ୍ତି, ସାର୍ ବି ନାହାନ୍ତି- ମାତ୍ର ଏବେ ବି ମୋ ଭିତରେ ସେହି ସ୍ନେହ ସିଞ୍ଚିତ ମୃଦୁକଣ୍ଠ ଅଥଚ ବଜ୍ରବାଣୀ ଉଦ୍‌ଥାନର ପାଞ୍ଚଜନ୍ୟ ଝଙ୍କୃତ କରେ ।

ସାଧନାଳୟ, ବିକାଶ ନଗର
ବାଲେଶ୍ୱର

# ଅଭୁଲା ସ୍ମୃତିରୁ ଖିଅଟିଏ

ରମାକାନ୍ତ ଭଞ୍ଜ

ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ସ୍ନାତକୋତ୍ତର ବିଭାଗର ଅବସରପ୍ରାପ୍ତ ପ୍ରଫେସର ଡଃ ବାସୁଦେବ ସାହୁ ଆଉ ଇହଜଗତରେ ନାହାନ୍ତି ଶୁଣିଲାକ୍ଷଣି ମୁଁ ବିଶ୍ୱାସ କରିପାରିଲି ନାହିଁ । ସେଭଳି ଦରଦୀ, ସ୍ନେହୀ ମଣିଷକୁ ଏତେ କମ୍ ବୟସରେ ଭଗବାନ ନେଇଯିବେ-ମୁଁ କେବେ ସ୍ୱପ୍ନରେ ଭାବି ନଥିଲି । ସମସ୍ତଙ୍କୁ ନିଜର କରିବାର ଅଦ୍ଭୁତ ଶକ୍ତି ତାଙ୍କ ପାଖରେ ଥିଲା । ଅଧ୍ୟାପକ ହୁଅନ୍ତୁ, ଛାତ୍ର ହୁଅନ୍ତୁ ବା ବିଶ୍ୱବିଦ୍ୟାଳୟର ଅଧସ୍ତନ କର୍ମଚାରୀ ହୁଅନ୍ତୁ, ସମସ୍ତେ ତାଙ୍କୁ ନିଜର ବୋଲି ଭାବୁଥିଲେ । ତାଙ୍କଠାରେ ଗୋଟିଏ ପ୍ରକାର ମନ୍ତ୍ରଥିଲା-ଯାହା ସମସ୍ତଙ୍କୁ ମୁଗ୍ଧ କରିପାରୁଥିଲେ । ସୁଦୂର ପୁନାରେ ପ୍ରବଳ ବର୍ଷା ବନ୍ୟାରେ ଜୁଲାଇମାସରେ ହସ୍‌ପିଟାଲରେ ଅନ୍ୟପାରିକୁ କାହାରିକୁ ଦେଖା ନଦେଇ ଚାଲିଗଲେ । ଅନେକ ଲୋକ ଏହା ବିଶ୍ୱାସ କରିପାରିଲେ ନାହିଁ । ସତେ ଯେପରି ସବୁ ଲୋକ ଉପରେ ଅଭିମାନ କରି ବିମାନରେ ସୁଦୂର ପୁନାକୁ ଚାଲିଗଲେ-ଆଉ ଫେରିଲେ ନାହିଁ । ଆପଣଙ୍କର ମୃତ୍ୟୁ ହୋଇପାରିବ ନାହିଁ । କାଳ ଆପଣଙ୍କୁ ଆପଣଙ୍କ କୃତୀ ପାଇଁ କାଳଜୟୀ କରି ରଖିବ । ଆପଣ ବଞ୍ଚି ରହିଥିବେ ଅସଂଖ୍ୟ ଛାତ୍ରଛାତ୍ରୀଙ୍କ ହୃଦୟ ଭିତରେ ଆପଣ ବଞ୍ଚି ରହିଥିବେ ବାଣୀବିହାରର ଓଡ଼ିଆ ବିଭାଗର ପ୍ରତିଟି ଧୂଳିକଣାରେ । ଆପଣଙ୍କ ସ୍ନେହ ଓ ସଦିଚ୍ଛାର ଆଶୀର୍ବାଦର ବାରିଧାରା ଅଗଣିତ ଛାତ୍ର ଛାତ୍ରୀଙ୍କ ଜୀବନକୁ ସିକ୍ତ କରୁଥିବା ରାଜ୍ୟର ଶିକ୍ଷା କ୍ଷେତ୍ରରେ ତାଙ୍କର ପଦଚିହ୍ନ ଛାଡ଼ି ଯାଇଛନ୍ତି । ତାଙ୍କର ମୃତ୍ୟୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ବିରାଟ ଶୂନ୍ୟତା ସୃଷ୍ଟି କରିଛି । ସେ ଜଣେ ସୁଶିକ୍ଷକ, ସୁବକ୍ତା, ସୁଲେଖକ, ସର୍ବୋପରି ଜଣେ ଭଲ ଦରଦୀ ମଣିଷ ।

ତାଙ୍କର ଜନ୍ମ ନୟାଗଡ଼ ଜିଲ୍ଲାର ଓଡ଼ଗାଁ ନିକଟବର୍ତ୍ତୀ ରଙ୍ଗଣୀ ପାଟଣା ଗ୍ରାମରେ ୧୯୩୯ ମସିହାରେ ଏକ ଦରିଦ୍ର ପରିବାରରେ । ଦାରିଦ୍ର୍ୟର କଷାଘାତରେ ଜର୍ଜରିତ ହୋଇ ଶୁଦ୍ଧ ସୁବର୍ଣ୍ଣ ପରି ପ୍ରତୀୟମାନ ହୋଇଥିଲେ । ପ୍ରଥମ ଶ୍ରେଣୀରେ ମାଟ୍ରିକ୍ୟୁଲେଶନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଆଇ.ଏସ୍.ସିରେ ପ୍ରଥମ ଶ୍ରେଣୀ ପାଇଥିଲେ । ଇଞ୍ଜିନିୟରିଂ ଓ ମେଡ଼ିକାଲ ପଢ଼ିବାର ଦୁର୍ବାର ଲାଳସାଥିଲେ ମଧ୍ୟ ଅର୍ଥାଭାବ ତାଙ୍କର ପ୍ରତିବନ୍ଧକ ସାଜିଲା । ଏହାପରେ ତାଙ୍କର ପାଠପଢ଼ାର ଗତିପଥ ପରିବର୍ତ୍ତନ କରି

ଓଡ଼ିଶାର ପିଲା ହୋଇ ଓଡ଼ିଆ ଭାଷାର ସେବା କରିବା ପାଇଁ ମନଭିତରେ ପ୍ରତିଶ୍ରୁତିବଦ୍ଧ ହେଲେ ଏବଂ ଖ୍ରୀଷ୍ଟ ମହାବିଦ୍ୟାଳୟରେ ବି.ଏ. ପଢ଼ିଲେ ଓ ଓଡ଼ିଆ ଅନର୍ସ ନେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା ମହାବିଦ୍ୟାଳୟରେ ଏମ୍.ଏ. ଓଡ଼ିଆରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ଏହାପରେ ମଧ୍ୟ ସେ ଓ.ଏ.ଏସ୍ ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇପାରିଥିଲେ ଏବଂ ସେ ପ୍ରଶାସନିକ ଚାକିରୀରେ ଯୋଗ ଦେଇଥିଲେ କଲେକ୍ଟର ହୋଇ ଅବସର ଗ୍ରହଣ କରିଥାନ୍ତେ; କିନ୍ତୁ ଶିକ୍ଷକମାନଙ୍କର ଉପଦେଶ ପାଇ ବଡ଼ ଚାକିରୀକୁ ତ୍ୟାଗ କରି ମୟୂରଭଞ୍ଜ ଜିଲ୍ଲାର ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗ ଦେଲେ ଏବଂ ଚାକିରୀର ପ୍ରଥମ ପାହାଚରେ ତାଙ୍କର ଗୁରୁଗମ୍ଭୀର ଭାଷଣରେ ଶ୍ରେଣୀକୋଠରୀ କମ୍ପି ଉଠୁଥିଲା । ଏବେ ମଧ୍ୟ ଏ ଅଞ୍ଚଳର ବହୁତ ଛାତ୍ର ତାଙ୍କର ନାଟକୀୟ ଭଙ୍ଗୀରେ ପାଠପଢ଼ା କଥା ମନେପକାନ୍ତି । ଏହାପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ କିଛି ବର୍ଷ ଅଧ୍ୟାପକ ରହି ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରାଧ୍ୟାପକ ଭାବେ ଯୋଗ ଦେଇ ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଦାୟିତ୍ୱ ନେଇ ୧୯୯୯ ମସିହାରେ ଅବସର ଗ୍ରହଣ କରିଥିଲେ । ୧୯୭୩ ମସିହାରେ ସେ ପିଏଚ୍.ଡ଼ି ଏବଂ ୧୯୮୫ ମସିହାରେ ଡି.ଲିଟ୍ ଉପାଧି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଲାଭ କରିଥିଲେ ।

ସେ ମୋଟରେ ୩୬ ବର୍ଷ ଅଧ୍ୟାପନା ସମୟରେ ବହୁ ଛାତ୍ରଛାତ୍ରୀଙ୍କର ଶ୍ରଦ୍ଧା ଓ ଭକ୍ତିଭାଜନ ହୋଇପାରିଛନ୍ତି । ସେ ତାଙ୍କର ଚାକିରୀକାଳ ମଧ୍ୟରେ ୩୩ ଖଣ୍ଡ ଉପାଦେୟ ପୁସ୍ତକ ରଚନା କରି ଓଡ଼ିଆ ଭାଷା କ୍ଷେତ୍ରରେ ନୂତନ ଅଧ୍ୟାୟ ସୃଷ୍ଟି କରିପାରିଛନ୍ତି । ଓଡ଼ିଆ ଭାଷା ସମ୍ବନ୍ଧରେ ତାଙ୍କର ପୁସ୍ତକ ସମସ୍ତଙ୍କୁ ଖୋରାକ୍ ଯୋଗାଉଛି । ତାଙ୍କ ପାଖରେ ୫୩ ଜଣ ଗବେଷକ ଗବେଷଣା କରି ପିଏଚ୍.ଡ଼ି ପାଇପାରିଛନ୍ତି ଏବଂ ୫ଜଣ ଡି.ଲିଟ୍ ଡିଗ୍ରୀ ପାଇଛନ୍ତି । ତାଙ୍କପରି ଉଚ୍ଚକୋଟୀର ଗବେଷକ କ୍ୱଚିତ୍ ଦେଖାଯାଏ । ନିର୍ଭୁଲ ଗବେଷଣା ପାଇଁ ସବୁବେଳେ ସମସ୍ତଙ୍କୁ ଉପଦେଶ ଦେଉଥିଲେ । ତାଙ୍କର କେବଳ ଓଡ଼ିଆ ଭାଷା ବ୍ୟତୀତ ଇଂରାଜୀ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଅସମୀୟା, ମୈଥିଳୀ, ଭୋଜପୁରୀ ପ୍ରଭୃତି ଭାଷାରେ ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କ ଭାଷାର ଲାଳିତ୍ୟ ତାଙ୍କର ଲିଖିତ ପୁସ୍ତକରୁ ଜାଣିହୁଏ । ଏପରି ଜଣେ ଅସାଧାରଣ ବ୍ୟକ୍ତିତ୍ୱର ଅଧିକାରୀ ହଠାତ୍ ଆରପାରିକୁ ଚାଲିଯିବେ- କେହି କଳ୍ପନା କରି ନଥିଲେ । ଓଡ଼ିଆ ସମାଲୋଚନା କ୍ଷେତ୍ରରେ ସେ ଥିଲେ ଜଣେ ସମର୍ଥ ପୁରୁଷ । ପ୍ରାଚୀନ ସାହିତ୍ୟରୁ ଆଧୁନିକ ସାହିତ୍ୟ ପର୍ଯ୍ୟନ୍ତ ସବୁଯୁଗର ସାହିତ୍ୟ ସରଣୀରେ ବିଚରଣ କରି ସାରସ୍ୱତ ସମୀକ୍ଷା ସୌଧ ନିର୍ମାଣ କରିଯାଇଛନ୍ତି-ତାହା ତାଙ୍କୁ ଅମର କରି ରଖିବ । ଯଶ ଅପଯଶର ଊର୍ଦ୍ଧ୍ୱରେ ରହି ନିରଳସ ସାଧନା ହିଁ ଥିଲା ତାଙ୍କ ସାମର୍ଥ୍ୟର ଚାବିକାଠି । ସେ ନିଜେ କେବଳ ସାହିତ୍ୟ ସୃଷ୍ଟି କରୁନଥିଲେ । ଅନ୍ୟମାନଙ୍କ ପାଇଁ ସେ

ଥିଲେ ପ୍ରେରଣାର ଉତ୍ସ ଓ ସ୍ମୃତିର ଗନ୍ତାଘର । ମଣିଷ ଜୀବନରେ କେବଳ ମୃତ୍ୟୁ ହିଁ ସତ୍ୟ ଓ ଧ୍ରୁବ । ଗୋଟିଏ ଦିନ ବିତିଗଲା ଅର୍ଥ ଜୀବନ ଓ ମୃତ୍ୟୁ ମଧ୍ୟରେ ଦୂରତ୍ୱ ନିକଟ ହୋଇଆସୁଛି । କିନ୍ତୁ ପରମୁହୂର୍ତ୍ତରେ ମନୁଷ୍ୟ ବୁଝିପାରେ ନାହିଁ । ମୋ ଭିତରେ ମୋର ମନ ସନ୍ତୁଳିତ ହୋଇ ହାହାକାର କରିଉଠୁଛି-ସାର୍‌ଙ୍କ ପାଇଁ । ଆଉ ଜୀବନରେ ମୋ ସହିତ ଦେଖା ହେବ ନାହିଁ । ମୋତେ ସାନଭାଇଠାରୁ ଅଧିକ ସ୍ନେହ କରୁଥିଲେ । ଅନ୍ତରର ସବୁ ଅକୁହା କଥା ମୋତେ କହୁଥିଲେ । ମୋତେ ଅନେକ ଥର ସାର୍ କହିଛନ୍ତି-''ରମାକାନ୍ତ ! ତୋ ଭାଉଜଙ୍କୁ କହିବୁ ନାହିଁ । ମୋତେ ଯେଉଁ ରୋଗ ହୋଇଛି-ମୁଁ ଆଦୌ ବଞ୍ଚିବି ନାହିଁ । ତୋର କାମଟି ଚଞ୍ଚଳ କରିନେ । ତୋର ଋଣ ମୁଁ କେବେ ଶୁଝିପାରିବି ନାହିଁ ।'' ମୁଁ ଭାବୁଥିଲି ସେ ମୋତେ ଥଟାରେ ଏପରି କହୁଛନ୍ତି । ନିଷ୍ଠୁର ଭଗବାନ । ଆମର ଦୁଃଖ ବୁଝିଲେ ନାହିଁ । ଅନେକ ସମୟରେ ମୋର ଆତ୍ମା ଏବେବି ତାଙ୍କ ପାଇଁ ବାହୁନି ଉଠେ । ମୁଁ ତାଙ୍କୁ ଭୁଲିବାକୁ ଚେଷ୍ଟା କରି ମଧ୍ୟ ଭୁଲିପାରୁ ନାହିଁ । କେବଳ ତାଙ୍କ ପାଇଁ ଭୁବନେଶ୍ୱର ଯିବା କମାଇ ଦେଇଛି । କିନ୍ତୁ ଆତ୍ମାର ବନ୍ଧନ ଛିନ୍ନ ହେବାର ନୁହେଁ । ଆମର ହିନ୍ଦୁ ଧର୍ମରେ ଜନ୍ମାନ୍ତରବାଦ ବିଶ୍ୱାସ ଅଛି । ମୁଁ ପୁଣି ତାଙ୍କରି ପାଖରେ ପରଜନ୍ମରେ ସାନଭାଇ ହୋଇ ଜନ୍ମ ହୁଏ । ଏହା ମୋର ଆତ୍ମାର ବାଣୀ । ଏହା କେବଳ ତାଙ୍କର ପାର୍ଥିବ ଶରୀରର ମୃତ୍ୟୁ । ତାଙ୍କର ମାଟିର ଘଟ ମଝିରେ ମିଶିଯାଇଛି- କିନ୍ତୁ ତାଙ୍କର ଆତ୍ମା ଅମର ଅବିନାଶୀ । ତାଙ୍କର କେବେ ମୃତ୍ୟୁ ହୋଇପାରେନା । ଆଜି ମଧ୍ୟ ଆପଣଙ୍କ ଫଟୋ ରଖି ସ୍ମରଣ କରୁଛି ଆପଣଙ୍କ ସ୍ନେହବୋଳା ଦି'ପଦ କଥାକୁ-ମନରେ ଉଙ୍କି ମାରୁଛି ଆପଣଙ୍କ ପ୍ରତିମୂର୍ତ୍ତି । ସେଥିପାଇଁ ଜଣେ ଅଧ୍ୟାପକଙ୍କ ଉକ୍ତି ହେଉଛି-

''ତୁମେ ତ ଦେଖିଲ ନାହିଁ
କିଏ କେତେ ଦେଲେ ଫୁଲମାଳ
ତୁମେ ତ ଶୁଣିଲ ନାହିଁ
ବୁକୁଫଟା କ୍ରନ୍ଦନର ରୋଳ ।''

ଆଜି ବି ଭାଉଜ ଆଖିରୁ ଲୁହ ଶୁଖିନାହିଁ । ପିଲାମାନଙ୍କ ଅନ୍ତର ଭିତରେ କୋହର ଉଚ୍ଛ୍ୱାସ ବହୁଛି । ଆପଣ ବହୁତ ଦୂରରେ ରହି ଦେଖିପାରୁଛନ୍ତି-ସମସ୍ତଙ୍କର ଆକୁଳ ଆବେଦନ । ଆପଣ ''ଖୋଜିଯିବେ ବାରେ ବାରେ ଶୂନ୍ୟକକ୍ଷ ଶୂନ୍ୟଶଯ୍ୟାଧାରେ'' କି ଆକୁଳ ଆବେଗରେ ଭକ୍ତି ତାର ଖାଲି ହାହାକାରେ ।''

ହେ ମରଣବିଜୟୀ ବାସୁ ସାର୍ ! ''ଆପଣ ଆରପାରିରେ ରହି ଆମକୁ କର ଆଶୀର୍ବାଦ ।'' ଦୀର୍ଘ ୩୦ ବର୍ଷର ସଂପର୍କ । ଗୋଟିଗୋଟି ସ୍ମୃତି ହୋଇ ମୋ ମାନସପଟରେ ଉଙ୍କିମାରିଚାଲିଛି । କେତେ ହସ କାନ୍ଦ, ସୁଖଦୁଃଖ, ରାଗରୋଷ ଅଭିମାନର ସେ ଅଭୁଲା

ମୂର୍ତ୍ତି । ସେ ଥିଲେ ଦୟା ଓ କରୁଣାର ଏକ ଉଜ୍ଜ୍ୱଳ ପ୍ରତିମୂର୍ତ୍ତି । କେତେ ଛାତ୍ରଙ୍କ ସେ ଆର୍ଥିକ ଓ ଶିକ୍ଷାଗତ ସାହାଯ୍ୟ କରିଛନ୍ତି ତା'ର ଇୟତ୍ତା ନାହିଁ । ସେ ସମସ୍ତ ଛାତ୍ରଛାତ୍ରୀଙ୍କୁ ନିଜର ସନ୍ତାନ ସନ୍ତିତି ଭାବେ ଆନ୍ତରିକତାର ସହ ଗ୍ରହଣ କରୁଥିଲେ । ସେ ଥିଲେ ସାହିତ୍ୟ ରାଜ୍ୟରେ ପ୍ରେରଣାର ଅଫୁରନ୍ତ ଉତ୍ସ । ହେ ଅମର ପଥର ଯାତ୍ରୀ-ମୋର ଚିର ନମସ୍ୟ ଗୁରୁଦେବ । ସବୁ ସମୟରେ ଆପଣଙ୍କ ସ୍ନେହ, ସଦିଚ୍ଛା ସହିତ ଆଶୀର୍ବାଦ ପାଇଥିଲି-ସେଥିରୁ ବଞ୍ଚିତ କରିବେନି ବୋଲି ମୋର ବିଶ୍ୱାସ । କାରଣ ଆପଣ ଏବେ ଆଉ ମର୍ତ୍ତ୍ୟ ପୁରରେ ମଣିଷ ନୁହନ୍ତି-ଆପଣ ହେଉଛନ୍ତି ଦେବ ଲୋକର ବାସୁଦେବ । ଆପଣଙ୍କ ମୃତ୍ୟୁରେ ଆମ ପରିବାର କି ପରିମାଣରେ ଯନ୍ତ୍ରଣା ପାଇଛନ୍ତି-ସେ କଥା କହିଲେ କିଛି ଲାଭ ନାହିଁ । ଆପଣ ସ୍ୱର୍ଗରେ ରହି ଅନୁଭବ କରିବେ । ବେଶୀ ଦୁଃଖ ରହିଲା ଆପଣଙ୍କ ସହିତ ଶେଷଥର ପାଇଁ ଦେଖା ହୋଇପାରିଲା ନାହିଁ । ଆପଣ ସୁଦୂର ପୁନାରେ ରହି ଚିକିତ୍ସିତ ହୋଇ ଆଉ ଫେରିଲେ ନାହିଁ । କି ଦୋଷ କରିଥିଲୁ ଆମେ-ଆପଣ ଆମକୁ ଦେଖାଦେଲେ ନାହିଁ ।

ଭଗବାନ କି ଦାରୁଣ, ନିଷ୍ଠୁର, ଭୟଙ୍କର-ସେ ଭଲ ଲୋକଙ୍କୁ ମର୍ତ୍ତ୍ୟରେ ବେଶିଦିନ ରଖନ୍ତି ନାହିଁ । ଆଜି ବାର୍ଷିକ ଶ୍ରାଦ୍ଧ ଉତ୍ସବରେ ତାଙ୍କୁ ପ୍ରଣାମ କରୁଛୁ-ସେ ଆଜି ଆମ ପାଖରେ ନାହାନ୍ତି-ମାତ୍ର ତାଙ୍କର ବହୁମୁଖୀ କାର୍ଯ୍ୟ, କୀର୍ତ୍ତି ଓ ଗାମ୍ଭୀର୍ଯ୍ୟ ସ୍ନେହ ବୋଳା ଦରଦୀ ଡାକ ଯେ ସଦାସର୍ବଦା ଆମ ନିକଟରେ ନିଶ୍ଚିତ ଭାବେ ସଦ୍ୟ ପ୍ରସ୍ଫୁଟିତ ଫୁଲର ସୁରଭି ଛୁଟାଇବ ଏଥିରେ ସନ୍ଦେହ ନାହିଁ ।

ହେ ମରଣ ବିଜୟୀ ବାସୁ ସାର୍,
ତମ କୋମଳ ପାଦପଦ୍ମରେ
କରେ ନମସ୍କାର ।
ତୁମେ ସିନା ଚାଲିଗଲ
ଭୁଲ୍ ବୁଝି ଅଭିମାନ କରି
ଥରଟିଏ ପଛକୁ ବି ଚାହିଁଲନି
ଦେଖିଲନି ମୋତେ
କେତୋଟି ନିରୀହ ଆଖିର ଯନ୍ତ୍ରଣା ।



ବରିଷ୍ଠ ଅଧ୍ୟାପକ, ଦୀନକୃଷ୍ଣ ମହାବିଦ୍ୟାଳୟ
ଜଳେଶ୍ୱର

# ସବୁରି ପ୍ରିୟ ବାସୁ ସାର୍

ଡଃ ପ୍ରଭାତ ନଳିନୀ ମହାପାତ୍ର

ଚାହୁଁ ଚାହୁଁ ବର୍ଷଟିଏ ବିତିଗଲା । ସମୟ ନଈରେ କେତେ ପାଣି ବୋହିଗଲାଣି । ବର୍ଷେ ହେଲା ସାର୍ ଆଉ ଆମ ଗହଣରେ ନାହାନ୍ତି । ମହାକାଳ ଏତେ ନିଷ୍ଠୁର କାହିଁକି କେଜାଣି ! ଭଲ ମଣିଷମାନଙ୍କୁ ଅତିଶୀଘ୍ର ପୃଥିବୀରୁ ବିଦାୟ ଦିଏ ?

ସାର୍ ଥିଲେ ଭଲ ମଣିଷଟିଏ । ସାଦା ସିଧା, ଅମାୟିକ, ନିର୍ଭୀକ ଓ ସ୍ପଷ୍ଟବାଦୀ । ସେଇଥିପାଇଁ ତାଙ୍କୁ ସମସ୍ତେ ଭଲ ପାଉଥିଲେ । ସେ ଥିଲେ ଖୁବ୍ ନିୟମାନୁବର୍ତ୍ତୀ ଓ ସମୟାନୁବର୍ତ୍ତୀ । ବହିପତ୍ର, କାଗଜ ଠିକ୍‌ଠିକ୍ ସଜା ହୋଇ ରହିଥିବ । ବହିଗୁଡ଼ିକ ତାଙ୍କର ଜୀବନ । କାହାକୁ ବହିଟିଏ ଦେଲେ ଠିକ୍ ସମୟରେ ଫେରେଇବାକୁ ତାଗିଦ୍ କରି ଦିଅନ୍ତି । ବହିପତ୍ର ତାଙ୍କର ଆନ୍ତରିକତା ସେଥିରୁ ଜଣାପଡ଼ିଯାଏ । ସେସବୁ କାମ ଠିକ୍ ସମୟରେ କରନ୍ତି । ମନେପଡ଼େ ବାଣୀବିହାରରେ ପଢ଼ିବାବେଳେ ତାଙ୍କ କ୍ଲାସ୍ ଥିଲେ କରିଡ଼ରରେ ଅନେଇଥାଉ ଆମେ । କ୍ଲାସ୍ ସମୟର ଦଶପନ୍ଦର ମିନିଟ୍ ଆଗରୁ ପାଣିଟାଙ୍କି ଆଡୁ ସେ ଆସୁଥିବା ଦିଶିଯାଏ । ହାତରେ ଥାଏ ବ୍ୟାଗ୍‌ଟିଏ । ପୋଷ୍ଟ ଅଫିସ୍ ପାଖରେ ପହଞ୍ଚି ସେଠି ପାଞ୍ଚ ଦଶ ମିନିଟ୍ ରହି ଚିଠିପତ୍ର କିଛି ଆସିଛି କି ନାହିଁ ବୁଝନ୍ତି ତା’ ପରେ ସିଧା ଡିପାର୍ଟମେଣ୍ଟକୁ ଆସି ଠିକ୍ ସମୟରେ କ୍ଲାସ୍ ନିଅନ୍ତି । ସବୁଠୁ ବଡ଼କଥା ଝିଅ ପୁଅ ନିର୍ବିଶେଷରେ ସମସ୍ତଙ୍କ ନାଆଁ ସେ ମନେରଖିଥାନ୍ତି । ଟିକିଏ ଅନ୍ୟମନସ୍କ ହେଲେ କି ଗପ କଲେ ନାଆଁ ଧରି କହିଦିଅନ୍ତି । ମାତ୍ର ତିନିବର୍ଷ ତଳେ ବାଣୀବିହାରରେ ମୁଁ ରିଫ୍ରେସର କୋର୍ସ କରୁଥାଏ । ସାର୍‌ଙ୍କୁ ଗୋଟିଏ କ୍ଲାସ୍ ଦିଆଯାଇଥିଲା । ବଡ଼ ଆଶ୍ଚର୍ଯ୍ୟର କଥା ୨୫/୩୦ ବର୍ଷ ପରେ ମଧ୍ୟ ସାର୍ ବାଣୀବିହାର ଓଡ଼ିଆ ବିଭାଗର ସବୁ ଛାତ୍ରଛାତ୍ରୀମାନଙ୍କ ନାଆଁ ମନେରଖିଛନ୍ତି ।

କିଛି ଭୁଲୁ ନଥିଲେ ସେ । ଅସାଧାରଣ ଥିଲା ତାଙ୍କର ସ୍ମରଣ ଶକ୍ତି । ଖୁବ୍ ପ୍ରତିକୂଳ ପରିବେଶରୁ ଅଧ୍ୟବସାୟ ସାଧନା ଓ ନିଷ୍ଠା ଦ୍ୱାରା ହିଁ ସେ ଉପରକୁ ଉଠିଥିଲେ । ଜୀବନ ସାରା ଏଇ ପ୍ରତିକୂଳ ପରିସ୍ଥିତି ତାଙ୍କର ପିଛା ଛାଡ଼ି ନଥିଲା । କେତେବେଳେ କେତେଜଣ ମୁଷ୍ଟିମେୟ ଈର୍ଷୁକ ବ୍ୟକ୍ତିଙ୍କର ଚକ୍ରାନ୍ତର ଶିକାର ହୋଇଥିଲେ ତ କେତେବେଳେ ସ୍ୱାର୍ଥରେ ବାଧାଆସିଥିବା ବ୍ୟକ୍ତିଙ୍କର, ଶେଷଜୀବନରେ ସ୍ୱାସ୍ଥ୍ୟ ତାଙ୍କର ଶତ୍ରୁ ସାଜିଥିଲା । ତଥାପି

ଭାଙ୍ଗି ପଡ଼ି ନଥିଲେ ସେ । ଖୁବ୍ ସାହସର ସହ ସଂଗ୍ରାମ ଜାରି ରଖିଥିଲେ । କିନ୍ତୁ, ଶେଷରେ ରୋଗ ପାଖରେ ସେ ହାରିଗଲେ ।

ଜଣେ ଅଧ୍ୟାପକର ଜୀବନ କେବେବେଳେ ନିଷ୍ଫଳ ନୁହେଁ । କୁମ୍ଭାର ମେଞ୍ଚାଏ ମାଟିକୁ ମନଇଚ୍ଛା ରୂପ ଦେଇ ନୂଆ ନୂଆ ଉପକରଣ ଗଢ଼ିବା ପରି ସେ ସୃଷ୍ଟି କରିଛନ୍ତି ଅସଂଖ୍ୟ ଛାତ୍ରଛାତ୍ରୀ । ସମାଜର ବିଭିନ୍ନ କ୍ଷେତ୍ରରେ ସୁପ୍ରତିଷ୍ଠିତ ସେମାନେ । ସାର୍ ଆଜି ଏ ପୃଥିବୀରେ ନାହାନ୍ତି ସତ, ତଥାପି ସେ ବଂଚି ରହିବେ ଆମମାନଙ୍କ ହୃଦୟରେ । ମନୁଷ୍ୟର ଆୟୁଷ ଦିନ, ମାସ କିମ୍ବା ବର୍ଷରେ ହିସାବ ହୁଏ ନାହିଁ । ହିସାବ ହୁଏ ତା କର୍ମରେ ।

ସାର୍‌ଙ୍କ କର୍ମ ଥିଲା ଶିକ୍ଷାଦାନ । ଗୁରୁ ତ ଅନେକ ଅଛନ୍ତି । କିନ୍ତୁ, ସେ ଥିଲେ ଗୁରୁ ପରି ଗୁରୁଟିଏ । ଯାହା ଶିଖାଉଥିଲେ ଭଲ ଭାବେ ଶିଖାଉଥିଲେ । ମନରେ ତାର ଛାପ ରହିଯାଉଥିଲା ।

କବି ରାଧାନାଥ ରାୟ କହିଛନ୍ତି-

କେହି ରହି ନାହିଁ ରହିବେ ନାହିଁଟି
ଭବରଂଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।''

ମର୍ତ୍ତ୍ୟମଣ୍ଡଳେ ଦେହ ବହି, ଦେବଂତା ହେଲେ ହେଁ ମରଇ । ସାର୍ ତେଣୁ ଆଜି ବିଦାୟ ନେଇଛନ୍ତି ଆମ ଗହଣରୁ । କିନ୍ତୁ ତାଙ୍କ ସ୍ମୃତି ଅପାସୋରା, ଅମଳିନ । ମଣିଷ ପରି ମଣିଷଟିଏ ଥିଲେ ସେ । ସବୁ ଛାତ୍ରଛାତ୍ରୀଙ୍କର ସେ ଥିଲେ ପ୍ରିୟ ବାସୁ ସାର୍ ।



ଅଧ୍ୟାପିକା, ଓଡ଼ିଆ ବିଭାଗ
ଚରଂପା ମହାବିଦ୍ୟାଳୟ, ଚରଂପା, ଭଦ୍ରକ

# ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ୍

ଡଃ ମଥୁରାନାଥ ହୋତା

ରାଧାନାଥ ଲେଖିଥିଲେ -

''ତୁମ୍ଭ ମାଟିଦେହ ଗ୍ରାସିଛି ଶ୍ମଶାନ,
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ୍ ।''

ବାସୁ ସାର୍‌ଙ୍କ ପାଇଁ ଏ କଥାଟି ଅକ୍ଷରେ ଅକ୍ଷରେ ସତ୍ୟ । ଇତିମଧ୍ୟରେ ବର୍ଷେ ଗଡ଼ିଗଲାଣି । ତଥାପି ତାଙ୍କର ତିରୋଧାନ ଅବିଶ୍ୱାସ୍ୟ ମନେହେଉଛି । ମୁଁ ତାଙ୍କର କେବେବି ଛାତ୍ର ନଥିଲି, ମାତ୍ର ସ୍ନେହ ଓ ସହୃଦୟତାର ସ୍ପର୍ଶ ସବୁବେଳେ ଅନୁଭବ କରିଆସିଛି । ସତେଇଶି ବର୍ଷ ଧରି ତାଙ୍କର ସାନ୍ନିଧ୍ୟ ଲାଭ କରି ଧନ୍ୟ ହୋଇଛି । ସେ ମୋର ଗବେଷଣାର ତତ୍ତ୍ୱାବଧାରକ ନଥିଲେ ମଧ୍ୟ ମୋତେ ଏତେ ପରିମାଣରେ ସାହାଯ୍ୟ କରିଛନ୍ତି ଯେ ତାହା ମୁଁ କେବେ ବି ଭୁଲିପାରିବି ନାହିଁ । ମୋର ଗବେଷଣା ଗ୍ରନ୍ଥ, କବି ସଚ୍ଚି ରାଉତରାୟଙ୍କ ପାଣ୍ଡୁଲିପି : ଏକ ନୂତନ ଯୁଗର ପ୍ରସ୍ତୁତି' ପ୍ରକାଶିତ ହେବାପରେ ତାଂକୁ ଉପହାର ଦେବାରୁ ସେ ଖୁବ୍ ଖୁସି ହୋଇଯାଇ କହିଥିଲେ, 'ଏଇଟି ସଚ୍ଚି ବାବୁଙ୍କ କବିତାର ସର୍ବପ୍ରଥମ ଗବେଷଣା ଗ୍ରନ୍ଥ' ତମେ ଏକ ଜାତୀୟ କାର୍ଯ୍ୟ କରିଚ । ଏହାକୁ ମୁଁ ଭଲ ଭାବରେ ପଢ଼ିବି ଓ ମତାମତ ଦେବି ।'' ଏହାର କିଛିଦିନ ପରେ ମୁଁ ତାଙ୍କଠାରୁ ଏକ ଦୀର୍ଘ ପ୍ରଶଂସାମୂଳକ ପତ୍ର ପାଇଲି, ଯାହାକୁ ମୁଁ ଏଯାବତ୍ ସାଇତି କରି ରଖିଛି । ବହୁ ସାହିତ୍ୟିକ ଓ ଗବେଷକଙ୍କଠାରୁ ପାଇଥିବା ପତ୍ରଗୁଡ଼ିକଠୁଁ ଏ ପତ୍ର ଥିଲା ନିଆରା । ବିଭିନ୍ନ ସଭାସମିତି, ପାଠଚକ୍ର, ସାମାଜିକ ଉତ୍ସବରେ ସାର୍‌ଙ୍କ ସହ ଭେଟ ହୁଏ । ବାଣୀବିହାର ଓଡ଼ିଆ ବିଭାଗରେ ହେଉ ବା ଘରେ ହେଉ, ସର୍ବତ୍ର ମିଳେ ତାଙ୍କର ଅନ୍ତରଂଗତାର ସ୍ପର୍ଶ । ପାଣ୍ଡିତ୍ୟ ତାଂକୁ କରିଥିଲା ଅତ୍ୟନ୍ତ ନମନୀୟ । ଉତ୍ତମ ମାନବୀୟ ଗୁଣାବଳୀରେ ବିଭୂଷିତ ହୋଇଥିଲା ତାଙ୍କର ବ୍ୟକ୍ତିତ୍ୱ । ଅଗଣିତ ଛାତ୍ର ତାଙ୍କ ଗୁଣଗାନରେ ବିଭୋର ହେବା ଦେଖି ମୁଁ ବି ଉଲ୍ଲସିତ ହୋଇଛି । ଭାଷାଚର୍ଚ୍ଚା ଓ ଶ୍ରୀଜଗନ୍ନାଥ ଧର୍ମ-ସଂସ୍କୃତିର ଜଣେ ବିଦଗ୍ଧ ଗବେଷକ ଭାବରେ ତାଙ୍କର ସ୍ଥିତି ଓଡ଼ିଆ ସାହିତ୍ୟରେ ପ୍ରତିନିଧି ସ୍ଥାନୀୟ । ତାଙ୍କର ବିଦାୟ ଆମ ପାଇଁ ଓ ଓଡ଼ିଆ ସାହିତ୍ୟ ପାଇଁ ଆକସ୍ମିକ । ବୋଧହୁଏ ଷାଠିଏରୁ ଊର୍ଦ୍ଧ୍ୱ ଗବେଷଣା ପ୍ରକଳ୍ପର ସେ ଦିଗ୍‌ଦର୍ଶକ । ଏହା ଏକ ବିସ୍ମୟ । ପୁଣି

ସାର୍‌ଙ୍କ ବାଗ୍ମିତା ଥିଲା ଅନନ୍ୟ । ମୁଁ ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଅଧାପନା କରୁଥିବାବେଳେ ସାର୍‌ଙ୍କୁ ସାହିତ୍ୟ ସଭାକୁ ଆମନ୍ତ୍ରଣ କରିବା ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେବାର ଦେଖିଛି ଏବଂ ସବୁଠି ସାର୍ ମୋର ମନେହୁଏ, ତାଙ୍କର ଉଦାର ହୃଦୟରେ ପାଣ୍ଡିତ୍ୟର ଏକ ସଞ୍ଚାରିଣୀ ଦୀପଶିଖା ପ୍ରଜ୍ୱଳନ କରି ଈଶ୍ୱର ତାଙ୍କୁ ଜଣେ ଅଧାମ୍ ପୁରୁଷଙ୍କ ମାନ୍ୟତା ପ୍ରଦାନ କରିଛନ୍ତି । ଏହି ଅଧାମ୍ ପୁରୁଷଙ୍କ ବିନାଶ ଅସମ୍ଭବ । ସେ ସଂଚାରିଣୀ ଦୀପଶିଖା ବର୍ତ୍ତମାନ ବହୁଧା ପରିବ୍ୟାପ୍ତ । ଶୋକାର୍ତ୍ତଙ୍କ ପାଇଁ ଏହା ଏକ ନିର୍ଭର ଯୋଗ୍ୟ ଆଶ୍ୱାସନା ।

ବିଦାୟ ନେବାର ଦୁଇବର୍ଷ ପୂର୍ବରୁ ଭଂଜ ବିହାରର ଅତିଥିଶାଳାରେ ସାର୍‌ଙ୍କ ସହ ମୋର ଶେଷ ଦେଖା । ଏକ ପିଏଚ୍.ଡ଼ି ମୌଖିକ ପରୀକ୍ଷା ପାଇଁ ଯାଇଥିଲେ ମୋର ଗୁରୁ ପ୍ରଫେସର ଡଃ ଖଗେଶ୍ୱର ମହାପାତ୍ର ଓ ବାସୁ ସାର୍ । ଦୁଇଜଣ ସ୍ୱତଃସ୍ଫୂର୍ତ୍ତ ଭାବେ ମୋର ଅମନ୍ତ୍ରଣ ରକ୍ଷା କରି ପୁଣିଥରେ ଆସିଲେ ଗୋଟିଏ ଦିନ ଛତ୍ରପୁରରେ ମୋର ବସାଘରେ ରହିବେ ବୋଲି କଥା ଦେଇଥିଲେ । ମୋର ଦୁର୍ଭାଗ୍ୟ-ତାହା ସଫଳ ହେଲା ନାହିଁ । ମୋତେ ଭଦ୍ରକ କଲେଜରେ ଯୋଗ ଦେବାକୁ ହେଲା । ସେଇ ଭଦ୍ରକରେ ହିଁ ଶୁଣିବାକୁ ହେଲା ଏଇ ମର୍ମନ୍ତୁଦ ସମ୍ବାଦ । ସେ ଆଜି ପଞ୍ଚଭୂତରେ ସୀମିତ ନୁହନ୍ତି, ସେ ଏକ ଉତ୍ତିରତ ଆତ୍ମା । ସେହି ପୁଣ୍ୟାତ୍ମାଙ୍କୁ ମୋର ସଶ୍ରଦ୍ଧ ପ୍ରଣାମ ।



# ଶିକ୍ଷାଗୁରୁ ପ୍ରଫେସର ଡଃ ବାସୁଦେବ ସାହୁ

ଡଃ ରଙ୍ଗାଧର ନାୟକ

୧୯୭୫ ମସିହା ଅଗଷ୍ଟ ମାସ । ଓଡ଼ିଆ ବିଭାଗରେ ୫ମ ବର୍ଷର ଛାତ୍ର ହିସାବରେ ଶ୍ରେଣୀରେ ଯୋଗ ଦେଇଥିଲି । ପ୍ରଥମ କ୍ଲାସ୍‌ରେ ଆସିଥିଲେ ଜଣେ ଦୀର୍ଘକାୟ ବ୍ୟକ୍ତି । ସେ କ୍ଲାସ୍ ନେଲେ । ସେ କ୍ଲାସ୍ ଥିଲା ଅତି ଚମତ୍କାର ଓ ଅଭୁଲା । ଏବେ ବି ସେଦିନର ସେହି କ୍ଲାସ୍ କଥା ଓ ସାର୍‌ଙ୍କ କଥା ମୋର ଜଳଜଳ କରି ଦିଶିଯାଉଛି । କ୍ଲାସ୍ ସରିଲା ପରେ ବୁଝି ଜାଣିଥିଲି ତାଙ୍କ ନାମ ଡଃ ବାସୁଦେବ ସାହୁ । ଖ୍ରୀଷ୍ଟ ମହାବିଦ୍ୟାଳୟରୁ ଓଡ଼ିଆ ଅନର୍ସ ପଢ଼ିଲାବେଳେ ପଠାଣି ସାର୍ ଓ ମୃତ୍ୟୁଞ୍ଜୟ ସାର୍‌ଙ୍କ ସ୍ନେହ, ସଦିଚ୍ଛା ଓ ସହାନୁଭୂତିର ଯେଉଁ ଗଭୀର ସ୍ପର୍ଶ ପାଇ ଆସିଥିଲି ତାହା ସେଦିନ ବାସୁ ସାର୍‌ଙ୍କ ମମତା ବୋଳା ଶିକ୍ଷାଦାନରେ କେତେ ଗଭୀରକୁ ଚାଲିଯାଇଥିଲା ତାହା କଳ୍ପନା କରିବା ସମ୍ଭବ ନୁହେଁ । ପ୍ରଥମ ଦେଖା ଓ ପ୍ରଥମ ଶିକ୍ଷାଦାନରୁ ମୁଁ ଗୋଟାଏ ବଡ଼ ସ୍ୱପ୍ନ ଦେଖିଥିଲି ଯେ ବାସୁ ସାର୍‌ଙ୍କ ପରି ଜଣେ ଅଧ୍ୟାପକ ହେବି ।

ତା'ପରେ ତାଙ୍କ ଅନାବିଳ ସ୍ନେହ ସଦିଚ୍ଛା ମୋ ପରି ଜଣେ ଗାଉଁଲିଆ ଛାତ୍ରକୁ ତାଙ୍କର ଭାଇ ସ୍ତରକୁ ଟାଣି ନେଇଥିଲା । ତାଙ୍କଠାରେ ଦେଖିଆସିଥିଲି ଜଣେ ଆଦର୍ଶ ଶିକ୍ଷକର କାର୍ଯ୍ୟ ଓ ଚିନ୍ତାଧାରା କ'ଣ । ଦିନକୁ ଦିନ ତାଙ୍କ ସ୍ନେହ ମମତାରେ ଓ ତାଙ୍କ ପରିବାରର ମମତାରେ ବାନ୍ଧି ହୋଇପଡ଼ିଲି । ସାଧାରଣ ପରିବାରର ପିଲାକୁ ଏତେ ସ୍ନେହଆଦର ଦେଇପାରେ ତାହା ମୋର କଳ୍ପନାର ବାହାରେ ଥିଲା ।

ଅର୍ଥାଭାବ ମୋର ବାଣୀବିହାର ପାଠପଢ଼ା ଉପରେ ଖୁବ୍ ପ୍ରଭାବ ପକାଇଥିଲା । ଏପରିକି ଅଧାରୁ ପାଠପଢ଼ା ଛାଡ଼ି ଚାକିରୀ ଅନ୍ୱେଷଣରେ ଯିବାର ଅନେକ ସମ୍ଭାବନା ଥିଲା । ମାତ୍ର ବାସୁ ସାର୍‌ଙ୍କ ମୋ ପ୍ରତି ଥିବା ସାନଭାଇର ସ୍ନେହ ଆଦର ପାଠପଢ଼ା ପ୍ରତି ଅଧିକ ଉତ୍ସାହ ସୃଷ୍ଟି କରିଥିଲା । ରାତି ପାହିଲେ ସାର୍‌ଙ୍କ ସହିତ କିପରି ଦେଖାହେବ ସେଥିପାଇଁ ମନ ବ୍ୟାକୁଳ ହୋଇଉଠୁଥିଲା । ସକାଳ ହେଲେ ବାଣୀବିହାର ପରିସର ମଧ୍ୟରେ ଥିବା ତାଙ୍କ କ୍ୱାଟରକୁ ଯାଉଥିଲି । ତାଙ୍କ ପାଖେ ପାଖେ ରହି ଅନେକ ପାଠ ଜାଣିଲି । ଓଡ଼ିଆ ସାହିତ୍ୟ, ଭାଷାଜ୍ଞାନ, ଶବ୍ଦ ବନାନ ଜାଣିବାର ସୁଯୋଗ ଅନ୍ୟ ଛାତ୍ରମାନଙ୍କ ତୁଳନାରେ ମୁଁ

ଅଧିକ ପାଇଲି । ଯିବା ଆସିବା ବାଟରେ ସେ ଶବ୍ଦର ବନାନ ଓ ସାହିତ୍ୟର ବିଭିନ୍ନ ଦିଗ ଉପରେ କହିଚାଲିଥିବେ । ଲିଙ୍ଗରାଜ ମନ୍ଦିର ଯିବାଠାରୁ ଆରମ୍ଭ କରି ପୁରୀ ଯିବା ପର୍ଯ୍ୟନ୍ତ ମୋତେ ସାଙ୍ଗରେ ନିଅନ୍ତି । ବସ୍‌ରେ ବସିବା ବେଳଠାରୁ ପୁରୀରେ ତାଙ୍କର କେଉଁ ପୁରୁଣା ଛାତ୍ରବସାରେ ରହିବା ପର୍ଯ୍ୟନ୍ତ କେବଳ ପାଠ କଥା କହନ୍ତି । ପ୍ରତ୍ୟେକ ସମୟରେ ଗୋଟାଏ କଥାକୁ ସେ ଗୁରୁତ୍ୱ ଦିଅନ୍ତି ତାହା ହେଉଛି ଭଲ ମଣିଷଟିଏ ହେବା ପାଇଁ ।

ଦିନେ ହଷ୍ଟେଲକୁ ମୋ ରୁମ୍‌କୁ ସାର୍ ଆସିଥିଲେ । ମୁଁ ଉପର ଶ୍ରେଣୀର ଜଣେ ବଡ଼ଭାଇଙ୍କ ପରୀକ୍ଷା ନୋଟ୍ ଟିପୁଥିବାର ସେ ଦେଖି କହିଲେ ରଙ୍ଗାଧର ତୁ ନିଜେ ପରୀକ୍ଷା ନୋଟ୍ କର ମୁଁ ଠିକ୍ କରିଦେବି । ସେହିଦିନଠାରୁ ମୁଁ ପରୀକ୍ଷା ନୋଟ୍ ନିଜେ ପ୍ରସ୍ତୁତ କରିବା ଆରମ୍ଭ କଲି । କେଉଁ ବହିର ଉତ୍ତର କରିବା ପାଇଁ କି କି ସମାଲୋଚନା ପୁସ୍ତକ ମିଳେ ତାହା ସେ କହନ୍ତି । ମୁଁ ସେ ସବୁକୁ ପରିଜା ଲାଇବ୍ରେରୀ ପଢ଼ି ନୋଟ୍ କରେ । ବାସୁ ସାର୍ ମୋ ନୋଟ୍ କିପରି ଉଚ୍ଚକୋଟୀର ହୋଇପାରିବ ତାହା ବତେଇ ଦିଅନ୍ତି ଏବଂ ଠିକ୍ କରିଦିଅନ୍ତି । ତାଙ୍କର ପ୍ରେରଣା ଓ ଆଶୀର୍ବାଦରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. ପରୀକ୍ଷାରେ ୫ମ ସ୍ଥାନ ଅଧିକାର କରିବାର ସୌଭାଗ୍ୟ ପାଇଲି ।

୧୯୭୭ ମସିହା ସେପ୍ଟେମ୍ବର ମାସରେ ଏମ୍.ଏ. ପରୀକ୍ଷା ସରିଲା ପରେ ସମସ୍ତେ ନିଜ ନିଜ ଗାଁକୁ ଚାଲିଗଲେ । ମୁଁ ଅଳ୍ପକେତେଦିନ ପାଇଁ ଗାଁକୁ ଯାଇ ଭୁବନେଶ୍ୱର ଆସି କିପରି ଗବେଷଣା କରିବି ସେଥିପାଇଁ ବାସୁ ସାର୍‌ଙ୍କ ପିଛା ଧରିଲି । ତାଙ୍କ ଅଧୀନରେ ସିଟ୍ ଖାଲି ନଥିବାରୁ ସେ ମୋତେ ଓ ଶରତକୁ (ଡଃ ଶରତ ଚନ୍ଦ୍ର ରଥ) ଆଶୁ ସାର୍‌ଙ୍କ ପାଖକୁ ପଠାଇଲେ । ଆମେ ଦୁଇଜଣ ଆଶୁସାର୍‌ଙ୍କ ଅଧୀନରେ ଗବେଷଣା କଲୁ । ମାତ୍ର ମୁଖ୍ୟ ପରାମର୍ଶ ଓ ଉପଦେଷ୍ଟା ଥିଲେ ବାସୁସାର୍ । ତାଙ୍କ ପାଖକୁ ପି.ଏଚ୍.ଡ଼ି. ଥେସିସ୍ ମୂଲ୍ୟାଙ୍କନ କରିବାକୁ ଆସେ । ସେ ମୋତେ ଦେଖାନ୍ତି କେମିତି ତଥ୍ୟ ସଂଗ୍ରହ କରିବି ଏବଂ କିପରି ତଥ୍ୟକୁ ବିଶ୍ଳେଷଣ କରିବି । ୧୯୮୩ ଅଗଷ୍ଟ ମାସରେ ତାଙ୍କରି ଆଶୀର୍ବାଦରୁ ମୋର ପିଏଚ୍.ଡ଼ି ଡିଗ୍ରୀ ଲାଭ କରିଥିଲି । କ୍ଲାସ୍‌ରେ ସାର୍‌ଙ୍କ ପାଠପଢ଼ା ଶୈଳୀ ଯିଏ ଶୁଣିଛି ସେ କେବେ ଭୁଲିପାରିବ ନାହିଁ । ଛାତ୍ରଙ୍କ ମନକୁ ମୋହି ନେଇ ପଢ଼ାରେ ନିମଗ୍ନ କରାଇ ଦେବାରେ ତାଙ୍କର ଦକ୍ଷତା ଅନନ୍ୟ । ଜୀବନରେ ଏପରି ଜଣେ ଦକ୍ଷ ଶିକ୍ଷକଙ୍କୁ ମୁଁ ଅନ୍ୟ କେଉଁଠି ଦେଖି ନାହିଁ । ପଠିତ ବିଷୟ ବିଶ୍ଳେଷଣ କରିବାରେ କେବଳ ତାଙ୍କ ପାଖରେ ଆମେ ପାଣ୍ଡିତ୍ୟ ଦେଖିନାହୁଁ ଗଭୀର ବିଦ୍‌ବତ୍ତା ମଧ୍ୟ ଦେଖିଛୁ । କେହିକେହି ଓଡ଼ିଆ ସାହିତ୍ୟରେ ଏକ ଏକ ଦିଗ ଉପରେ ନିଜର ପାଣ୍ଡିତ୍ୟ ତଥା ବିଦ୍‌ବତ୍ତା ପ୍ରକାଶକ୍ଷମ ହୋଇଥିବାବେଳେ ବାସୁ ସାର୍ ପ୍ରାକୃତ ଭାଷା ସାହିତ୍ୟଠାରୁ ଆରମ୍ଭ କରି ଆଧୁନିକ ଦୁର୍ବୋଧ ଓଡ଼ିଆ କବିତା ଓ ଉଦ୍ଭଟ ନାଟକ ପର୍ଯ୍ୟନ୍ତ ପ୍ରତ୍ୟେକଟି ବିଭାଗ ଉପରେ ନିଜର ପାଣ୍ଡିତ୍ୟ ଓ ଦକ୍ଷତା ଦେଖାଇପାରୁଥିଲେ ।

ଓଡ଼ିଆ ଭାଷା ଉପରେ ଥିଲା ତାଙ୍କର ଅଗାଧ ଜ୍ଞାନ । ତାଙ୍କ ପାଖେ ପାଖେ ରହିବାର ସୁଯୋଗ ପାଇଥିବାରୁ ଓଡ଼ିଆ ଭାଷା ଉପରେ ମୋର ବିଶେଷ ଜ୍ଞାନ ଆସିଥିଲା ।

ତାଙ୍କ ପାଖରୁ ସବୁବେଳେ ଶିଖିବାର ଅଭିପ୍ରାୟ ନେଇ ତାଙ୍କ ସାଙ୍ଗରେ ଥାଏ । ସରକାରୀ କଲେଜରେ ଅଧ୍ୟାପନା କାଳରେ ଭୁବନେଶ୍ୱରଠାରୁ ଦୂରରେ ରହିଥିଲେ ମଧ୍ୟ ୧୫ ଦିନରେ ହେଲେ ବି ଥରେ ଆସି ସାର୍‌ଙ୍କୁ ସାକ୍ଷାତ୍ କରିଯାଏ ।

ଛାତ୍ର ଜୀବନରେ ସେ ମୋତେ ସ୍ନେହ ଆଦର କରିବା ସହିତ ପାଠପଢ଼ା କ୍ଷେତ୍ରରେ ଯେଉଁ ଦିଗ୍‌ଦର୍ଶନ ଦେଇଥିଲେ ତାହା ମୋତେ ପରବର୍ତ୍ତୀ କାଳର ଅଧ୍ୟାପନା ଜୀବନକୁ ବହୁ ଭାବରେ ପ୍ରଭାବିତ କରିଛି । ତାଙ୍କ ପ୍ରେରଣା ଓ ଦିଗ୍‌ଦର୍ଶନ ଯୋଗୁ ମୁଁ ଓଡ଼ିଆ ଭାଷା ଓ ସାହିତ୍ୟରେ ଗବେଷଣା କରିଥିବା ବ୍ୟକ୍ତିମାନଙ୍କୁ ଭଲ ଦିଗ୍‌ଦର୍ଶନ ଦେବାରେ ସକ୍ଷମ ହୋଇପାରିଛି । ଜୀବନର ଶେଷପର୍ଯ୍ୟନ୍ତ ସେ ଓଡ଼ିଆ ସାହିତ୍ୟ ଗବେଷଣା କ୍ଷେତ୍ରରେ ମୋର ପ୍ରକୃତ ଶିକ୍ଷାଗୁରୁ ଥିଲେ ।

ଶ୍ରେଣୀର ଚାରିକାନ୍ଥ ମଧ୍ୟରେ ଶିକ୍ଷକର ପାଠପଢ଼ା କେବଳ ଛାତ୍ର ପାଇଁ ଯଥେଷ୍ଟ ନୁହେଁ । ଶିକ୍ଷକର ଆଦର୍ଶବୋଧ, ଭାବନା ଓ ଛାତ୍ର ପ୍ରତି ସ୍ନେହ ଆଦର ଛାତ୍ରର ଜୀବନ ଗଢ଼ିବାରେ ସାହାଯ୍ୟ କରିଥାଏ । ତାହା ହିଁ ଘଟିଛି ମୋ ଜୀବନରେ । ବାସୁ ସାର୍‌ଙ୍କ ଅଧ୍ୟାପନାର ପ୍ରଭାବ ଅପେକ୍ଷା ତାଙ୍କ ବ୍ୟକ୍ତିତ୍ୱ ମୋ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଛି । ଜଣେ ଶିକ୍ଷକଙ୍କ ପାଖରୁ ଏତେ ସ୍ନେହ, ଆଦର, ଉପଦେଶ ମିଳିବ ତାହା ମୁଁ ଅନୁଭବ କରିଛି ବାସୁସାର୍‌ଙ୍କଠାରୁ । ମୋ ପ୍ରତି ତାଙ୍କର ଏତେ ସ୍ନେହ ଯେ ସେ,ଓ ଭାଉଜ ମୋ ନିମନ୍ତ୍ରଣରେ ୨୦୦କି.ମି. ଦୂରରେ ଥିବା ମୋର ନିପଟ ମଫସଲ ଗାଁକୁ ମୋ ବାହାଘରକୁ ସପରିବାରେ ଯାଇଥିଲେ । ସାର୍ ମୋ ଶ୍ୱଶୁରଘରକୁ ବରଯାତ୍ରୀ ମଧ୍ୟ ଯାଇଥିଲେ । ବାହାଘର ପରେ ମୋର ଗୋଟିଏ ଦୁର୍ଦ୍ଦିନ ଆସିଥିଲା । ସାର୍ ମୋତେ ସାନ୍ତ୍ୱନା ଦେବାପାଇଁ ମୋ ଘରକୁ କେବଳ ଯାଇନଥିଲେ ମୋର ସମସ୍ୟାକୁ ଯେଭଳି ସମାଧାନ କରିଥିଲେ ତାହା ମୋର ପରବର୍ତ୍ତୀ ଜୀବନକୁ ଶୃଙ୍ଖଳିତ କରିଥିଲା । ମୋର ଆଶା, ଅକାଂକ୍ଷା ଓ ଅଭିଳାଷକୁ ମୁଁ ସାର୍‌ଙ୍କ ପାଖରେ ଖୋଲି କହେ । ଓଡ଼ିଶା ଯୁକ୍ତ ଦୁଇ ପରିଷଦକୁ ଉପପରୀକ୍ଷା ନିୟନ୍ତକ ହୋଇ ଆସିଲା ପରେ ସାର୍‌ଙ୍କୁ କହିଥିଲି ମୁଁ ଆଇ.ଏ.ଏସ୍. ପାଇବାକୁ ଅଭିଳାଷ କରିଛି, ଆପଣ ମୋତେ ଆର୍ଶୀବାଦ ଦେବା ପଛେ ପଛେ ଅଛି ।

ଆରୁଣି ପରି ସାର୍‌ଙ୍କ ଛାତ୍ର ହୋଇ ସାରା ଜୀବନ ରହିବି ବୋଲି ଆଶା କରିଥିଲି । ଗବେଷଣା କ୍ଷେତ୍ରରେ କେବେ ଅସୁବିଧାର ସମ୍ମୁଖୀନ ହେଲେ ତା'ର ସମାଧାନର ବାଟ ତାଙ୍କୁ ପଚାରି ବୁଝେ । ଯେତେବେଳେ ତାଙ୍କ ସାକ୍ଷାତ ହୁଏ ମୁଁ ସାର୍‌ଙ୍କୁ ପଚାରେ ଆପଣଙ୍କ ଦେହ କିପରି ଅଛି ? ସେ ହସିହସି କହନ୍ତି ସବୁ ଠିକ୍ ଅଛି । ତାଙ୍କ ଦେହ ଖରାପ ଥିଲା ।

ଏହା ମୁଁ ଜାଣିଥିଲି । ସବୁବେଳେ ତାଙ୍କୁ କୁହେ ଆପଣଙ୍କ ପଛରେ ଜଗନ୍ନାଥ ଅଛନ୍ତି, ଆପଣଙ୍କର କିଛି ହେବ ନାହିଁ । ହଠାତ୍ ତାଙ୍କ ମୃତ୍ୟୁ ଖବର ଶୁଣି ସ୍ତମ୍ଭୀଭୂତ ହୋଇପଡ଼ିଲି । ମୋ ଭିତରେ ଏକ ବିରାଟ ଶୂନ୍ୟତା ସୃଷ୍ଟି ହେଲା । ମୋ ଛାତ୍ର ଜୀବନର ଶେଷ ହୋଇଗଲା । ପାଠ ବୁଝିବାକୁ ଆଉ ତାଙ୍କ ପାଖକୁ ଯାଇହେବ ନାହିଁ । ଗବେଷଣାରେ ମାର୍ଗଦର୍ଶନ ଦେଲାବେଳେ ଏବେ ସବୁବେଳେ ତାଙ୍କ କଥା ମନେପଡୁଛି । ଏହା ଭିତରେ ବର୍ଷେ ବିତିଗଲାଣି । କାଲିପରି ମନେ ହେଉଛି ସେ ପୁନେ ଯିବା ପୂର୍ବରୁ ଏପ୍ରିଲ ୨୦୦୫ ମସିହାରେ ବାଣୀବିହାରରେ ତାଙ୍କ ସହିତ ସାକ୍ଷାତ ହୋଇଥିଲା । ସେଇଥିଲା ଶେଷ ସାକ୍ଷାତ । ୧୯୭୫ ଜୁଲାଇ ମାସରୁ ୨୦୦୫ ଜୁଲାଇ ମାସ ଦୀର୍ଘ ୩୦ ବର୍ଷ ଧରି ସେ ମୋର ପୂଜ୍ୟ ଶିକ୍ଷାଗୁରୁ ହୋଇ ରହିଆସିଛନ୍ତି । ପରଲୋକରେ ତାଙ୍କ ଆତ୍ମା ପରମଶାନ୍ତି ଲାଭ କରୁ ଏହା ମୋର ଶ୍ରୀ ଜଗନ୍ନାଥଙ୍କ ଚରଣାବିନ୍ଦର ପ୍ରାର୍ଥନା ।

ଜୟ ଗୁରୁବ୍ରହ୍ମା, ଗୁରୁ ବିଷ୍ଣୁ,
ଗୁରୁ ମହେଶ୍ୱର, ଗୁରୁ ଡଃ ବାସୁଦେବ ସାହୁ



ଅଧ୍ୟାପକ, ଓଡ଼ିଆ ବିଭାଗ,
ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ, ଭୁବନେଶ୍ୱର





# ପୂଜ୍ୟ ବାସୁସାର୍‌ଙ୍କ ସ୍ମୃତିରେ

ଡଃ ବୀଣା ଦାସ

ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା ଡକ୍ଟର ବାସୁଦେବ ସାହୁଙ୍କୁ କିଏ ବା ନଜାଣେ ! ସିଏ ଥିଲେ ଏକାଧାରାରେ ଜଣେ ବିଶିଷ୍ଟ ଓଡ଼ିଆ ବିଭାଗର ସ୍ୱନାମଧନ୍ୟ ଆଚାର୍ଯ୍ୟ, ଗବେଷକ, ସୁସାହିତ୍ୟିକ । ଓଡ଼ିଆ ସାହିତ୍ୟ ଗନ୍ତାଘରର ଚାବିକାଠି । ସାହିତ୍ୟ ବିଭାଗର ଏକ ଅମୂଲ୍ୟ ରତ୍ନ । ଭଗବାନ ଏଇ ଉଜ୍ଜ୍ୱଳ ପ୍ରଦୀପକୁ ଲିଭାଇ ଦେଇ ଆମ ଓଡ଼ିଆ ବିଭାଗର ବହୁ କ୍ଷତି କଲେ । ଯାହା ଅପୂରଣୀୟ । କେତେ ସୁନ୍ଦର ଶାନ୍ତ ସରଳ ମଣିଷଟିଏ । ସ୍ନେହୀ, ଦୟାବାନ ଓ ଉଦାର ଚରିତ୍ରର ମଣିଷଟିଏ । ସିଏ ମଣିଷ ମାତ୍ର ଦେବ ସୁଲଭ ଗୁଣରେ ମଣ୍ଡିତ । ସେ ସମସ୍ତଙ୍କ ପାଇଁ କିଛି ନା କିଛି ସାହାଯ୍ୟ କରିଯାଇଛନ୍ତି । ଜଣେ କୃତି ଶିକ୍ଷକ ଭାବେ ସମସ୍ତଙ୍କ ହୃଦୟରେ ସିଏ ସ୍ଥାନ ଗ୍ରହଣ କରିଛନ୍ତି । ସିଏ ଏତେ ଲୋକପ୍ରିୟ ହୋଇଥିଲେ ଯେ କୌଣସି ଲୋକ ଓଡ଼ିଆ ବିଭାଗରେ ତାଙ୍କୁ ଭୁଲିପାରିବେନି । ଜଣେ ବିଶିଷ୍ଟ ସଂବେଦନଶୀଳ ଆଚାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ବହୁତ ଲୋକ ବହୁତ କାମ ପାଇଁ ତାଙ୍କ ନିକଟକୁ ଯାଆନ୍ତି । ସିଏ କାହାକୁ ନିରାଶ କରନ୍ତି ନାହିଁ । ସମସ୍ତଙ୍କୁ ସାହାଯ୍ୟ କରନ୍ତି । ଅନ୍ୟକୁ ସାହାଯ୍ୟ କରିବା ହେଲା ତାଙ୍କର ଧର୍ମ । ଏପରି ମାନବ ଧର୍ମରେ ସିଏ ନିଜକୁ ଦିକ୍ଷିତ୍ କରି ସମସ୍ତଙ୍କର ଅତିପ୍ରିୟ ପାତ୍ର ହୋଇପାରିଥିଲେ । ତାଙ୍କ ବିଭାଗ ପିଲାଙ୍କର ଦେହ ଖରାପ ଥିଲେ ସିଏ ନିଜେ ପିଲାର ଖବର ଏତେ ବୁଝୁଥିଲେ ଯେ ହଷ୍ଟେଲ ଲୋକମାନଙ୍କର ଦାୟିତ୍ୱ ବହୁତ କମି ଯାଉଥିଲା । ଏପରିକି ଗରିବ ପିଲାମାନଙ୍କୁ ବହୁତ ସମୟରେ ଔଷଧ ପତ୍ର ସେ ନିଜେ ଦେଇ ସେମାନଙ୍କୁ ନିରୋଗ ହେବାରେ ଚେଷ୍ଟିତ ଥିଲେ । କୌଣସି ଲୋକଙ୍କର ଦୋଷତ୍ରୁଟି ଦେଖୁ ନଥିଲେ । ସେସବୁ ଦୃଷ୍ଟିରୁ ତାଙ୍କୁ ଜଣେ ଗାନ୍ଧି ଚିନ୍ତାଧାରାର ଉଗ୍ର ଉପାସକ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେଣୁ ବାଣୀବିହାରର ଛାତ୍ରଛାତ୍ରୀ ତାଙ୍କୁ ଧନ୍ୟଧନ୍ୟ କହିବାର ମୁଁ ଶୁଣିଛି । ''ବାସୁସାର୍ ଆମର କେତେ ଭଲ । ତାଙ୍କ ଯୋଗୁଁ ମୁଁ ମଣିଷ, ସାର୍ ମୋ ପାଇଁ ପିତା ସଦୃଶ ।'' ସତରେ ସାର୍‌ଙ୍କୁ ସମସ୍ତେ କେତେ ଭଲ ପାଉଥିଲେ !! ଏଥିପାଇଁ ସାର୍ ଯାଇ ସ୍ୱର୍ଗରେ ବସିଥିବେ । ସାରାଜୀବନ ବହୁ ପରିଶ୍ରମ କରି ଏବେ ଭଗବାନଙ୍କ କୋଳରେ ସୁଖଶାନ୍ତିରେ ରହିଥାନ୍ତୁ । ସମସ୍ତଙ୍କ ପାଇଁ ଅଜସ୍ର ପରିଶ୍ରମ

କରି ଥକିଯାଇଥିଲେ ସିଏ । ଏବେ ସିଏ ଚିରଶାନ୍ତିରେ ବିଶ୍ରାମ ନେଉଥିବେ । ଯଥାର୍ଥରେ ବାସୁ ସାର୍ ଥିଲେ ପ୍ରକୃତରେ ଜଣେ ସାଧକ, କର୍ମର ଉପାସକ, ଜ୍ଞାନର ଶ୍ରୀଗଣେଶ, ଶିକ୍ଷାଦାନର ତୃତୀୟ ପାଣ୍ଡବ । ସିଏ ଏକାଧାରରେ ସଜ୍ଜନ, ଗୁଣୀ ମିଷ୍ଟାଳାପିର ଅବିଭକ୍ତ ଆତ୍ମା । ସେ ଚାଲିଯାଇଥିଲେ ମଧ୍ୟ ପୁସ୍ତକ ମାଧ୍ୟମରେ ଜଗତରେ ଅମର । ତାଙ୍କର ମୃତ୍ୟୁ ନାହିଁ । ଯୁଗେଯୁଗେ ସିଏ ଆମ ପାଖରେ ବଞ୍ଚି ରହିବେ । ସିଏ ଜଣେ ପ୍ରଚଣ୍ଡ ଧୀ-ଶକ୍ତି ସଂପନ୍ନ ଲୋକ । କ୍ଲାସ୍‌ରେ ପଢ଼ାଇଲା ବେଳେ ବିଷୟଟିକୁ ଏତେ ସୁନ୍ଦର ଭାବେ ସମୀକ୍ଷା କରନ୍ତି ଯେ ଶିକ୍ଷାଦାନର ପ୍ରଣାଳୀ ମଧ୍ୟ ଏକାଠି ପିଲାମାନେ ଶିଖିଥାଆନ୍ତି । ମୁଁ ଓଡ଼ିଆ ବିଭାଗରେ ନ ହେଲେ ମଧ୍ୟ ଭାରତୀୟ ସଂବିଧାନର ଟିକିଏ ଛିଟା ମୁଁ ତାଙ୍କ ନିକଟରେ ଆଭାସ ପାଏ । ସିଏ ଈଶ୍ୱରବାଦି ସାତ୍ତ୍ୱିକ ଭାବାପନ୍ନ ଲୋକ ହେଲେ ମଧ୍ୟ ଗଣତନ୍ତ୍ର ଓ ସାମ୍ୟବାଦି ଚିନ୍ତାଧାରା ସଂପନ୍ନ ବ୍ୟକ୍ତି । ତାଙ୍କ ପାଖରେ ଧନୀ, ଦରିଦ୍ର, ଉଚ୍ଚନୀଚ, ଭେଦଭାବ ନାହିଁ । ସମଦୃଷ୍ଟିରେ ସମସ୍ତଙ୍କୁ ଦେଖନ୍ତି । ସିଏ କହନ୍ତି ଯେ ସଂସାରରେ କେହି ବଡ଼ ନୁହନ୍ତି କି କେହି ସାନ ନୁହନ୍ତି । ସମସ୍ତେ ସମାନ । ଏହାହିଁ ତାଙ୍କର ସାମ୍ୟବାଦର ଲକ୍ଷଣ । ହିଂସା, ଦ୍ୱେଷ ଗୁଣଠାରୁ ସେ ନିଜକୁ ବହୁ ଦୂରରେ ରଖିଥିଲେ । ଅତି ଅମାୟିକ ଶାନ୍ତ, ସରଳ ମଣିଷଟିଏ । ତାଙ୍କର ବହୁ ଛାତ୍ରମାନେ ସାର୍‌ଙ୍କୁ ଏତେ ଭଲ ଯେ ତାଙ୍କୁ ପୂଜା କରିବାକୁ ଇଚ୍ଛା ହୁଏ । ଏବେ ଆମେମାନେ ହୃଦୟ ରୂପକ ସିଂହାସନରେ ବସାଇ କେବଳ ପୂଜାର୍ଚ୍ଚନା ହିଁ କରିପାରିବା । ସିଏ ଆଜି ଆମ ପାଖରେ ଶଶରୀରେ ନଥିଲେ ବି ଆମ ଚେତନା ରାଜ୍ୟରେ ଦଣ୍ଡାୟମାନ ଅଛନ୍ତି । ତାଙ୍କ ଅନୁପସ୍ଥିତି ଅସହ୍ୟ ହେଲେ ବି ସହିବାକୁ ପଡ଼ିବ । ଏହା ନିୟତିର ବିଧାନ । ପରଲୋକରେ ତାଙ୍କ ଆତ୍ମା ପରମ ଶାନ୍ତି ଲାଭ କରୁ ଏହାହିଁ ମୋର ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚରଣାବିନ୍ଦରେ ବିନମ୍ର ପ୍ରାର୍ଥନା ।



# ନିୟତି କେନ ବାଧତେ ?

ଶ୍ରୀମତୀ ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ

ଆମ ବାସୁସାର୍ ଚାଲିଗଲେ... । ବାସୁ ସାର୍ ଚାଲିଗଲେ ? ଏକଥାବି ବିଶ୍ୱାସ କରିବାକୁ ହେବ ? ନିୟତିର ନିର୍ଦ୍ଦେଶ ଏଭଳି ଅଲଂଘ୍ୟ ତେବେ ? ସମ୍ବାଦ ପତ୍ରର ଗୋଟିଏ କୋଣରୁ ଯେତେବେଳେ ଏଇ ସମ୍ବାଦଟି ପଢ଼ିଲି କାନପାଖରେ-ନା-ନା ମର୍ମଭୂମିରୁ ଶୁଭିଲା ମୋତେ-

'ଝିଅ ! ଆଉ କ'ଣ ନୂଆବହି ଲେଖିଲୁଣି ମା ?'

ହଁ, ଏଇ ତାଙ୍କର.ରୀତି ଓ ପଦ୍ଧତି । ସ୍ନେହ ବତ୍ସଳତାରେ ଛଳଛଳ ହୃଦୟ ସର୍ବଦା । ଛାତ୍ର ବତ୍ସଳ ଅଧ୍ୟାପକଟିଏ । ପିତା ସଦୃଶ ଅଜାଡ଼ି ଦିଅନ୍ତି ସ୍ନେହ ଅକୁଣ୍ଠ ଭାବରେ । ଆପେ ଖୋଲି ହୋଇଯାଏ ହୃଦୟ ତାଙ୍କ ପାଖରେ । ଭାର ଲାଘବ ହୋଇଯାଏ । ମୁଁ ତାଙ୍କର ଶ୍ରେଣୀକକ୍ଷ ଭିତରେ ଛାତ୍ରୀଟିଏ ହେବାର ସୁଯୋଗ ପାଇନାହିଁ, କାହିଁକି ପାଇନାହିଁ ବୋଲି ଭାଗ୍ୟକୁ ନିନ୍ଦିଛି ।

ଯେଉଁଦିନ ସମ୍ବାଦପତ୍ରରୁ ଜାଣିବାକୁ ପାଇଲି, ସେଦିନ ପୁରୀରେ ଭୀଷଣ ବର୍ଷା, ସତେକି ପ୍ରକୃତି ନିଜର ଶୋକ ସମ୍ବରଣ କରିପାରୁ ନଥାଏ ।

କାଲିପରି ଲାଗୁଛି, ୨୦୦୦ ମସିହା । ମୁଁ ସେତେବେଳେ ସରକାରୀ ମହିଳା ମହାବିଦ୍ୟାଳୟ, ପୁରୀରେ ଓଡ଼ିଆ ବିଭାଗର ମୁଖ୍ୟ ଥାଏ । ଓଡ଼ିଆ ସାହିତ୍ୟ ସଂସଦର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥାନ୍ତି ବାସୁ ସାର୍ । ସେଇ ପ୍ରଥମ ଦେଖା-ସେଇ ମଧ୍ୟ ଶେଷ ଦେଖା । ମାତ୍ର କେତୋଟି ଘଣ୍ଟା ଭିତରେ ସ୍ନେହରେ ଏମିତି ଛନ୍ଦି ବାନ୍ଧି ଦେଲେ ଯେ ଯେମିତି ଯୁଗଯୁଗ ଧରି ମୁଁ ତାଙ୍କ ପଦତଳେ ବସି ସାହିତ୍ୟ ସାଧନା କରୁଛି ଏବଂ ପିତାତୁଲ୍ୟ ସ୍ନେହରେ ସେ ମୋତେ ଧନ୍ୟା କରି ଦେଉଛନ୍ତି ! ସେଦିନ ସାହିତ୍ୟ ସଂସଦର ସେ ବାର୍ଷିକ ଉତ୍ସବରେ ତାଙ୍କର କି ଅନର୍ଗଳ ଭାଷଣ ! କି ପ୍ରତ୍ୟୁତ୍ପନ୍ନମତିତା ! କି ଅସମ୍ଭବ ସ୍ମରଣ ଶକ୍ତି ! ମୁହୂର୍ତ୍ତକ ଭିତରେ ସମଗ୍ର ଓଡ଼ିଆ ବିଭାଗର ମୋର ସମସ୍ତ ଛାତ୍ରୀଙ୍କ ନାମ ସେ ମନେରଖିଦେଲେ । ଏଭଳି ଆତ୍ମୀୟତା ଏ ଧୂଳି ଧରାରେ ସମ୍ଭବ ? ମୋତେ କହିଥିଲେ- 'ଝିଅ ! ତୋର ସବୁ ବହି ପଢ଼ିଛି । 'ପିତାମହ ଭୀଷ୍ମ' ଉପନ୍ୟାସଟି ଜଣେ

ବନ୍ଧୁଙ୍କଠାରୁ ଆଣି ତରବରିଆ ଭାବେ ପଢ଼ିଛି । ସୁବିଧା ଦେଖି ବହି ଖଣ୍ଡେ ପଠେଇବୁ, ନିଠେଇ ନିଠେଇ, ମଠେଇ ମଠେଇ ପଢ଼ିବି ଓ ତା' ଉପରେ ସମୀକ୍ଷାତ୍ମକ ସନ୍ଦର୍ଭଟିଏ ଲେଖିବି !'

ହେଳାରେ ପଠେଇ ପାରିଲିନି । କେଡ଼େବଡ଼ ଜିନିଷ, କେତେବଡ଼ ସୌଭାଗ୍ୟ ମୋର ହାତଛଡ଼ା ହୋଇଗଲା ସତେ ?

ଜୀର୍ଣ୍ଣବସ୍ତ୍ରଟିଏ ପରିତ୍ୟାଗ କରି ନୂତନ ବସ୍ତ୍ର ଅନ୍ୱେଷଣ ନ୍ୟାୟରେ ସେ ତାଙ୍କର ମାଟିର କଳେବରଟି ତ୍ୟାଗ କରିଛନ୍ତି; ମାତ୍ର ଯଶୋଦେହରେ ସେ ଅମର । ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଏହା କିନ୍ତୁ ଏକ ଅପୂରଣୀୟ କ୍ଷତି । ଓଡ଼ିଆ ଭାଷା ଓ ସାହିତ୍ୟର ଛାତ୍ରଛାତ୍ରୀଙ୍କ ପାଇଁ ସେଭଳି ପିତୃ ପ୍ରତିମ ଅଧାପକଟିଏ ମିଳିବା ସତରେ ଦୁଷ୍କର । ଆମେ ଯେଉଁମାନେ ବଞ୍ଚି ରହିଲୁ ମରଣ ଅବଧି ତାଙ୍କ ସ୍ମୃତିରେ ବତୁରି, ପଖାଳି ହୋଇ ବଞ୍ଚିଥିବୁ । ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ସାନ୍ତ୍ୱନା ଦେବାପାଇଁ ମୋ ପାଖରେ ଆଜି ଭାଷା ନାହିଁ । ତାଙ୍କର ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଶ୍ରୀଜଗନ୍ନାଥଙ୍କଠାରେ ପ୍ରାର୍ଥନା କରୁଛି । କାହାକୁ କି ସାନ୍ତ୍ୱନା ଦେବି ମୁଁ । ନିଜକୁ ବଡ଼ କଷ୍ଟରେ ବୁଝାଇବାକୁ ପଡୁଛି ଯେ 'ନିୟତି କେନ ବାଧତେ ?'



ଅଧ୍ୟକ୍ଷା, ସରକାରୀ ମହିଳା ମହାବିଦ୍ୟାଳୟ, ପୁରୀ

# ପୁଣ୍ୟାତ୍ମା ଗୁରୁଦେବ ସ୍ମରଣେ

ଡଃ ଯଦୁମଣି ଦାସ

ବିଶ୍ୱ ସାହିତ୍ୟରେ ଗୁରୁ ମାହାତ୍ମ୍ୟ ଚିରନ୍ତନ, ଶାଶ୍ୱତ । ଭାରତୀୟ ପରମ୍ପରାରେ ଗୁରୁଭକ୍ତି ଓ ଗୁରୁପୂଜା ସାର୍ବଜନୀନ । ଗୁରୁଭକ୍ତ ନଚିକେତା, ଅରୁଣି ପ୍ରଭୃତିଙ୍କ ଭକ୍ତିପୂତ ଗୁରୁସେବା, ଜୀବନୋତ୍ସର୍ଗ ଗୁରୁ-ଶିଷ୍ୟ ପବିତ୍ର ବନ୍ଧନରେ ଚିର ଭାସ୍ୱର । ଗୁରୁକୁଳ ଆଶ୍ରମର ସେହି ମନ୍ଦ୍ର ସାନ୍ଦ୍ର ଗୁରୁ ବନ୍ଦନାଟି ଉଜ୍ଜୀବିତ କରେ ବ୍ରହ୍ମମନ୍ତ୍ରରେ ପ୍ରତ୍ୟେକ ଶିଷ୍ୟର ହୃଦୟ ତନ୍ତ୍ରୀକୁ ଗୁରୁ ଗୌରବର ଅମୃତ ନିନାଦନରେ-

ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁଦେବ ମହେଶ୍ୱରଃ
ଗୁରୁ ସାକ୍ଷାତ ପରଂବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

ଚାହୁଁ ଚାହୁଁ ଏକ ବର୍ଷ ପୂରିଗଲା । ଆଜି ପୂଜ୍ୟ ଗୁରୁଦେବଙ୍କ ପବିତ୍ର ପ୍ରଥମ ବାର୍ଷିକୀ ଶ୍ରାଦ୍ଧ ଦିବସ । ଏହି ପୂଣ୍ୟତିଥି ମୋ ପାଇଁ ଅତି ସ୍ମରଣୀୟ । ଦିବଂଗତ ଗୁରୁଦେବ ପ୍ରଫେସର ଡକ୍ଟର ବାସୁଦେବଙ୍କ ପୁଣ୍ୟାତ୍ମା ପ୍ରତି ଅନ୍ତରର ଗଭୀରତମ ପ୍ରଦେଶରୁ କୃତାଞ୍ଜଳି ପୁଟେ କୋଟି ଭକ୍ତିପୂତ ପ୍ରଣାମ ଅର୍ପଣ କରୁଛି । ଚରଣ ପଙ୍କଜରେ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଅତୀତର ଗୁରୁଶିଷ୍ୟ ବନ୍ଧନ ନିବିଡ଼ିତ ସ୍ମୃତିରାଜି ରୋମନ୍ଥନ ପୂର୍ବକ ଗୁରୁଙ୍କ ସାନ୍ନିଧିଲାଭର କେତେକ ଅପାସୋରା ଅନୁଭବ୍ୟ ମୁହୂର୍ତ୍ତ ପ୍ରକାଶ ନକରି ରହିପାରୁନି ।

ମୋର ଏମ୍.ଏ. ଓଡ଼ିଆ ଫଳ ପ୍ରକାଶ ପାଇଲା ୧୯୮୪ ଜୁଲାଇରେ । ଷଷ୍ଠପତ୍ର 'ଭାଷାତତ୍ତ୍ୱ ଓ ଧ୍ୱନୀ ବିଜ୍ଞାନରେ ୭୪ ନମ୍ବର ପାଇ ଦୁଃଖିତ ଥିଲି । ଅଗଷ୍ଟ ମାସରେ ପ୍ରଥମେ ମୋର ଏହି ସାର୍‌ଙ୍କୁ ତାଙ୍କ ପ୍ରକୋଷ୍ଠରେ ଦେଖାକଲି । କମ୍ ନମ୍ବର ପାଇବାର କାରଣ ସମ୍ବନ୍ଧରେ ସାର୍‌ଙ୍କୁ ଅତି ନମ୍ର ଭାବରେ ଜିଜ୍ଞାସା କଲି । ସାର୍ ମୋତେ ଭଲଭାବେ ନିରୀକ୍ଷଣ କରି କିଛି ସମୟ ପରେ କହିଲେ-'ଏ ବର୍ଷ ରେଗୁଲାର ଛାତ୍ରଙ୍କ 'ଭାଷାତତ୍ତ୍ୱ ଓ ଧ୍ୱନି ବିଜ୍ଞାନ' ପତ୍ରରେ ସର୍ବୋଚ୍ଚ ନମ୍ବର ହେଉଛି ୭୫ । ତୁମେ ୭୪ ରଖିଛ । ଖୁବ୍ ଭଲ ନମ୍ବର ରଖିଛ ।'

ପରବର୍ତ୍ତୀ ସମୟରେ ପୂର୍ବ ସ୍ମୃତିକୁ ପାଥେୟ କରି ଗବେଷଣା ପାଇଁ ସାର୍‌ଙ୍କୁ ବହୁବାର ଅନୁନୟ ବିନୟ କରିଛି । ପ୍ରତିଥର ସ୍ଥାନାଭାବ ଜନିତ କାରଣରୁ ତାଙ୍କଠାରୁ ନିରାଶ ହୋଇଛି ।

ତାଙ୍କର ଶେଶୋକ୍ତି ମୋ ପ୍ରତିଥିଲା-''ତୁମର ଗୁରୁଭକ୍ତି ମନୋଭାବ ପାଇଁ ମୁଁ ମୁଗ୍ଧ । ଏକଲବ୍ୟ ପରି ତୁମର ଅକ୍ଳାନ୍ତ ଉଦ୍ୟମ ଜାଣି ମୁଁ ଆନନ୍ଦିତ । ହେଲେ ମୋ ପାଖରେ ବର୍ତ୍ତମାନ ୩୨ ଜଣ କାମ କରୁଛନ୍ତି । କେବେ ସ୍ଥାନ ଖୋଲା ହେବ କହିହେବ ନାହିଁ । ତୁମେ ଅନ୍ୟ କାହା ପାଖରେ କାମ କର ।''

ଏହାପରେ ଭଗବତ କୃପାରୁ ମୁଁ ସାର୍‌ଙ୍କ ଗୁରୁ ପ୍ରଫେସର ବଂଶୀଧର ମହାନ୍ତିଙ୍କ ତତ୍ତ୍ୱାବଧାନରେ ସନ୍ଦର୍ଭ ରେଜିଷ୍ଟ୍ରୀ କରି ଗବେଷଣା କାର୍ଯ୍ୟ ଆରମ୍ଭ କଲି । ସନ୍ଦର୍ଭର ନାମ ହେଲା 'ଓଡ଼ିଆ ପାଲା ସାହିତ୍ୟର ଉଦ୍ଭବ ଓ ବିକାଶ ।' ଦୁଃଖ ଏବଂ ପରିତାପର ବିଷୟ ଯେ ଗୁରୁଦେବ ପୁଣ୍ୟାତ୍ମା ପ୍ରଫେସର ଡକ୍ଟର ବଂଶୀଧର ମହାନ୍ତିଙ୍କ ଦେହାନ୍ତ ପରେ ମୁଁ ଦିଗହରା ହୋଇପଡ଼ିଥିଲି । ବହୁ ସମୟ ଅତିବାହିତ ପରେ ଉତ୍କଳ ବିଶ୍ୱବିଦ୍ୟାଳୟର ପୁନଃବିଚାରରେ ଉକ୍ତ ସନ୍ଦର୍ଭର ଦ୍ୱିତୀୟ ତତ୍ତ୍ୱାବଧାରକ ରୂପେ ନିଯୁକ୍ତ ହେଲେ ପୂଜ୍ୟ ଗୁରୁଦେବ ପ୍ରଫେସର ଡକ୍ଟର ବାସୁଦେବ ସାହୁ । ଏହାପରେ ଗୁରୁଦେବ ସାହୁଙ୍କ ସହ ମୋର ବାରମ୍ବାର ସାକ୍ଷାତ, ସନ୍ଦର୍ଭ ଆଲୋଚନା, ସଂଶୋଧନ, ଯୋଗବିଯୋଗ, ତର୍କ ବିତର୍କ, ଆନନ୍ଦ ବିଷାଦ ମଧ୍ୟରେ ପୁନଃଲିଖନ, ନବୀକରଣ ଇତ୍ୟାଦି ପର୍ଯ୍ୟାୟ ପରେ ଶେଷରେ ୧୯୯୭ ମସିହାରେ ସନ୍ଦର୍ଭ ପ୍ରସ୍ତୁତି ଶେଷ ହେଲା । ସାର୍ ଆନନ୍ଦରେ ମୋ ପିଠିରେ ହାତ ଥାପୁଡ଼ାଇ କହିଲେ- ''ଯଦୁ ! ସନ୍ଦର୍ଭ ନେଇ ତୁମେ ବର୍ତ୍ତମାନ ବିଶ୍ୱବିଦ୍ୟାଳୟ ଅଫିସରେ ଦାଖଲ କରିଆସ । ଏଣିକି ତୁମ କାମ ସରିଲା । ତୁମେ ଏବେ ମୁକ୍ତ ଆକାଶର ବିହଙ୍ଗ, ସ୍ୱାଧୀନ ।'' ସାର୍‌ଙ୍କ ଆଦେଶ ମାନି ସନ୍ଦର୍ଭକୁ ଧରି ବାଣୀବିହାର ଅଫିସ୍‌ରେ ଦାଖଲ କରିଥିଲି । ୧୯୯୮ରେ ସନ୍ଦର୍ଭ ଫଳ ପ୍ରକାଶ ଶୁଣି ଆନନ୍ଦିତ ହୋଇଥିଲି । ଫଳ ସ୍ୱରୂପ ଗୁରୁଦେବଙ୍କ ସଦିଚ୍ଛା, ଆଶୀର୍ବାଦରୁ ବହୁ ସାରସ୍ୱତ ଅନୁଷ୍ଠାନରୁ ଏବଂ ବ୍ୟକ୍ତି ବିଶେଷଙ୍କଠାରୁ ପ୍ରଶଂସିତ । ସମ୍ବର୍ଦ୍ଧିତ, ପୁରସ୍କୃତ ହେବାର ଗୌରବ ଅର୍ଜନ କରିଛି । ଆଗକୁ ବହୁତ କିଛି କରିବା ପାଇଁ ସେ ମୋତେ ସୁପରାମର୍ଶ ଦେଇଛନ୍ତି । ତାହା ଗୋଟିଗୋଟି କରି ମୋ ମାନସ ପଟରେ ଛପା ହୋଇ ରହିଛି ।

ପୂଜ୍ୟ ଗୁରୁଦେବଙ୍କ ପାଣ୍ଡିତ୍ୟ ଅଗାଧ, ଅମାପ, ବଚନାତୀତ । ସେ ବହୁଧା ଜ୍ଞାନର ଭଣ୍ଡାର । ଅଶେଷ ବ୍ୟକ୍ତିତ୍ୱର ସମନ୍ୱୟ । ଜ୍ଞାନ ତାଙ୍କର ହୃଦୟ ରଞ୍ଜକ । ବ୍ୟକ୍ତିତ୍ୱ ତାଙ୍କର ଲୋକ ରଞ୍ଜକ । ଓଡ଼ିଆ ସାହିତ୍ୟର ସେ ସ୍ନିଗ୍ଧ କଳାକାର । ଭାଷା ସାହିତ୍ୟର କୁଶଳୀ କଳାକାର । ଭାଷା ସାହିତ୍ୟ ଗବେଷଣାର ଦିପ୍ତୀମାନ ଦିବାକର । ଏହି କାରଣରୁ ବିଶ୍ୱବିଦ୍ୟାଳୟ ସ୍ତରୀୟ ଓଡ଼ିଆ ସାହିତ୍ୟାକାଶରେ ଉଜ୍ଜ୍ୱଳ ଧ୍ରୁବତାରାସନ ଅଳଂକୃତ କରି ପାଠକପାଠିକା, ଛାତ୍ରଛାତ୍ରୀ, ଶିକ୍ଷକ ଶିକ୍ଷିକା, ସହକର୍ମୀ ତଥା ବିଭାଗୀୟ ଉଚ୍ଚ କର୍ତ୍ତୃପକ୍ଷଙ୍କ ଚିତ ପ୍ରିୟ ଭାଜନ ହୋଇପାରିଛନ୍ତି । ଭାଷାତତ୍ତ୍ୱ, ଧ୍ୱନି ବିଜ୍ଞାନପରି ଜଟିଳ କ୍ଲିଷ୍ଟ ବିଷୟକୁ ସ୍ୱକୀୟ ଶୈକ୍ଷିକ ଅଧ୍ୟାପନା ଶୈଳୀରେ ରୁଚିପୂର୍ଣ୍ଣ, ସରଳ, ସାବଲୀଳ ବୋଧଗମ୍ୟ କରାଇ ଛାତ୍ରଛାତ୍ରୀ ମହଲରେ

ବିଶେଷ ଆଦୃତ ଥିଲେ ସେ । ଭଞ୍ଜ ସାହିତ୍ୟ 'ବୈଦେହୀଶ ବିଳାସ'ର ଲୌକିକରୁ ଅଲୌକିକ ଶବ୍ଦ, ଅର୍ଥ, ଭାବ ବିଶ୍ଳେଷଣର ଯାଦୁକରୀ ପଠନ ପାଠନରେ ଐଶ୍ୱରିକ ସତ୍ତା ଉପଲବ୍ଧି କରଣ ତଥା ଚିରନ୍ତନ ସତ୍ୟ ଉଦ୍‌ଘାଟନ ତାଙ୍କ ଅଧ୍ୟାପନାର ବିଶିଷ୍ଟ ଆକର୍ଷଣ । ଶିଷ୍ୟଶିଷ୍ୟାଙ୍କ ମଧୁର ଡାକ ନାମ ଉଚ୍ଚାରଣ, ଅନାବିଳ ବାତ୍ସଲ୍ୟ ସ୍ନେହ, ମମତାବୋଧ, ପାଗଳା, ବାଇଆ, ଚଗଲା ଡାକର ହୃଦୟଭରା ଆଦର, ସାହାଯ୍ୟ ସହଯୋଗ, ସମଦୁଃଖୀ, ସମସୁଖୀ ଭାବରେ ତାଙ୍କର ଛାତ୍ରବତ୍ସଳତା ତାଙ୍କୁ ଯୁଗପତ୍ ଉଚ୍ଚ ଗୁରୁ ଆସନ ପ୍ରଦାନ କରିଛି ।

୧୯୩୯ ମସିହା ଅକ୍ଟୋବର ୧ ତାରିଖରେ ନୟାଗଡ଼ ଜିଲ୍ଲାର ଓଡ଼ଗାଁ ଥାନା ରଙ୍ଗଣୀପାଟଣା ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ । ପିତା ଥିଲେ ଶ୍ରୀଯୁକ୍ତ ରାମଚନ୍ଦ୍ର ସାହୁ । ଆବାଲ୍ୟରୁ ଦାରିଦ୍ର୍ୟ ଜ୍ୱାଳାରେ ଗ୍ରସ୍ତ ପୂଜ୍ୟ ଗୁରୁଦେବ ଅଭାବ ଅନାଟନ ସହ ସଦା ସଂଘର୍ଷମୟ ଜୀବନ ବିତାଇଛନ୍ତି । କର୍ମକୁ ଜୀବନର ମହାନ କରି କର୍ମଯୋଗ ସାଧନାରେ କର୍ମଯୋଗୀ ହୋଇଛନ୍ତି । ସାଧନାର ସିଦ୍ଧିଲାଭ ପାଇଁ ସନ୍ନ୍ୟାସୀ ହୋଇଛନ୍ତି । ଖାଦ୍ୟପେୟ ହୋଇଛି ତାଙ୍କର ସାଧାସିଧା । ବେଶ ପୋଷାକ ସାଧାରଣ । ବ୍ୟବହାର ଭଦ୍ର, ସରଳ, ଅମାୟିକ । ଜୀବନ ଯାପନ ସାଧାରଣ । ଚିନ୍ତା ଚେତନା ଅସାଧାରଣ । କ୍ଷୁଦ୍ର ଭିତରେ ମହାନ୍,ଭୂମି ମଧ୍ୟରେ ଭୂମାର ଭାବନା ତାଙ୍କର ଆଦର୍ଶ । ତେଣୁ ସେ ସତ୍ୟନିଷ୍ଠ, ନୀତିନିଷ୍ଠ, କର୍ତ୍ତବ୍ୟ ନିଷ୍ଠ, କର୍ମଠ, କଷ୍ଟସହିଷ୍ଣୁ, ସମୟାନୁବର୍ତ୍ତୀ, ଶୃଙ୍ଖଳିତ, ମାର୍ଜିତ, ଏକାଗ୍ରଚିତ୍ତ, ଏକନିଷ୍ଠ, ମିତବ୍ୟୟୀ, ସହୃଦୟ, ଉଦାର, ପରୋପକାରୀ । ବ୍ୟକ୍ତିଗତ, ପାରିବାରିକ, ସାମାଜିକ, ସାଂସ୍କୃତିକ ଜୀବନ ତାଙ୍କର ଆଦର୍ଶମୟ । ସେ ବହୁ ଗୁଣ, ଆଦର୍ଶର ଅମ୍ଳାନ ମନୀଷୀ ।

ପରିବାର ତାଙ୍କର ଶାନ୍ତ, ସ୍ନେହସିକ୍ତ । ମଧୁର, ଆନନ୍ଦମୟ । ମା' ସତ୍ୟଶାନ୍ତି ସାହୁ (ଗୁରୁପତ୍ନୀ) ଶାନ୍ତା, ସରଳା । ଅତ୍ୟନ୍ତ ବାତ୍ସଲ୍ୟମୟୀ । ସ୍ନେହ, ଶ୍ରଦ୍ଧା, ମମତାର ଅବତାରୀ । ପେଟ, ପିଠି କଥା ଚିହ୍ନନ୍ତି । ମନକଥା ଜାଣନ୍ତି । ଦୁଃଖସୁଖ ବୁଝନ୍ତି । ସ୍ନେହମୟୀ ଜନନୀ ସେ ।

ଛାତ୍ର ଜୀବନରୁ ଗୁରୁଦେବ ଥିଲେ ପ୍ରଚଣ୍ଡ ପ୍ରଜ୍ଞା, ପ୍ରତିଭା, ଧୀଶକ୍ତି, ସ୍ମୃତି ଶକ୍ତିର ଅଧିକାରୀ । ଗଭୀର ଅଧ୍ୟୟନ ତପସ୍ୟା ସାଧନାରୁ ନିସୃତ ହୋଇଛି ତାଙ୍କ ଅମୃତ ଲେଖନୀରୁ ଅସରନ୍ତି ମନଛୁଆଁ କବିତା, ଗଳ୍ପ, ଏକାଙ୍କିକା, ପ୍ରବନ୍ଧ, ସମାଲୋଚନା ସାହିତ୍ୟ । ୧୯୬୧ ମସିହାରେ 'ସାନ୍ତ୍ୱନା' ପତ୍ରିକାରେ ତାଙ୍କ ଫଟୋ ସହ 'ଲିଟିରାରୀ ଚାମ୍ପିୟାନ' ପ୍ରକାଶ ତାଙ୍କ ସାହିତ୍ୟିକ ଜୀବନର ପ୍ରଥମ ମାଇଲ୍ ଖୁଣ୍ଟ ବିବେଚିତ ହୁଏ । ୧୯୬୩ ମସିହାରେ ଓଡ଼ିଆ ଅନର୍ସରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର 'ଶ୍ରେଷ୍ଠ ସ୍ନାତକ ସ୍ୱର୍ଣ୍ଣ ପଦକ' ପୁରସ୍କାର ଏବଂ ୧୯୬୫ ମସିହାରେ ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଁ ଭକ୍ତକବି ମଧୁସୂଦନ 'ସ୍ୱର୍ଣ୍ଣପଦକ' ପୁରସ୍କାର ତାଙ୍କ

ଛାତ୍ରଜୀବନର ଅଦ୍ୱିତୀୟ କୀର୍ତ୍ତି । ପ୍ରତିଭା ଅଧ୍ୟୟନର ଝଲକ ଉଦ୍‌ଭାସିତ ହୁଏ ତାଙ୍କ ପି.ଏଚ୍.ଡ଼ି ସନ୍ଦର୍ଭ ୧୯୭୩ ମସିହା 'ଓଡ଼ିଆ ଭାଷା ଉପରେ ବୈଦେଶିକ ପ୍ରଭାବ' ଉପାଧି ଲାଭରେ । ବାଗ୍ମୀ ଗୁରୁଦେବଙ୍କ ୧୯୮୫ ମସିହାରେ ଡି.ଲିଟ୍ ମହା ସନ୍ଦର୍ଭ 'ଓଡ଼ିଆ ସାହିତ୍ୟରେ ଶ୍ରୀ ଜଗନ୍ନାଥ ଚେତନା' ଉପାଧିଲାଭ ତାଙ୍କ ଗଭୀର ଗବେଷଣା ଓ ଗଢ଼ ପ୍ରଜ୍ଞା ଶକ୍ତିର ନିଦର୍ଶନ । ତାଙ୍କର ଅସାମାନ୍ୟ ସାହିତ୍ୟ-କୃତି ଏବଂ ଉଚ୍ଚକୋଟୀର ଗବେଷଣା ନିବନ୍ଧ ପାଇଁ ସେ ଉତ୍କଳ ଏକାଡ଼େମୀ, କଟକ, ବିଷୁବ ମିଳନ, ପ୍ରଜାତନ୍ତ୍ର ପ୍ରଚାର ସମିତି, କଟକ, ଯଦୁମଣି ସାହିତ୍ୟ ସଂସଦ, ଉଦୟପୁର, ନୂଆ ଗାଁ, ପୁରୀ, ନନ୍ଦିଘୋଷ, ଓଡ଼ିଶା, ସାହିତ୍ୟ ଶ୍ୱେତପଦ୍ମା, ପାରଳାଖେମୁଣ୍ଡି, ଗଜପତି, ଓଡ଼ିଶା, ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବାଣୀବିହାର, ଭୁବନେଶ୍ୱର ପ୍ରଭୃତି ବହୁ ଅନୁଷ୍ଠାନରୁ ପୁରସ୍କୃତ ଓ ଉଚ୍ଚ ସମ୍ବର୍ଦ୍ଧିତ ହୋଇଛନ୍ତି ।

୧୯୯୯ ମସିହା ସେପ୍ଟେମ୍ବର ମାସରେ ଗୁରୁଦେବ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରୁ ଜଣେ କୃତୀ ସଫଳ ପ୍ରଫେସର ରୂପେ ଅବସର ଗ୍ରହଣ କରିଥିଲେ । ଆମେ ତାଙ୍କର ଅଗଣିତ ଛାତ୍ରଛାତ୍ରୀ, ଗବେଷକ ଗବେଷିକା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଏକତ୍ର ହୋଇ ୨୦୦୦ ମସିହା ମାର୍ଚ୍ଚ ୧୨ ତାରିଖରେ ସୂଚନା ଭବନ, ଭୁବନେଶ୍ୱରଠାରେ ତାଙ୍କୁ ଭକ୍ତିପୂତ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲୁ । ତାହା ଚିର ସ୍ମରଣୀୟ ।

ତା ୨୭.୦୭.୨୦୦୫ ରିଖ ବୁଧବାର । ଗୁରୁଜୀଙ୍କ ମହାପ୍ରୟାଣ ଦିବସ । ହଠାତ୍ ଗୁରୁଦେବଙ୍କ ପରଲୋକଗମନ ବାର୍ତ୍ତା ମୋ ସାରସ୍ୱତ ଜୀବନ ପଥକୁ ଅନ୍ଧକାରମୟ କରି ଦେଇଛି । ତଥାପି ଜୀବନ ପଥେ ସେ ଉଜ୍ଜ୍ୱଳ ଆଲୋକ । ସେ ଅନନ୍ୟ, ଅନନ୍ତ । ଅନନ୍ତ ବାସୁଦେବ । ସର୍ବକାଳିକ ମୋ ପୂଜ୍ୟ ପୁଣ୍ୟାତ୍ମା ଗୁରୁଦେବ ପ୍ରଫେସର ଡକ୍ଟର ବାସୁଦେବ ସାହୁ । ପୁଣ୍ୟାତ୍ମା ଗୁରୁଦେବ ଚିର ସ୍ୱର୍ଗ-ଶାନ୍ତି ଲାଭ କରନ୍ତୁ, ଏତିକି ପ୍ରାର୍ଥନା ।



ହିନ୍ଦି ଶିକ୍ଷକ, ବଂଶୀଧର ବିଦ୍ୟାପୀଠ
ମଦନପୁର, କେନ୍ଦୁଝର

# ସମୁଦ୍ରରୁ ଶଙ୍ଖେ

ଡଃ ଜୟଶ୍ରୀ ନନ୍ଦ

୧୯୭୯-୮୦ ମସିହାର କଥା । ସମ୍ବଲପୁର ମହିଳା ମହାବିଦ୍ୟାଳୟରେ ମୁଁ ଓଡ଼ିଆ ଅନର୍ସ ନେଇ ପଢୁଥାଏ । ଛୁଟିରେ ଘରକୁ (ଭୁବନେଶ୍ୱର) ଆସିଥିଲି । ବାଣୀବିହାରରେ ଓଡ଼ିଆରେ ପି.ଜି. କରୁଥିବା ଜଣେ ନାନୀଙ୍କଠାରୁ ପ୍ରଥମେ ଶୁଣିଲି ଡଃ ବାସୁଦେବ ସାହୁଙ୍କ ବିଷୟରେ । ବାସୁ ସାର୍‌ଙ୍କ ଏତେ ପ୍ରଶଂସା ଶୁଣିଲା ପରେ ଇଚ୍ଛା ହେଉଥିଲା ତାଙ୍କୁ ଟିକିଏ ଦେଖନ୍ତି । ତାଙ୍କ ନିକଟରେ ପାଠ ପଢ଼ନ୍ତି । ସେ ସୁଯୋଗ ମତେ ମିଳିଲା । ବାଣୀବିହାରରେ ମୁଁ ଓଡ଼ିଆ ବିଭାଗ ସ୍ନାତକୋତ୍ତରରେ ନାମ ଲେଖାଇଲି । ବାସୁ ସାର୍‌ଙ୍କ ନିକଟରେ ପଢ଼ିବାର ସୌଭାଗ୍ୟ ମତେ ପ୍ରାପ୍ତ ହେଲା ।

ସାର୍ ଆମର 'ବୈଦେହୀଶ ବିଳାସ' ପଢ଼ାଉଥିଲେ । ସାର୍ ଏତେ ସ୍ପଷ୍ଟ ଭାବରେ ଗୋଟି ଗୋଟି କରି ପଦ ବୁଝାଇଯାନ୍ତି ଯେ, ପରେ ବହି ପାଇଁ ବିଭିନ୍ନ କଥାମାନ ଦୃଷ୍ଟାନ୍ତ ଦେଇ ଶେଷରେ ସେଇ ପଦଟିକୁ ଆସନ୍ତି । ସାର୍‌ଙ୍କର କି ଅଦ୍‌ଭୁତ ଧୈର୍ଯ୍ୟ ଗୋଟାଏ ପଦକୁ ଦୀର୍ଘସମୟ ବୁଝାଇବାରେ ବି ସେ ବିରକ୍ତ ହୁଅନ୍ତି ନାହିଁ କି କ୍ଳାନ୍ତ ମନେହୁଅନ୍ତି ନାହିଁ । ଖାଲି ସେତିକି ନୁହେଁ, ଭଂଜ ସାହିତ୍ୟର ପ୍ରଶ୍ନୋତ୍ତର କିଭଳି ଲେଖିବାକୁ ପଡ଼ିବ ତାହା ଆମୂଳଚୂଳ ବତାଇ ଦିଅନ୍ତି । ପରୀକ୍ଷା ପାଇଁ ଆଉ ଚିନ୍ତା ନଥାଏ । ସମସ୍ତ ପ୍ରସ୍ତୁତି ସରିଥାଏ । ସାର୍‌ଙ୍କର ପ୍ରତ୍ୟେକଟି ଛାତ୍ରଛାତ୍ରୀ ଏକଥା ନିଶ୍ଚୟ ହୃଦୟଙ୍ଗମ କରିଥିବେ । କେତେ ସ୍ୱତନ୍ତ୍ର ଓ କେତେ ହୃଦୟସ୍ପର୍ଶୀ ତାଙ୍କରି ଶିକ୍ଷାଦାନର ଶୈଳୀ ।

କଥା ଅଧା ରହିଯିବ ଯଦି ମୁଁ 'ଠା ପୀଢ଼ା' କଥା ନକହିବି । ସେ ବର୍ଷ ମୋର ଷଷ୍ଠ ବର୍ଷ । ସାର୍ ଆମର ଭାଷାତତ୍ତ୍ୱ ପଢ଼ାଉଥିଲେ । ତଦ୍‌ଭବ ଶବ୍ଦାବଳୀର ବ୍ୟୁତ୍ପତ୍ତିକ୍ରମ ତଦ୍‌ଭବ ଶବ୍ଦ କିଭଳି ସଂସ୍କୃତରୁ ବିଭିନ୍ନ ସ୍ତର ଦେଇ ଆସିଛି ଏବଂ ଏହା କେଉଁ କେଉଁ ନିୟମର ବଶବର୍ତ୍ତୀ ହୋଇଛି ତାହା ଦର୍ଶାଇବାକୁ ଯାଇ ବିଭିନ୍ନ ପ୍ରକାର କଥା କହି ଗପ କହି ଶବ୍ଦଟିକୁ ଆସନ୍ତି । ଆଉ ସେଇ ଗୋଟିଏ ଗୋଟିଏ ଶବ୍ଦ ଆମମାନଙ୍କ ମନରେ ଯେମିତି ଲାଗି ହୋଇ ରହିଯାଏ ତାକୁ ଆଦୌ ଭୁଲି ହୁଏ ନାହିଁ ।

ସାର୍ ସେଦିନ କ୍ଲାସରେ ପହଞ୍ଚି ଆରମ୍ଭ କଲେ 'ଠାଁ' ଶବ୍ଦର ବ୍ୟୁତ୍ପତ୍ତି କ୍ରମ । 'ଠାଁ'ର ଅର୍ଥ ସ୍ଥାନ । ଆମର ଆଉ ଗୋଟିଏ ଶବ୍ଦ ଜାଣିଛ 'ଠା ପୀଢ଼ା' ତା' ମାନେ କ'ଣ ? ଆମେ

ସବୁ ସାର୍‌ଙ୍କ ମୁହଁକୁ ଅନେଇଥାଉ । ସାର୍ କହିଲେ କାଲି ମୁଁ ଜଣଙ୍କ ଘରକୁ ଯାଉଥିଲି । ସିଏ ମୋର ଛାତ୍ରଟିଏ । ତାଙ୍କ ଘରେ ମତେ କେହି ଚିହ୍ନି ନାହାନ୍ତି । ମୁଁ ସେଇବାଟେ ଯାଉଯାଉ ପିଲାଟିକୁ ଦେଖି ତାଙ୍କ ଘରକୁ ପଶି ଯାଇଥିଲି । ତାଙ୍କ ମାଆ ମତେ ସ୍ନେହରେ ଡାକି ଆସନ ପକେଇ, ସୁନ୍ଦର ଭାବରେ ବାଢ଼ି ଖାଇବାକୁ ଦେଲେ । ଆଦର ସତ୍‌କାର କରିବା ସୁନ୍ଦର ଭାବରେ ଖାଇବାକୁ ବାଢ଼ି ଦବାକୁ କୁହାଯାଏ 'ଠା ପୀଢ଼ା' । ବୋହୂଟିଏ ଘରକୁ ଆସିଲେ ସେ କେମିତି ଆଦର ଯତ୍ନରେ ଖାଇବାକୁ ବାଢୁଛି ତାକୁ ଚାହିଁଥାନ୍ତି ଘରର ଗୁରୁଜନମାନେ । ଝିଅଟି ସଣ୍ଢଣା ଜାଣିଚି କି ନାହିଁ ତା ଦେଖନ୍ତି । ଆଜି କିନ୍ତୁ, ସେସବୁ ନିୟମ ଆଉ ନାହିଁ । ଆଜି ଆଧୁନିକ ଯୁଗରେ 'ଠା ପୀଢ଼ାର ସ୍ଥିତି ବଡ଼ ଦୁର୍ବଳ । ଭାଇଭାଗ ପରି 'ଠା' ଅଲଗା ଓ 'ପୀଢ଼ା' ଅଲଗା ହୋଇଯାଇଛି । ସାର୍ ତା'ପରେ ପଢ଼ାଇଥିଲେ କିପରି ସଂସ୍କୃତ ସ୍ଥାନ ଶବ୍ଦରୁ 'ଠାଁ' ଶବ୍ଦର ଉତ୍ପତ୍ତି ।

ଏମିତି ଥିଲେ ଆମର ବାସୁ ସାର୍ । ଭାଷାତତ୍ତ୍ୱ ପରି ନୀରସ ପାଠକୁ ସରସ କରି ପଢ଼ାଉଥିଲେ । ଗପ କହି ବୁଝେଇବା ପରି ଆମକୁ ବୁଝଉଥିଲେ ଆମ ସାର୍, ଯେମିତି ତାଙ୍କର ଆମେ ସବୁ ଛୋଟ ଛୋଟ ପିଲା ।

ସାର୍‌ଙ୍କ ନିକଟରେ ଗବେଷଣା କରିବାର ସୌଭାଗ୍ୟ ମତେ ମିଳିଥିଲା । ମୋର ସନ୍ଦର୍ଭର ବିଷୟବସ୍ତୁ ଡଃ କୃଷ୍ଣପ୍ରସାଦ ମିଶ୍ରଙ୍କର ସାହିତ୍ୟିକ କୃତିର ଅଧ୍ୟୟନ'' ଚୟନ କରି ସାର୍ କରିଥିଲେ ଡଃ କୃଷ୍ଣପ୍ରସାଦଙ୍କ ଉପରେ ପୂର୍ବରୁ କୌଣସି କାମ ହୋଇନି । ଡଃ ମିଶ୍ର ଜଣେ ଦାର୍ଶନିକ ସାହିତ୍ୟିକ । ତାଙ୍କ ଉପରେ କାମ କଲେ ଭଲ ହେବ । ତାଙ୍କରି ଆଶୀର୍ବାଦରୁ କଷ୍ଟରେ ସ୍ରୋତକୁ ମୁଁ ଯେଉଁଦିନ ପାରି ହୋଇଥିଲି ସାର୍ ଖୁସିରେ ସେଦିନ ଗଦ୍‌ଗଦ୍ ହୋଇଯାଇଥିଲେ । ସାର୍ ପ୍ରତ୍ୟେକଟି ଅକ୍ଷର, ପ୍ରତ୍ୟେକଟି ଧାଡ଼ିକୁ ଆଦୌ ବ୍ୟସ୍ତ ନହୋଇ ସ୍ଥିର ଚିତ୍ତରେ ସଂଶୋଧନ କରି ଚାଲନ୍ତି । ମୋର ଉପସ୍ଥିତିରେ ସାର୍ ସଂଶୋଧନ କରନ୍ତି । ସ୍ପଣ୍ଡିଲାଇଟ୍‌ସ ପାଇଁ ସେତେବେଳେ ସାର୍‌ଙ୍କର ବେକରେ ଯନ୍ତ୍ରଣା ହେଉଥାଏ । ତଥାପି ସାର୍ ଧୀର ସ୍ଥିର ଭାବରେ ତାଙ୍କ କାମ କରିଯାଆନ୍ତି । ଠିକ୍ ଚାରିଟା ବେଳକୁ ଘଣ୍ଟାକୁ ଚାହିଁ କହନ୍ତି, ''ଚାରିଟା ବାଜିଲା, ତୁ ଏଥରକ ଘରକୁ ଯା', ଡେରି ହୋଇଯିବ ।'' କିଏ ଏତେ ସମୟ ଦେବ ଜଣେ ଜଣେ ଛାତ୍ରଙ୍କୁ ? କେବଳ ମୁଁ ନୁହେଁ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ପ୍ରତି ସେତିକି ଯତ୍ନଶୀଳ ଥିଲେ ଆମ ସାର୍ । ଜଣେ ନିଷ୍ଠାପର ଶିକ୍ଷକ ଯିଏ ଛାତ୍ରଛାତ୍ରୀମାନଙ୍କର ସମସ୍ତ ଦାୟିତ୍ୱବୋଧକୁ ସ୍ୱତଃ ପ୍ରବୃତ୍ତ ଭାବରେ ନିଜ ଉପରକୁ ମୁଣ୍ଡେଇ ନେଉଥିଲେ ।

ଜଣେ ଉତ୍ତମ ଗୁରୁଙ୍କ କଥା ପଡ଼ିଲେ ସାର୍‌ଙ୍କ ଶାନ୍ତ କମନୀୟ ପ୍ରତିଛବି ମନଭିତରେ ଭାସିଉଠେ , ତାଙ୍କର ଆଦର୍ଶଶିକ୍ଷାଦାନ, ଉଚ୍ଚକୋଟୀର ଗବେଷଣା ଓ ଛାତ୍ରବତ୍ସଳତା ସାର୍‌ଙ୍କୁ ଚିରନ୍ତନ କରି ରଖିବ । 'ବାସୁ ସାର୍' ଆଜି ପାର୍ଥିବ ଜଗତରେ ନଥିଲେ ବି ପ୍ରତ୍ୟେକଟି

ଛାତ୍ରଛାତ୍ରୀଙ୍କ ହୃଦୟ ଭିତରେ ରହିଯାଇଛନ୍ତି । 'ବାସୁସାର୍' ଏଇ ଚାରୋଟି ଅକ୍ଷର ମନରେ ଅଖଣ୍ଡ ବିଶ୍ୱାସ ଭରିଦିଏ, ଅଜସ୍ର ସ୍ନେହମମତା ଓ ଅନେକ ଗର୍ବ ମଧ୍ୟ ମନରେ ଆଣିଦିଏ ଯେ ମୁଁ ବାସୁ ସାର୍‌ଙ୍କ ଛାତ୍ରୀ ।

ମନ ଭିତରେ ଗୋଟଏ ଅବଶୋଷ ରହିଗଲା ଶେଷ ସମୟରେ ସାର୍‌ଙ୍କୁ ଦର୍ଶନ କରିପାରିଲିନି । ଗୋଟିଏ ଅଭିମାନ ରହିଗଲା । ସାର୍ ଶେଷପର୍ଯ୍ୟନ୍ତ ନିଜ ଦେହ ଖରାପ କଥା ମୋ ଠାରୁ ଲୁଚାଇ ରଖିଲେ । ସାର୍‌ଙ୍କ ଦୋହାନ୍ତର ଦୁଇମାସ ପୂର୍ବରୁ ସାର୍‌ଙ୍କ ସହିତ ସାକ୍ଷାତ୍ ହୋଇଥିଲା । ଦୀର୍ଘସମୟ ଧରି କଥାବାର୍ତ୍ତା ମଧ୍ୟ କରିଥିଲେ ।

ସାର୍ ଆପଣ ସମସ୍ତଙ୍କୁ ଏତେ ଆପଣାର କରି ପୁଣି ଏତେ ପର କେମିତି କରିଦେଲ ? ସାର୍ ଆପଣଙ୍କୁ ମୋର ଭକ୍ତିପୂତ ପ୍ରଣାମ । ଆପଣ ଯେଉଁଠି ବି ଥାଆନ୍ତୁ ଏମିତି ଜ୍ଞାନବିତରଣ କରୁଥାନ୍ତୁ । ବାତ୍ସଲ୍ୟ ସ୍ନେହରେ ଆମମାନଙ୍କୁ ଜୁଡୁବୁଡୁ କରି ଧୈର୍ଯ୍ୟ, ସାହସ ଓ ଆଶୀଷ ଢାଳିଦିଅନ୍ତୁ । ଆପଣଙ୍କର ସ୍ନେହାଶୀଷ ଆମର ସର୍ବଦା କାମ୍ୟ ।



ଅଧ୍ୟାପିକା, ଓଡ଼ିଆ ବିଭାଗ
ପି.ପି. କଲେଜ, ନିଶ୍ଚିନ୍ତକୋଇଲି, କଟକ

# ହେ ତପସ୍ୱୀ ଫେରିଆସ

ସତ୍ୟଶାନ୍ତି ସାହୁ (ଧର୍ମପତ୍ନୀ)

କେଉଁଠି ଜନ୍ମନେଲ !
କେଉଁଠି ଜୀବନ ଗଢ଼ିଲ !
ଆଉ କେଉଁଠି ନିଜକୁ ହଜାଇ ଦେଲ
ହେ ତପସ୍ୱୀ ଧନ୍ୟ ତୁମେ, ଧନ୍ୟ ତମ ଜୀବନ ସଂକଳ୍ପ ।
ପୁନଃପୁନଃ ଦାରିଦ୍ର୍ୟର କଷାଘାତରେ
ନିଷ୍ପେଷିତ ହୋଇ ମଧ କେବେ ଦିନେ ପଛକୁ ଓହରି ନଥିଲ ?
ଚାଲିଥିଲ ଆଗକୁ ଆଗକୁ ଆହୁରି ଆଗକୁ
ନିଜ ହାତରେ ନିଜକୁ ଗଢ଼ିଲ
ରଖିଗଲ, କେତେ ଯଶ, କେତେ କୀର୍ତ୍ତି
ଆଉ କେତେ ସମ୍ମାନର ଚିହ୍ନ ।
କେତେ ସ୍ୱପ୍ନ କେତେ କଳ୍ପନାର ସବୁଜିମାର
ଗାଲିଚାରେ ବାଟ ଚାଲୁଚାଲୁ କେତେଥର ଝୁଣ୍ଟି ପଡୁଥିଲ
ପୁଣି ନିଜକୁ ନିଜେ ଉଠିପଡ଼ି ପାହୁଣ୍ଡ ପକାଉଥିଲ ।
ବଞ୍ଚିବାର ଆଶା ନେଇ ଅସରନ୍ତି ସ୍ୱପ୍ନ ଦେଖୁଥିଲ
କଳ୍ପନାର ଜନ୍ହାରେ ଉଙ୍କି ମାରୁଥିଲ ।
ସବୁ ଯେମିତି ଭଙ୍ଗା ପଡ଼ିଗଲା ଜୀବନ
ସମୁଦ୍ରର ଅତଳ ଢେଉରେ ।
ତୁମ ଭାବନାର ଲମ୍ବା ରାସ୍ତା ଅଟକି ଗଲା
ନିୟତିର କେଉଁ ଏକ ଶକତ ଧକ୍କାରେ
ଆଶା ସବୁ ଅଧୁରା ରହିଲା
ପୂରିଲାନି ତୁମ ଇଚ୍ଛା ଚାଲିଗଲ ତୁମେ
'ହେ ତପସ୍ୱୀ' ଫେରିଆସ ପୁଣିଥରେ ଏ ମର୍ତ୍ତ୍ୟମଣ୍ଡଳେ
ମୋର ଏଇ ଶୋକାକୁଳ ଘରେ ଭରିଦିଅ ଅଜସ୍ର ଆନନ୍ଦ
ଏତିକି ମୋ ନିବେଦନ କରୁଛି ପ୍ରଣାମ
ତୁମ ଆତ୍ମାର ଶାନ୍ତି ହେଉ ହେ ଜ୍ଞାନୀ ପ୍ରବୀର ।

# ମୋ ମାମୁ : ଏକ ଅମଳିନ ଦୀପଶିଖା

## ସନ୍ତୋଷ କୁମାର ସାହୁ(ବଡ଼ବାୟା)

ଗୋଟିଏ ବର୍ଷ ବିତିଗଲା । ମାମୁଙ୍କର 'ବଡ଼ବାୟା', 'ବାପାରେ' ଡାକ ଆଉ ଶୁଣିବାକୁ ମିଳୁନି । କିନ୍ତୁ ଏମିତି ଗୋଟିଏ ଦିନ ଯାଇନି, ଯେଉଁଦିନ ତାଙ୍କର ସ୍ମୃତି ମୋ ସାମ୍ନାରେ ଭାସି ନଯାଇଛି । ମୃତ୍ୟୁ ପରେ ଅମର ହୋଇ ରହିଛନ୍ତି ସେ ମୋ ସ୍ମୃତିରେ । ସେ ମୋର ପୂଜ୍ୟ, ଚିର ନମସ୍ୟ ।

ଓଡ଼ିଆ ଭାଷା ଓ ସାହିତ୍ୟର ବିନୟୀ ବିଦ୍ୱାନ୍ ଓ ଗବେଷକ ଡଃ ବାସୁଦେବ ସାହୁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି. ଓ ଡି.ଲିଟ୍ ଲାଭ କରି ଅର୍ଦ୍ଧଶତାଧିକ ଗବେଷକଙ୍କୁ ଦିଗ୍‌ଦର୍ଶନ ଦେଇଥିଲେ ଏଇ ଡିଗ୍ରୀ ହାସଲ କରିବା ପାଇଁ । ଜଣେ କବି, ସୁଲେଖକ, ସୁଶିକ୍ଷକ ଓ ସୁବକ୍ତା ଭାବରେ ସେ ଯେଉଁ ଖ୍ୟାତି ଲାଭ କରିଛନ୍ତି, ତାହା ତାଙ୍କର ଅଗଣିତ ଛାତ୍ର, ସହକର୍ମୀ ଓ ଗୁଣମୁଗ୍ଧ ସୁଧୀବୃନ୍ଦ ମୋ ଅପେକ୍ଷା ଯଥେଷ୍ଟ ଅଧିକ ଜାଣନ୍ତି । ତେବେ ମୁଁ ତାଙ୍କୁ ମୋର ଶୈଶବରୁ ଯେମିତି ଜାଣେ, ତାହା ହିଁ କହିବି ।

ମୋ ଜନ୍ମବେଳକୁ ମାମୁ ଓଡ଼ଗାଁ ହାଇସ୍କୁଲରେ ପଢୁଥିଲେ । ମା ଓ ମାମୁଁ ଥିଲେ ଅଜା, ଆଈଙ୍କର ଗୋଟିଏ ଝିଅ ଓ ଗୋଟିଏ ପୁଅ । ଭାଇ ଭଉଣୀଙ୍କ ମଧ୍ୟରେ ଶ୍ରଦ୍ଧା ଓ ସ୍ନେହ ନଦେଖିଲେ ବିଶ୍ୱାସ କରିହେବନି । ଜନ୍ମ ସମୟରେ ମୁଁ ପରିବାର ମଧ୍ୟରେ ପ୍ରଥମ ସନ୍ତାନ ହୋଇଥିବାରୁ ସମସ୍ତେ ଖୁସୀ ହୋଇଥିଲେ ଏବଂ ସବୁଠୁ ବେଶୀ ଖୁସୀ ହୋଇଥିଲେ ମାମୁ । ସ୍କୁଲର ପାଠପଢ଼ା ଠିକ୍ ସମୟରେ ସାରି, ବାପା ମା'ଙ୍କୁ କାମରେ ସାହାଯ୍ୟ କରି ମୋ ପାଇଁ ଯଥେଷ୍ଟ ସମୟ ରଖନ୍ତି ଗେଲ କରିବାକୁ, ମୋ ସାଙ୍ଗରେ ଖେଳିବାକୁ । ମୋର ଝାପ୍‌ସା ମନେପଡୁଛି ମାମୁଙ୍କ କାନ୍ଧରେ କାନ୍ଧି ହୋଇ ମୁଁ ମା' ପାଖରୁ ସକାଳୁ ସକାଳୁ ଚାଲିଆସେ ଆଈ ପାଖକୁ । ଓଡ଼ଗାଁରୁ ରଙ୍ଗଣୀପାଟଣା ପ୍ରାୟ ଦୁଇମାଇଲ ରାସ୍ତାରେ ମାମୁଁ କେତେ ଗେଲ କରନ୍ତି ରାସ୍ତା କଡ଼ ଗାଡ଼ିଆର କଇଁଫୁଲ ଦେଖାଇ ଦେଖାଇ । ସଂଧ୍ୟାବେଳେ ମତେ ପୁଣି ଛାଡ଼ି ଆସନ୍ତି ମା' ପାଖରେ । ଗାଁ ଦାଣ୍ଡରେ ବଢ଼େଇ ତିଆରି ଛୋଟ ଶଗଡ଼ ଗାଡ଼ିରେ ବୁଲାନ୍ତି ମତେ ବସେଇ ଦଉଡ଼ିରେ ଟାଣି ଟାଣି ।

ମୁଁ ଟିକିଏ ବଡ଼ ହେଲା ପରେ ମୋ ହାତଧରି ମାମୁ ଗାଁ ସ୍କୁଲରେ ଭର୍ତ୍ତି କରେଇଥିଲେ । ସେ ବୋଧହୁଏ ସେତେବେଳେ ପୁରୀ କଲେଜରେ ପଢୁଥିଲେ । ଗାଁକୁ ଯେତେବେଳେ ଆସନ୍ତି,

ମୋ ପାଇଁ ନିଶ୍ଚୟ ଆଣନ୍ତି କିଛି ପାଠପଢ଼ା ସଂବନ୍ଧୀୟ ବହିପତ୍ର । ମୁଁ ଉପର ଶ୍ରେଣୀକୁ ଗଲା ପରେ ସେ ଯେତେବେଳେ ଛୁଟିରେ ଆସନ୍ତି, ଗାଁ ଘର ବରଣ୍ଡାରେ ମୋ ସାଙ୍ଗରେ ବସିଯାଆନ୍ତି ପାଠ ପଢ଼ାଇବା ପାଇଁ । ସିମେଣ୍ଟ ପିଣ୍ଡାରେ ଚକ୍‌ଖଡ଼ିରେ ଏବଂ ରାତିରେ ଲଣ୍ଠନ ଆଲୁଅରେ ଆମର ଅଙ୍କ କଷା ହୁଏ, ଭୂଗୋଳ ଇତିହାସ ବା ଇଂରାଜୀ ପଢ଼ା ହୁଏ । ମୋର ପାଠପଢ଼ାର ମୂଳଦୂଆ ଶକ୍ତ କରିବା ପାଇଁ ମାମୁ ଥିଲେ ଶତତ ଜାଗ୍ରତ ।

ମୋର ମାଟ୍ରିକ୍ ପରୀକ୍ଷା ସମୟ । ପାଠପଢ଼ାରେ ଉନ୍ନତି ଦେଖି ମାମୁଙ୍କର ବୋଧେ ହୃଦ୍‌ବୋଧ ହୋଇଥିଲା ବଡ଼ବାୟା ଭଲ କରିବ । ଓଡ଼ଗାଁ ସ୍କୁଲ ପିଲାଙ୍କର ପରୀକ୍ଷାକେନ୍ଦ୍ର ଥାଏ ଶରଣକୂଳରେ । ମାମୁଁ ସତେବେଳେ ପୁରୀ କଲେଜରେ ଓଡ଼ିଆ ଅଧ୍ୟାପକ । ଛୁଟି ନେଇ ସେ ମୋତେ ଶରଣ କୂଳରେ ଗୋଟିଏ ଭଡ଼ା ଘରେ ରଖିଲେ କାରଣ ସବୁ ପିଲାଙ୍କ ସାଂଗରେ ମିଶି କରି ରହିଲେ ଭଲ ପଢ଼ା ହେବ ନାହିଁ । ପରୀକ୍ଷା ପୂର୍ବଦିନ ଏପରିକି ପରୀକ୍ଷାର ଅଳ୍ପ ସମୟ ଆଗରୁ ମତେ ସେ ପଢ଼େଇ ଦେଉଥିଲେ । ତାଙ୍କର ଦିଗ୍‌ଦର୍ଶନ ଏବଂ ପ୍ରଭୁ ରଘୁନାଥଙ୍କ ଆଶୀର୍ବାଦରୁ ମୁଁ ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଥମ ଦଶଜଣଙ୍କ ମଧ୍ୟରେ ତୃତୀୟ ସ୍ଥାନ ପାଇଥିଲି ୧୯୬୯ ମସିହାରେ । ସେଥିପାଇଁ ସବୁଠୁ ବେଶି ଖୁସୀ ହୋଇଥିଲେ ମାମୁ । ଯେମିତି ମାଳି ପ୍ରସ୍ଫୁଟିତ ଫୁଲଟିକୁ ଦେଖି ଖୁସୀ ହୋଇଯାଏ ।

ମୋର ମାଟ୍ରିକ୍ ପରୀକ୍ଷା ଫଳ ବାହାରିଲାବେଳକୁ ମାମୁ ବାଣୀବିହାର ଓଡ଼ିଆ ବିଭାଗରେ ନିଯୁକ୍ତି ପାଇଲେଣି । ତେଣୁ ମୋତେ ଭୁବନେଶ୍ୱର ଆଣି ବି.ଜେ.ବି. କଲେଜରେ Science ପଢାଇବା ପାଇଁ ଠିକ୍ କଲେ । ପରେ Science ଲାଇନ୍‌ରେ ନଯାଇ ଆର୍ଟସ୍ ପଢ଼ି ପ୍ରତିଯୋଗିତା ପରୀକ୍ଷା ଆଡ଼କୁ ମୋର ମନ ବଳିବାରୁ ମାମୁ ମତେ ସେ ସ୍ୱାଧୀନତା ଦେଲେ ଏବଂ ଉତ୍ସାହିତ କରିଥିଲେ । ମୁଁ ପରେ ବି.ଏ. ଓ ଏମ୍.ଏ. ପାସ୍ କରି ରାଜନୀତି ବିଜ୍ଞାନରେ କିଛିଦିନ ଅଧ୍ୟାପନା କରିଥିଲି । ସେ ସମୟରେ ମାମୁଙ୍କ ପରି ଜଣେ ଛାତ୍ରବତ୍ସଳ ସୁଶିକ୍ଷକ ହେବା ପାଇଁ ଚେଷ୍ଟା କରୁଥିଲି । ସର୍ବଭାରତୀୟ ପ୍ରତିଯୋଗିତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯେତେବେଳେ ମୁଁ ଆୟକର ବିଭାଗରେ ନିଯୁକ୍ତି ପାଇ ଟ୍ରେନିଂ ପାଇଁ ନାଗପୁର ଯାଏ ମାମୁ କି ଉଲ୍ଲସିତ ! ଆଖିରେ ତାଙ୍କର ଆନନ୍ଦାଶ୍ରୁ !

ମାମୁ ଥିଲେ ମୋର Friend, Philosopher and Guide କିନ୍ତୁ ତାଙ୍କର ଇଚ୍ଛା ମୁତାବକ ମୁଁ ହେବା ପାଇଁ ସେ କେବେ ଚାହିଁ ନାହାନ୍ତି । ମୋତେ ସଂପୂର୍ଣ୍ଣ ସ୍ୱାଧୀନତା ଦେଇଛନ୍ତି ପ୍ରସ୍ଫୁଟିତ ହେବା ପାଇଁ ମୁଁ ଯେପରି ଚାହେଁ । ସେଥିପାଇଁ ସେ ମୋତେ ସବୁବେଳେ ପ୍ରୋତ୍ସାହିତ କରିଛନ୍ତି । ସେ ଥିଲେ ମୋର ରୋଲ୍ ମଡ଼େଲ୍ । ଉତ୍ତର ଦିଗରେ ଧ୍ରୁବତାରାକୁ ଲକ୍ଷ୍ୟ କରି ବାଟବଣା ନାବିକ ନିଜକୁ ସୁଧାରିଲା ପରି ମାମୁଙ୍କ ମୃତ୍ୟୁପରେ ତାଙ୍କୁ ଧ୍ରୁବତାରା ମାନି ଲକ୍ଷ୍ୟକ କରି ଆଜି ଚାଲିଛି ।

ଜୀବନରେ ଅନ୍ୟମାନଙ୍କ ପାଇଁ ଖୁସୀ ଆଣିଦେଇ ନିଜେ ଖୁସି ହେଉଥିବା ଏଇ ମଣିଷଟି ନିଜେ ଶୈଶବରୁ କେତେ ଝଡ଼ଝଂଜା ଦେଇ ଗତି କରିଛନ୍ତି ତାହା ବହୁତ କମ୍ ଲୋକ ବିସ୍ତୃତ ଭାବରେ ଜାଣନ୍ତି । ତାଙ୍କ ସାଥିରେ ବହୁତ ସମୟ ଏକାନ୍ତ କଟେଇଛି । ତାଙ୍କ ହୃଦୟର ସ୍ପନ୍ଦନ ମୁଁ ବି ଅନୁଭବ କରିଛି । ପିଲାଦିନର କଥା କହୁକହୁ ବହୁ ସମୟରେ ଆଖି ଛଳଛଳ ହୋଇଯାଏ ତାଙ୍କର । ବହୁ ବର୍ଷ ତଳେ ମା', ଅଜା ଆଈଙ୍କଠାରୁ ତାଙ୍କ ପିଲାଦିନ କଥା ମଧ୍ୟ ଶୁଣିଛି । ପରିବାର ଚଳାଇବା ପାଇଁ ଅଜା ଆଈ ଦୁହେଁ କାମକୁ ଚାଲିଯାଆନ୍ତି, ଘରେ ଛୋଟ ଦୁଇଟି ଛୁଆଙ୍କୁ ଛାଡ଼ି । ଘରେ ଯାହା ଅଳ୍ପ ଖାଦ୍ୟ ଥାଏ, ତାହା ଅଖାଦ୍ୟ କହିଲେ ଚଳେ । କିନ୍ତୁ ଭାଇର ପ୍ରାଣ ବଞ୍ଚାଇବା ପାଇଁ ବଡ଼ ଭଉଣୀ ତାକୁ ପେଟକ ଖୁଆଇ ଦିଏ ନିଜେ ଭୋକରେ ରହି । ଟିକିଏ ବଡ଼ ହେଲା ପରେ ଗାଁ ପିଲାଙ୍କ ସାଙ୍ଗରେ ସେ ଗାଇ ଚରାଇଛନ୍ତି । କିନ୍ତୁ ଦାରିଦ୍ର୍ୟର କଷାଘାତ ଭିତରେ ମା' ସରସ୍ୱତୀଙ୍କ ଅପାର କରୁଣାରୁ ସେ କେମିତି ବଞ୍ଚିତ ହୋଇନାହାନ୍ତି । ଗାଁ ସ୍କୁଲରେ ପାଠପଢ଼ିଛନ୍ତି ଓ ଭଲ କରି ବୃତ୍ତିଲାଭ କରିଛନ୍ତି । ରଙ୍ଗଣୀପାଟଣା ସ୍କୁଲରୁ ପଢ଼ା ସାରି ସେ ଯେତେବେଳେ ଓଡ଼ଗାଁ ମାଇନର ଓ ହାଇସ୍କୁଲରେ ପଢ଼ିଲେ, ସେତେବେଳେ ଗାଁରୁ ପ୍ରତିଦିନ ଖାଲିପାଦରେ ଧୋତି/ଗାମୁଛା ପିନ୍ଧି ଶ୍ରେଣୀକୁ ଆସୁଥିଲେ । ଘରେ ଖାଇବାର ଠିକ୍ ଠିକଣା ନଥିଲା, ତଥାପି ମନକୁ ସ୍ଥିର ରଖି ଭଲ ପାଠପଢ଼ି ଶିକ୍ଷକମାନଙ୍କର ଶ୍ରଦ୍ଧା ଭାଜନ ହୋଇଛନ୍ତି । ସେ ସମୟରେ ମାଟ୍ରିକ ପରୀକ୍ଷାରେ ବହୁତ୍ କମ୍ ପିଲା ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଉଥିଲେ । ମାମୁ ୧୯୫୭ ମସିହାରେ ଓଡ଼ଗାଁ ରଘୁନାଥ ବିଦ୍ୟାପୀଠରୁ ପ୍ରଥମ ଶ୍ରେଣୀରେ ପାସ୍ କରି ସମସ୍ତଙ୍କୁ ଚକିତ କରିଦେଇଥିଲେ ।

ମାଟ୍ରିକ୍ ସିନା ପାସ୍ କରିଗଲେ । କଲେଜରେ ପଢ଼ିବେ କେମିତି ? ପୁଣି ଜଗନ୍ନାଥଧାମ ପୁରୀ କଥା ପିଲାଦିନରୁ ବାରମ୍ବାର ଶୁଣିଥିଲେ ତାଙ୍କ ବାପାଙ୍କଠାରୁ ଯେ କି ଚାଲି ଚାଲି ଶତାଧିକବାର ଗାଁରୁ ପୁରୀକୁ ଯା'ଆସ କରିଛନ୍ତି ଜଗନ୍ନାଥ ଦର୍ଶନ ପାଇଁ । ସେଇ ପୁରୀ ଧାମରେ ଆଇ.ଏସ୍.ସି. ରେ ପଢ଼ିବାର ପ୍ରବଳ ଇଚ୍ଛା । ପୁରୀ କଲେଜରେ ପୁଣି Science ରେ ଭର୍ତ୍ତି ହେଲେ ଭବିଷ୍ୟତରେ ଡାକ୍ତର ହେବାପାଇଁ । ସେଇଠି ଚକାଡୋଳାଙ୍କ ସାମ୍ନାରେ ଆରମ୍ଭ ହେଲା ତାଙ୍କର ଜୀବନ ସଂଗ୍ରାମର ଅନ୍ୟଏକ ପର୍ବ । ଘରୁ ତ ଗୋଟିଏ କଣା ପଇସା ପାଇବାର ଆଶା ନାହିଁ । ସେଠି ଗୋଟିଏ ପରେ ଆଉ ଗୋଟିଏ ଟ୍ୟୁସନ ଆରମ୍ଭ କଲେ । ଟ୍ୟୁସନ କରି ଯାହା ପାଆନ୍ତି, ସେଥିରେ ଚଳନ୍ତି ଓ ଘରକୁ ମଧ୍ୟ ବେଳେବେଳେ କିଛି ପଇସା ପଠାନ୍ତି । ଦିନବେଳେ କେବେ ଖାଆନ୍ତି, କେବେ ନାହିଁ । ସାରାଦିନର କଲେଜ ପଢ଼ା ଓ ଟ୍ୟୁସନ୍ ସାରି ରାତିରେ ଆସି ପହଞ୍ଚିଯାଆନ୍ତି କଳାଠାକୁରଙ୍କ ପାଦତଳେ । ସେଠି ଠାକୁରଙ୍କ ଆନନ୍ଦ ବଜାରରେ ଅଳ୍ପ ପଇସାରେ ବେଶ୍ ଖାଇବାକୁ ମିଳିଯାଏ ପୁଣି ଚବିଶ ଘଣ୍ଟା ଅପେକ୍ଷା

କରିବାକୁ । ମାମୁ କହିନ୍ତି, ତାଙ୍କର ଆଚରଣରେ ମୁଗ୍ଧ ହୋଇ କେତେଜଣ ସହୃଦୟ ମହାପ୍ରସାଦ ବିକ୍ରେତା ତାଙ୍କୁ ମାଗଣାରେ ମଧ୍ୟ ଖାଇବାକୁ ଦେଇଛନ୍ତି । ପ୍ରତିଦିନ ବଞ୍ଚିରହିବା ପାଇଁ ଏ ଯେଉଁ ସଂଗ୍ରାମ ଅହରହ ଚାଲିଥିଲା, ସେଥିରେ ତାଙ୍କର ଡାକ୍ତରୀ ପଢ଼ିବା ସ୍ୱପ୍ନ ସାର୍ଥକ ହେବ ବା କିପରି ? ଡାକ୍ତରୀ ପଢ଼ିବା ପାଇଁ ଯେଉଁ ଖର୍ଚ୍ଚ ତାହା ଆସିବ କେମିତି ? ଡାକ୍ତରୀ ପଢ଼ିବା ସମୟରେ ମଧ୍ୟ ପଇସା ଉପାର୍ଜ୍ଜନ କରିବାର ଏପରି ସୁଯୋଗ ମିଳିବ ନାହିଁ । ତେଣୁ ପୁରୀରେ ଆଇ.ଏସ୍.ସି. ପରେ ସେ କଟକ ଚାଲିଲେ । ସେତେବେଳେ ସେ ଜାଣିନଥିଲେ ସେଠି କ'ଣ କରିବେ ।

ମନେମନେ ଭାବିଲେ ଆର୍ଟସ୍ ହିଁ ପଢ଼ିବାକୁ ହେବ । ପଢ଼ିବା ସମୟରେ କଟକରେ ମଧ୍ୟ ଟ୍ୟୁସନ ମିଳିଯିବ । ସେତେବେଳେ କଟକରେ ଖ୍ରୀଷ୍ଟ କଲେଜର ବେଶ୍ ନାଁ । ସେଠି ଓଡ଼ିଆ ଅନର୍ସ ପଢ଼ିବା ପାଇଁ ସ୍ଥିର କଲେ । ଚିହ୍ନା ପରିଚୟ କେହି ନାହିଁ । ଅପରିଚିତ କଟକ ସହରରେ ପ୍ରଥମ କିଛିଦିନ ଗୋଟିଏ ମେସ୍‌ରେ ରହିଲେ । ପକେଟରେ ପଇସା ସ୍ୱଳ୍ପ । ତାହା ବି ସରି ସରି ଆସୁଛି । ମେସ୍‌ରେ ଭାତ ସାଙ୍ଗରେ ଗୋଟିଏ ଡାଲି ବା ତରକାରୀ ମଗାନ୍ତି ପଇସା ଭୟରେ । ତାଙ୍କୁ ଏ ସମୟରେ ଲକ୍ଷ୍ୟ କରୁଥିଲେ ତାଙ୍କଠାରୁ ବୟସରେ ସାମାନ୍ୟ ବଡ଼ ମେସ୍‌ରେ ରହୁଥିବା ଅନ୍ୟଏକ ଯୁବକ । ଦୁହେଁ ଦାରିଦ୍ର୍ୟର ଶିକାର । ସେ ମାମୁଙ୍କୁ କ୍ରମେ ସାନଭାଇ ପରି ଭଲପାଇ ତାଙ୍କ ପାଇଁ ଗୋଟିଏ ଟ୍ୟୁସନର ବ୍ୟବସ୍ଥା କରାଇଦେଲେ । ସେଇ ଅଗ୍ରଜ ସମ ଭଦ୍ରବ୍ୟକ୍ତି ହେଉଛନ୍ତି ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି, ଯାହା ସାଙ୍ଗରେ ତାଙ୍କର ଭ୍ରାତୃତ୍ୱ ମୃତ୍ୟୁ ପର୍ଯ୍ୟନ୍ତ ଅମଳିନ ଥିଲା ଏବଂ ସେ ଯେଉଁ ଘରେ ଟ୍ୟୁସନ୍ ପାଇଁ ଯାଇ ପହଞ୍ଚିଲେ, ତାହାଥିଲା ପଟାପୋଲର କଣ୍ଟ୍ରାକ୍ଟର ଶ୍ରୀ ବ୍ରଜବିହାରୀ ମହାନ୍ତି ଓ ତାଙ୍କର ଧର୍ମପତ୍ନୀ ଆଶାଲତା ମହାନ୍ତିଙ୍କ ଘର । ତାଙ୍କର ପିଲାମାନେ ଯଦିଓ ବର୍ତ୍ତମାନ ଅତ୍ୟନ୍ତ ସୁଶୀଳ, ଭଦ୍ର ଓ ପ୍ରତିଷ୍ଠିତ, ପିଲାଦିନେ ସାମାନ୍ୟ ଦୁଷ୍ଟ ପ୍ରକୃତିର ଥିଲେ । କିନ୍ତୁ ମାମୁ ତାଙ୍କର ସ୍ୱଭାବ ସୁଲଭ ଆଚରଣରେ ସେମାନଙ୍କର ବଡ଼ଭାଇ ହୋଇଗଲେ, ଅତି ଆପଣାର ହୋଇଗଲେ । ବ୍ରଜବିହାରୀ ଓ ଆଶାଲତା ହୋଇଗଲେ ତାଙ୍କର ଧର୍ମପିତା ଓ ମାତା ଓ ମାମୁଙ୍କୁ 'ସୁବ୍ରତ' ବୋଲି ସମ୍ବୋଧନ କଲେ । 'ସୁବ୍ରତ' ହେଲା ତାଙ୍କର ବଡ଼ ପୁଅ । ବ୍ରଜବିହାରୀ ଓ ଆଶାଲତା ବର୍ତ୍ତମାନ ଆଉ ଇହଧାମରେ ନାହାନ୍ତି, କିନ୍ତୁ ତାଙ୍କର ପୁଅମାନେ ମାମୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ 'ବଡ଼ଭାଇ'ର ସ୍ନେହ ମମତାର ଡୋରିରେ ବାନ୍ଧି ହୋଇ ରହିଛନ୍ତି ।

କଟକରେ ଖ୍ରୀଷ୍ଟ କଲେଜରେ ପଢ଼ିବାବେଳେ ତାଙ୍କର ଅମାୟିକ ବ୍ୟବହାର ଯୋଗୁଁ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ, ଶ୍ରୀ ଦେବେନ୍ଦ୍ର ମହାନ୍ତି, ଶ୍ରୀ ମୃତ୍ୟୁଞ୍ଜୟ ନାୟକଙ୍କ ପରି ବହୁ ଶିକ୍ଷକଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ଦେବେନ୍ଦ୍ର ମହାନ୍ତି ତାଙ୍କ ପାଇଁ ଥିଲେ ଶିକ୍ଷକ କମ ପିତା ଅଧିକ । ଗୁରୁପତ୍ନୀ ଶ୍ରୀମତୀ ରେଖା ମହାନ୍ତି ନେଲେ ମା'ର ସ୍ଥାନ ଓ ଅଜାଡ଼ି ଦେଲେ ଅନାବିଳ ସ୍ନେହ ଶ୍ରଦ୍ଧା ।

ଓଡ଼ିଆ ଅନର୍ସରେ ବି.ଏ. ପାସ୍ କଲାପରେ ରେଭେନ୍ସା କଲେଜରେ ଓଡ଼ିଆ ବିଭାଗରେ ଏମ୍.ଏ. ପଢ଼ିଲେ ଓ ସେତେବେଳେ ତାଙ୍କର ଅଧ୍ୟବସାୟ ଓ ଅମାୟିକ ବ୍ୟବହାର ଯୋଗୁ ସବୁ ଶିକ୍ଷକ ଓ ସହପାଠୀଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ମାମୁ ବହୁ ସମୟରେ ତାଙ୍କର ଗୁରୁମାନଙ୍କର ଅଧ୍ୟାପନା ଶୈଳୀ ବିଷୟରେ ମୋତେ ପ୍ରଶଂସା କରି କହିଛନ୍ତି । ବିଶେଷ କରି ଗୁରୁଦେବ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କ କଥା ତାଙ୍କଠାରୁ ବହୁବାର ଶୁଣିଛି । ଏମ୍.ଏ. ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଦୁଇଟି ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ବୋଧହୁଏ ଯେକୌଣସି ଗରିବ ମେଧାବୀ ଛାତ୍ର ପାଇଁ ତାଙ୍କର ସଂଘର୍ଷମୟ ଜୀବନ ଏକ ଜ୍ୱଳନ୍ତ ଉଦାହରଣ ହୋଇ ରହିଯିବ ।

ପ୍ରଥମ ସରକାରୀ ଚାକିରୀ ଜୀବନ ତାଙ୍କର ଆରମ୍ଭ ହୁଏ ୧୯୬୩ ମସିହାରେ ବାରିପଦା ଏମ୍.ପି.ସି. କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ । ତା'ପରେ ବଦଳି ହୁଏ ଏସ୍.ଏସ୍.ସି କଲେଜ ପୁରୀକୁ, ଯେଉଁଠି ସେ ପ୍ରଥମେ ଗାଁରୁ ଆସି କଲେଜ ପଢ଼ା ଆରମ୍ଭ କରିଥିଲେ । ସେ ଏପରି ଭାବବିହ୍ୱଳ ହୋଇ ଅଧ୍ୟାପନା କରୁଥିଲେ ଯେ, ଅନ୍ୟ ବିଭାଗରୁ ଛାତ୍ରମାନେ ଆସି ତାଙ୍କ କ୍ଲାସ୍‌ରେ ବସୁଥିଲେ ଶୁଣିବା ପାଇଁ । ଅନ୍ୟବିଭାଗରୁ ଏଭଳି କେତେଜଣ ଛାତ୍ର ଯେଉଁମାନେ ବର୍ତ୍ତମାନ ଭାରତୀୟ ପ୍ରଶାସନର ଉଚ୍ଚପଦବୀରେ ଅଧିଷ୍ଠିତ, ସେମାନଙ୍କର ଅନୁଭୂତି ମୋତେ ବର୍ଣ୍ଣନା କରିଛନ୍ତି । କେବଳ ଭଲ ପଢ଼ାଇବା ନୁହେଁ, ଛାତ୍ରମାନଙ୍କୁ ନିଜ ସାନଭାଇ ଭଉଣୀ ପରି ଭଲ ପାଇବା ଏବଂ ଦୁଃଖ ସମୟରେ ସେମାନଙ୍କୁ ସାହାଯ୍ୟ କରିବା ଥିଲା ତାଙ୍କର ସ୍ୱାଭାବିକ ପ୍ରକୃତି ।

ଚାକିରୀ ଆରମ୍ଭ କରିବାର ପ୍ରଥମ ତିନିବର୍ଷ ଭିତରେ ତାଙ୍କର ବିବାହ ହୁଏ ସତ୍ୟଶାନ୍ତିଙ୍କ ସାଙ୍ଗରେ । ମାଇଁ ସେତେବେଳେ ବୟସରେ ଖୁବ୍ ସାନ । କିନ୍ତୁ ବାପା, ମା ଯେଉଁଠି ଠିକ୍ କରିବେ ମାମୁଁଙ୍କର ସେଠି ହିଁ ବିବାହ । କମ୍ ବୟସରେ ବିବାହ କରି ମାଇଁ ବେଶ୍ ଘରକରଣା ସମ୍ଭାଳି ନେଇଥିଲେ । ବହୁତ ଆଗରୁ ମାମୁ ଭଉଣୀ ଓ ତିନି ଭଣଜାଙ୍କର ଭରଣପୋଷଣର ଦାୟିତ୍ୱ ବହନ କରିଥିଲେ ଓ ଆମେ ତିନିଭାଇ ବିବାହ ପୂର୍ବରୁ ଥିଲୁ ତାଙ୍କର ତିନୋଟି ସନ୍ତାନ । ମାଇଁ ବିବାହ କରିବା ଦିନଠାରୁ ତିନୋଟି ସନ୍ତାନର ଜନନୀ ହୋଇଗଲେ । ଏହାପରେ ଆମ ପରିବାରରେ ଆଉ ତିନୋଟି ସନ୍ତାନ ଆସିଛନ୍ତି । କିନ୍ତୁ ମାମୁ ମାଇଁଙ୍କ ପାଇଁ ଆମେ ସମସ୍ତେ ତାଙ୍କର ସନ୍ତାନ ।

ଆଜା ଆଈ ପିଲାଟି ଦିନରୁ ବହୁ କଷ୍ଟ କରି ମାମୁଙ୍କୁ ବଢ଼େଇ ଥିଲେ । ମାମୁ ସେମାନଙ୍କର ବାର୍ଦ୍ଧକ୍ୟରେ ସେମାନଙ୍କୁ ପାଖରେ ରଖି ତାଙ୍କର ସୁଖଦୁଃଖ ବୁଝୁଥିଲେ । ତାଙ୍କର ସ୍ୱାସ୍ଥ୍ୟର ଯତ୍ନ ନେଇଥିଲେ, ସେବା କରିଥିଲେ । ସେମାନଙ୍କର 'ଏକୋଇରବଲ୍ଲା ବିଶିକେଶନ' ସତେ ଯେମିତି ଚାହୁଁଥିଲେ ଏଇ ଜନ୍ମରେ ହିଁ ପିତୃମାତୃ ଋଣ ଶୁଝିଦେବେ । ମୃତ୍ୟୁର ବହୁ ବର୍ଷ

ପରେ ମଧ୍ୟ ସେମାନଙ୍କର ସ୍ମୃତି ସର୍ବଦା ଉଜ୍ଜୀବିତ ହୋଇ ରହିଥିଲା ତାଙ୍କ ଭିତରେ । ପିଲାଟି ଦିନରୁ ନାନୀ (ମୋ ମା') ସହିତ ତାଙ୍କର ଜୀବନ ଓତଃପ୍ରୋତ ଭାବରେ ଜଡ଼ିତ ଥିଲା । ପର ସୁଖଦୁଃଖରେ ସବୁବେଳେ ସମଭାଗୀ ହୋଇଥିଲେ । ଯେଉଁଦିନ ମା' ଗାଁରେ ପଡ଼ିଯାଇ ଅଚେତ ହୋଇଗଲା, ଗାଁରେ ତୁରନ୍ତ ପହଞ୍ଚି ତାକୁ କଟକ ଆଣି ଗୋଟିଏ ଡାକ୍ତରଖାନାରୁ ଆଉ ଗୋଟିଏ ଡାକ୍ତରଖାନାରେ ଦେଖାଇ ବଞ୍ଚାଇବାର ଯଥେଷ୍ଟ ପ୍ରୟାସ କରିଛନ୍ତି । ତା'ର ଚିତାରେ ଆମ ସାଙ୍ଗରେ ପୁଅ ଭଳି ସେ ମଧ୍ୟ ମୁଖାଗ୍ନି ଦେଇଛନ୍ତି ପୁରୀ ସ୍ୱର୍ଗଦ୍ୱାରରେ ।

ଯୁବାବସ୍ଥାରୁ ଆରମ୍ଭ କରି ମୃତ୍ୟୁପର୍ଯ୍ୟନ୍ତ ତାଙ୍କର ସାନ୍ନିଧ୍ୟରେ ବହୁ ଛାତ୍ରଛାତ୍ରୀ ଆସିଛନ୍ତି । ସେମାନେ କେବଳ ଛାତ୍ରଛାତ୍ରୀ ହୋଇ ରହିନାହାନ୍ତି, ପରିବାରର ସଦସ୍ୟ ଭାବରେ ଗଣା ହୋଇଛନ୍ତି । ତେଣୁ ତାଙ୍କର ପରିବାର କେବଳ ବାପା, ମା', ଭଉଣୀ, ସ୍ତ୍ରୀ, ପୁଅ, ଝିଅ, ଭଣଜାମାନଙ୍କ ମଧ୍ୟରେ ସୀମିତ ନହୋଇ ଏହାର ପରିଧି ଦିନକୁ ଦିନ ବଢ଼ି ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କର ଏକ ନିଜସ୍ୱ ପୃଥିବୀର ଆକାର ଧାରଣ କରିଛି ।

ଯେଉଁ ଗାଁ ମାଟିରେ ସେ ଜନ୍ମ ନେଇଛନ୍ତି, ତାକୁ କେବେ ଭୁଲି ନାହାନ୍ତି । ଗାଁର ଲୋକମାନେ କିପରି ଅଧିକ ଉନ୍ନତି କରିବେ, ଗାଁର ପରିବେଶ କିପରି ପରିଷ୍କାର ରହିବ, ଗାଁରେ ସ୍କୁଲ ସ୍ଥାପିତ ହେବ, ଏଥିପାଇଁ ସେ ଛାତ୍ର ଅବସ୍ଥାରୁ ଚେଷ୍ଟା କରିଛନ୍ତି ଏବଂ ଏଥିରେ ତାଙ୍କର ସହକର୍ମୀ ହୋଇଛନ୍ତି ତାଙ୍କର 'ସତୁ' ପ୍ରଫେସର ରାଧାମୋହନ । ଏପରିକି ଅବସରପ୍ରାପ୍ତି ପରେ ବର୍ଷକୁ ବର୍ଷ ଓଡ଼ଗାଁରେ ଭଞ୍ଜ ସାହିତ୍ୟ ସମାରୋହ ଆୟୋଜନ କରି ସେ ଗାଁ ଲୋକଙ୍କର ପ୍ରିୟ ଭାଜନ ହୋଇପାରିଛନ୍ତି ।

ଭକ୍ତି, ସେବା ଓ ତ୍ୟାଗର ଏହି ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଆଜୀବନ ସଂଗ୍ରାମୀ । ଏଇ ସଂଗ୍ରାମ ଭିତରେ ଯେ ସେ ଏକ ଦୁଃସାଧ୍ୟ ରୋଗକୁ ଶରୀର ଭିତରେ ବହୁବର୍ଷ ଧରି ପାଳି ଆସିଛନ୍ତି, ତାହା ତାଙ୍କୁ ଜଣା ନଥିଲା । ଅବସର ପ୍ରାପ୍ତି ପରେ ୨୦୦୦ ଜୁଲାଇ ମାସରେ ମାମୁ ଯେତେବେଳେ ମଧୁମେହ ରୋଗରେ ପୀଡ଼ିତ ହୋଇଛନ୍ତି ଭାବି ମାଡ୍ରାସକୁ ଚିକିତ୍ସା ପାଇଁ ଆସନ୍ତି, ଡାକ୍ତରମାନେ ପରୀକ୍ଷା କରି କହନ୍ତି ଯେ ସେ (Liver pscrisis) ରୋଗରେ ବହୁବର୍ଷ ହେଲା ପୀଡ଼ିତ ଯାହା ସେ ନିଜେ ଜାଣନ୍ତି ନାହିଁ । କ୍ରମଶଃ ବୟସ ଅଧିକ ହେବା ପରେ ଏହାର ଉତ୍କଟତା ଜଣାପଡୁଛି । ଚାହା, ପାନ, ସିଗାରେଟ୍ ବା କୌଣସି ମାଦକ ଦ୍ରବ୍ୟ ସ୍ପର୍ଶ ନକରୁଥିବା ପରି ଲୋକଟିକୁ କିପରି ଏ ରୋଗ ହେବ, ଯାହା ସାଧାରଣତଃ ଅତ୍ୟଧିକ ମଦ୍ୟପାଦକାରୀଙ୍କୁ ଆକ୍ରମଣ କରେ । କିନ୍ତୁ ଡାକ୍ତର କୁହନ୍ତି, ପିଲାଦିନରୁ ଠିକ୍ ଖାଇବା ପିଇବା ଅଭାବରେ ଲିଭର ଦୁର୍ବଳ । ମାମୁ କେତେଥର ମତେ କହିଛନ୍ତି, କଲେଜରେ ପଢ଼ିଲାବେଳେ ବିନା ଖାଦ୍ୟରେ ସେ ଜହ୍ନକୁ ଚାହିଁ ଚାହିଁ ପାଣି ପିଇ ରାତି ବିତାଇ ଦେଇଛନ୍ତି ।

ସେ ସବୁ ଦାଉ ସାଧିଛି ଏ ବୟସରେ । କିନ୍ତୁ ତାଙ୍କର ପ୍ରଚଣ୍ଡ ମନୋବଳ ତାଙ୍କୁ କେବେ କର୍ମପଥରୁ ବିମୁଖ କରିନାହିଁ । ତାଙ୍କର ସ୍ୱାସ୍ଥ୍ୟହାନି କଥା ସେ ବହୁ ଲୋକଙ୍କୁ ଜଣାଇ ନାହାନ୍ତି, ବରଂ କାମ କରି ଚାଲିଛନ୍ତି ଶେଷପର୍ଯ୍ୟନ୍ତ । ମୃତ୍ୟୁର ଅଳ୍ପଦିନ ଆଗରୁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଉପରେ ଲେଖିଥିବା ଶେଷ ବହିଟିକୁ ସେ ଆଖି ଖୋଲି ଦେଖିପାରି ନଥିଲେ । ଧନ୍ୟ ହେ କର୍ମବୀର !

ଏଇ ଗତବର୍ଷକ ଭିତରେ ମାମୁଙ୍କର ବହୁ ସ୍ମୃତି ବିଭିନ୍ନ ସମୟରେ ମୋ ମନକୁ ଆନ୍ଦୋଳିତ କରିଛି । କେତୋଟି ଅସଜଡ଼ା ସ୍ମୃତିକୁ ସାଉଁଟି ଏଇ କେତୋଟି ପୃଷ୍ଠାରେ ରୂପ ଦେବା ପ୍ରୟାସ କରିଛି ମାତ୍ର । ମୋର ହୃଦ୍‌ବୋଧ ହୋଇଛି ଯେ ସେ ଜଣେ ଯୁଗଜନ୍ମା ପୁରୁଷ ଏବଂ ଏପରି ଏକ ଯୁଗଜନ୍ମାଙ୍କ ସାନ୍ନିଧ ଲାଭ କରି ମୁଁ ନିଜକୁ ଧନ୍ୟ ମନେକରୁଛି । ତାଙ୍କର ଅମର ଆତ୍ମା ତ ପରମାତ୍ମାଙ୍କଠାରେ ବିଲୀନ ହୋଇଯାଇଛି । ସେ ଉପରେ ଥାଇ ତାଙ୍କର ନିଜସ୍ୱ ପୃଥିବୀକୁ ଆଶୀର୍ବାଦ କରନ୍ତୁ, ଏତିକି ପ୍ରାର୍ଥନା ।



# ବାପା ତୁମେ ଚାଲିଗଲା ପରେ

ଡାକ୍ତର ଇନ୍ଦ୍ରମଣି ନାଥ (ଜ୍ୱାଇଁ)

ବାପା !

ଯେଉଁଠାରୁ ଆସିଥିଲ ତମେ
ସେଇଠିକି ଚାଲିଗଲ ଦିନେ
ଶୁଭେ ଯହିଁ ଅନାହତ ବେଣୁ
ଜୀବନ ସାରା ସଂଗ୍ରାମ କରି
ଆମ ପାଇଁ ରଖିଦେଇ ଗଲ
ସ୍ମୃତିରେ ଝଟକୁ ଥିବା
ରାଶି ରାଶି ମମତାର ରେଣୁ ।
ତୁମ ମୃତ୍ୟୁ ସମ୍ଭବ କି ? ଅସମ୍ଭବ !
ସମ୍ଭବି ପାରେନା ଯେଣୁ ଆତ୍ମାର ଦୂରତ୍ୱ;
ଯେତେବାର ଆତ୍ମହରା ହେଲେ ବି ମୁଁ
ଭୁଲିକି ପାରିବି ତୁମ ଏକାନ୍ତ ନିଜତ୍ୱ ?
କେମିତି ବା କରିବି ବିଶ୍ୱାସ ?
ଲାଗୁଛି ଏବେ ବି
ସତେଜ ଦେହରେ ତୁମେ ନେଉଅଛ
ଅମୃତ ନିଃଶ୍ୱାସ ।
ତୁମେ ଥିଲ ଆମ ପାଇଁ ସକାଳର ସୂର୍ଯ୍ୟୋଦୟ
ତମର ଏଇ ବାୟାବାପା,. ମା ଓ ନାତୁଣୀ ପାଇଁ
ଆଖିରେ ତ ସଞ୍ଚିଥିଲ ମମତାର ମଧୁକ୍ଷରା ସୁଅ
ପୁତ୍ର-ଗୌରବରେ ତୁମେ ମୋତେ କରିଛ ପାବନ;
ହେ ପିତା ! ତୁମ ସ୍ନେହ ଆଶୀର୍ବାଦ
ଅପାସୋରା ରହିଥିବ ଏ ସାରା ଜୀବନ
ମୋ ପାଇଁ ଅଭିପ୍ରେତ ତୁମ
'ବାପା' ଡାକରେ ଏତେ ମଧୁରତା ଥିଲା ଯେ

ମୋର 'ବାପା' ଡାକ ତା' ଆଗରେ
ଝାପ୍‌ସା ହୋଇଯାଉଥିଲା ।
ଏତେ ଉଷ୍ମ ମୋ' ପାଇଁ ତୁମର ଆଲିଙ୍ଗନ !
ତୁଚ୍ଛ ହୋଇ ଯାଉଥିଲା ମୋ ଆଗରେ
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା ଚଉଦ ଭୁବନ ।
କିଏ ଆଉ ପଚାରିବ, ପହଞ୍ଚିଲେ ପାଖେ ?
''କାହିଁ କରୁଛ ଏତେ ଅପରେସନ୍
ଖାଇଛ କି ନାହିଁ
ଦିହ ତୁମ କଣ୍ଟା ତ ହେଲାଣି !''
ତୁମେ ଥିଲ ଅନିର୍ବାଣ ଜ୍ୟୋତିର ଝଲକ,
ତୁମ ବିନା ଅନ୍ଧାରେ ବୁଡିଛି ଆଜି
ଏ ଦେବଶାନ୍ତି ନିଳୟ, ସାଥେ
ତୁମ ମମତାରେ ଗଢ଼ା ବିସ୍ତୀର୍ଣ୍ଣ ମୂଲକ ।
ତୁମରି ହାତରେ ଗଢ଼ା ସୁନାର ସଂସାର
କିପରି ଭୁଲିଲ ସତେ !
ସ୍ନେହ ବନ୍ଧନରେ ବାନ୍ଧିଥିବା ସ୍ତ୍ରୀ, ପୁତ୍ର କନ୍ୟା
ପୁତ୍ର ପ୍ରତିମ ଭଣଜା, ବଧୂ ଓ ଜାମାତା
ନାତି ଓ ନାତୁଣୀ ପ୍ରିୟ ପରିଜନ ?
ପଛରେ ପକାଇ ଦେଇ ସ୍ନେହ, ମୋହ
ଅମାପ, ସୋହାଗ,
ସୌଭାଗ୍ୟର ଅକ୍ଷୟ ଭଣ୍ଡାର ।
ତୁମର ଅନୁପସ୍ଥିତି 'ଦେବଶାନ୍ତି ନିଳୟ'ରେ ଭରେ
ଅଖଣ୍ଡ ଅନ୍ଧାର
ନିତ୍ୟ ଦେବଶାନ୍ତି ନିଳୟରେ ତୁମ ଉପସ୍ଥିତି
ଭରିଦେଉ ଆଲୋକ ସମ୍ଭାର ।
ତମରି ବଂଶର ଜାମାତା
ଚିରକାଳ ତମରି ସ୍ନେହରେ
ମାୟା, ବନ୍ଧନ, ଆଶୀର୍ବାଦରେ
ଝଳୁଥାଉ ଏ ସାରା ସଂସାରେ ।

# ଆକାଶ ପରି ଉଦାର ମୋ ବାପା

ଡଃ ଶାଶ୍ୱତୀ ସୌମ୍ୟା ସାହୁ (ବଡ଼ଝିଅ)

ମୋ ବାପା ଥିଲେ ଏକ ବିରାଟ ବରଗଛ । ଆମେ ଛ ଭାଇଭଉଣୀ ଥିଲୁ ଛୋଟଛୋଟ ଓହଳ-ଭାବିଲେ ମନରେ ଆନନ୍ଦ ଆସେ, ଗର୍ବ ଆସେ । ତାଙ୍କ ହୃଦୟରେ ସ୍ଥାନ ଦେଇଥିଲେ ସନ୍ତାନବତ୍ ଅନେକ ଓହଳ । ତାଙ୍କରି ଆଶ୍ରା, ଆଶା, ଛାଇ ଓ ଭରସା-ପାଇ ଓହଳମାନେ ମାଟିରେ ପାଦ ଥାପିଲେ । ନିଜେ ଶକ୍ତ, ସବଳ ହେଲା ପରେ ବୃଦ୍ଧ ବରଗଛକୁ ସ୍ତମ୍ଭ ପରି ଟେକି ଧରିବାକୁ ଚେଷ୍ଟିତ ହେଲେ । ସ୍ଥବିର କାଳରେ ଆଶ୍ରୟଦାତା ଗଛଟି ଅସ୍ଥିର ହୋଇପଡ଼ିଲେ ତାକୁ ସ୍ଥିର ଓ ଦୃଢ଼ ରଖିବା ପାଇଁ ପ୍ରାଣପଣେ ଚେଷ୍ଟା କରିଛନ୍ତି । ବାସ୍ତବିକ୍ ସେ କାହାଠୁ କିଛି ବି ପାଇନାହାନ୍ତି । ଦେବାରେ ସେ ଆନନ୍ଦ ପାଇଛନ୍ତି । ବାଣ୍ଟିବାରେ ସନ୍ତୋଷ ଲାଭ କରିଛନ୍ତି ।

ପିଲାଟି ଦିନରୁ ବାପାଙ୍କର ମାୟା, ମୋହ, ସୋହାଗ ଓ ମମତାର ଡୋରରେ ନିବିଡ଼ ଭାବରେ ବାନ୍ଧି ହୋଇ ଯାଇଥିଲି । ମୁଁ ପିଲାଟି ଦିନରୁ ଯାହା ଚାହିଁଛି ତାହା ହିଁ ବାପା ଆଣି ଦେଇଛନ୍ତି । ଆମେ ଛ'ଜଣ କେବେ ବି ଆମର ଅଭାବ ଲକ୍ଷ୍ୟ କରିନୁ ।

କଥାରେ ଅଛି ବଡ଼ ପୁଅର ଜ୍ୟେଷ୍ଠଭାଗ । ବଡ଼ ଝିଅ ଭାବରେ ମୁଁ ବାପାଙ୍କର ସବୁଠାରୁ ଅଧିକ ଶ୍ରଦ୍ଧାଭାଜନ ଥିଲି । କିନ୍ତୁ ବେଳେବେଳେ ଅଭିମାନ କରୁଥିଲି ଯେ ବଡ଼ଭାଇଙ୍କୁ ଅଧାସ୍ନେହ ଦେଇ ଦେଉଛନ୍ତି । ମୋ ମନ କଥା ବୁଝିପାରି ବାପା ବୁଝାଇ ଦିଅନ୍ତି ''ମାରେ ତୁ ମୋର ମା ! ମା' କ'ଣ ପୁଅର ସ୍ନେହକୁ ତଉଲେ ?'' ବାପା ଥିଲେ ଆମମାନଙ୍କର ଜଗନ୍ନାଥ ।

ଏପରି ଏକ ବିରଳ 'ହୃଦୟ' କେବଳ ଆମ ପରିବାରର ପରିଧି ମଧ୍ୟରେ ସୀମିତ ନଥିଲା । ଜଣେ ଛାତ୍ରବତ୍ସଳ ସୁଶିକ୍ଷକ ଭାବରେ ସେ ଛାତ୍ରଛାତ୍ରୀମାନଙ୍କୁ ଭାଇ-ଭଉଣୀ ବା ପୁତ୍ରକନ୍ୟା ଜ୍ଞାନ କରୁଥିଲେ । ବହୁ ଛାତ୍ରଛାତ୍ରୀ ଆମର ପରିବାରଭୁକ୍ତ ହୋଇ ସେଇ ପରିଧିକୁ ଦିନକୁ ଦିନ ସଂପ୍ରସାରିତ କରିବାରେ ଲାଗିଥିଲେ । ପରିବାରର ପରିସୀମା ଡେଇଁ ଅନ୍ୟ ବ୍ୟକ୍ତିମାନଙ୍କୁ ଆପଣେଇ ନେବାର ଯେଉଁ ଗୁଣ ଟିକକ ତାଙ୍କ ଭିତରେ ଥିଲା, ଆଜିର ସମାଜରେ ଆଉ ନାହିଁ କହିଲେ ଚଳେ ।

ବାପା ମୋ ଭାଇମାନଙ୍କୁ ସମ୍ବୋଧନ କରୁଥିଲେ ଜୀବନ, ବାୟା, ମୋତେ ଆତ୍ମା, ମା ଓ ଭଉଣୀକୁ ପ୍ରାଣ । ଆମେ ଛ'ରୁ ବାର ହୋଇଯାଇଛୁ । ଭାଉଜମାନଙ୍କୁ ଓ ମୋ

ସ୍ୱାମୀଙ୍କୁ ସେଇ ସମ୍ବୋଧନରେ ଡାକି ଏତେ ଆପଣାର କରିଦେଇଥିଲେ ଯେ ସେମାନେ ତାଙ୍କ ଘରର ମାୟା ମମତା ଭୁଲି ଯାଇଥିଲେ । ସେ ସମ୍ବୋଧନ ସବୁ ଏବେ ସ୍ୱପ୍ନ !!

ବାପା ଥିଲେ ଜ୍ଞାନପାଗଳ ମଣିଷ । ସକାଳ ପାହିଲାମାତ୍ରେ ହାତରେ ବହି କଲମ, ଆଖିରେ ଚଷମା ଧରି ଯେ ବସିପଡ଼ିବେ; ଭୋକ ଶୋଷ ସବୁ ଭୁଲିଯିବେ । ସେ କାହାରି ଡାକରେ ଜ୍ଞାନ ତପସ୍ୟାରୁ ଟଳୁ ନଥିଲେ ।

ନିଜ ପରିବାର ପ୍ରତି, ଛାତ୍ରଛାତ୍ରୀମାନଙ୍କ ପ୍ରତି ଅହରହ ଅକ୍ଳାନ୍ତ ପରିଶ୍ରମ କରି କରି ତାଙ୍କର ସ୍ୱାସ୍ଥ୍ୟ କ୍ରମଶଃ ଭାଙ୍ଗିବାକୁ ଆରମ୍ଭ କଲା । ଯେତେ କହିଲେ ବି ସ୍ୱାସ୍ଥ୍ୟର ଯତ୍ନ ନନେଇ ସାଧନା ପଥରେ ନିରବଚ୍ଛିନ୍ନ ଅଗ୍ରସର ହେବାରେ ଲାଗିଲେ । ଶେଷରେ ନିଜେ ଉପୁଡ଼ି ଯାଇ ଆମକୁ ଝୁଲେଇ ଦେଇ ଚାଲିଗଲେ ।

ଦିନ ରାତି ତାଙ୍କ କଥା ସ୍ମରଣ କରି କରି ଗୋଟେ ବର୍ଷ ବିତିବାକୁ ବସିଲାଣି । ତଥାପି ତାଙ୍କ ସହ ଶେଷ ରହଣି, ଶେଷ ଆଳାପ ବାରମ୍ବାର ମୋ ମନରେ ଉଙ୍କି ମାରୁଛି... ।

୧ ଜୁଲାଇ ୨୦୦୫ରେ ପୁନା ଦୌଡ଼ିଯାଇଥିଲି ବାପାଙ୍କର ଜ୍ୱର ଖବର ପାଇ । ସେ କେବେ କାହାକୁ ନିଜର ଅସୁସ୍ଥତା ଜଣାଇବାକୁ ଚାହୁଁନଥିଲେ କାଳେ କିଏ ବିଚଳିତ ହୋଇପଡ଼ିବ । ତଥାପି ମା ଆଗରେ ପୁଅର ନିରୋଗ ଅଭିନୟ ଧରାପଡ଼ି ଯାଉଥାଏ । ଧରାପଡ଼ି ଯାଇ ଦୋଷୀ ପରି ତଳକୁ ମୁହଁ ପୋତି ରହିଥିଲେ । ହଠାତ୍ ମୋର ଓ ସ୍ୱାମୀଙ୍କର ଉପସ୍ଥିତିରେ ସେ କୋଟିନିଧି ପାଇଲା ପରି ଅନୁଭବ କରୁଥିଲେ । ଜୁଲାଇ ଆଠ ରଥଯାତ୍ରାଦିନ ମୋ ପୁତୁରା ସାତ୍ତ୍ୱିକର ଜନ୍ମଦିନ ଉତ୍ସବ ପାଳନ ହେଉଥିବାବେଳେ ବ୍ରାହ୍ମଣ ଆସିଥିଲେ ବି ଅସୁସ୍ଥ ଶରୀରରେ ନିଜେ ସବୁ ପୂଜା କାର୍ଯ୍ୟ ସଂପାଦନ କରିଥିଲେ । ସତେ ଯେପରି ସେ ଜାଣିଥିଲେ ଏଇଟା ତାଙ୍କର ଶେଷ କାର୍ଯ୍ୟ । ସେଦିନ ବାପା ପୁନାରେ ପାଳିତ ହେଉଥିବା ରଥଯାତ୍ରା ଦେଖିବାକୁ ଭାରି ବ୍ୟାକୁଳ ହୋଇଉଠିଲେ । ବାପାଙ୍କର ବିଶ୍ୱାସ ଥିଲା ଯେ ରଥରେ ଠାକୁରଙ୍କୁ ଦେଖିଲେ ସବୁ କଷ୍ଟପୀଡ଼ା ଦୂର ହୋଇଯିବ । ତାଙ୍କର ଏଇ ଆଗ୍ରହ ଦେଖି ଭାଇ ଇଶୁ ଆମ ସମସ୍ତଙ୍କୁ ବୁଲାଇବାକୁ ନେଇଯାଇଥିଲା । ଭାଇ ପୁନା ସହରକୁ ନୂଆ ଯାଇଥିବାରୁ ଡ୍ରାଇଭର୍‌ଟି ଅଧିକା ପଇସା ଲୋଭରେ ପ୍ରଥମେ କଡ଼କ ଭାସ୍‌ଲା ଡ୍ୟାମ୍, ତା'ପରେ ଶିବାଜୀଙ୍କ ସିଂହଗଡ଼କୁ ନେଇଥିଲା । ସେଇଠି ସଂଧ୍ୟା ହୋଇଯିବାରୁ ବାପା ବ୍ୟସ୍ତ ହୋଇପଡ଼ିଥିଲେ ଓ ଭାଇକୁ ବାରମ୍ବାର ପଚାରୁଥିଲେ ବାପାରେ ! ଆଉ କେତେବାଟ ରହିଲା । ଠାକୁରଙ୍କୁ ରଥରେ ଦେଖିପାରିବା ତ ? ଭାଇ ଆଗରେ ଅଛି କହି କହି ଚାଲିଥାଏ । ରାତି ସାଢ଼େ ନ'ଟାରେ ଜଗନ୍ନାଥ ମନ୍ଦିରରେ ପହଞ୍ଚିଲାବେଳକୁ ବାପା ଅସ୍ୱସ୍ତି ଅନୁଭବ କଲେଣି । ଶୂନ୍ୟ ରଥକୁ ଦେଖି ବାପାଙ୍କର ମନ ଭାଙ୍ଗି ପଡୁଥିଲେ ବି ଆମ ଆଗରେ ହସହସ ମୁଖରେ ଜଗନ୍ନାଥଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ଜଣାଇଥିଲେ । ଆମମାନଙ୍କ ପାଇଁ କେତେ ଆଶୀର୍ବାଦ ଭିକ୍ଷା କରିଥିଲେ ।

ସେଠି ଗହଳି ହୋଇଥିବାର ଲକ୍ଷ୍ୟ କରି ଏବଂ ଦିନଯାକର କ୍ଲାନ୍ତି ମେଣ୍ଟାଇବା ପାଇଁ ଶୀଘ୍ର ଘରକୁ ଯିବା ପାଇଁ ଚାହିଁଥିଲେ । ଆମେ ପ୍ରସାଦ ସେବନ କରିଥିଲୁ କିନ୍ତୁ ବାପା ନ ଖାଇବାରୁ ତାଙ୍କ ପାଇଁ ଟିକିଏ ନେଇକରି ଆସିଥିଲି । ଘରେ ପହଞ୍ଚି ବୋଉ ତାଙ୍କ ପାଇଁ କଞ୍ଚାତୁଡ଼ା ଚକଟି ଦେଇଥିଲା ତଥାପି ଜଗନ୍ନାଥ ପ୍ରାଣ ବାପା ପ୍ରସାଦ ଖାଇବାକୁ ଚାହିଁଥିଲେ । ବାପାଙ୍କୁ ଜଣ୍ଡିସ୍ ହୋଇଥିବାରୁ ଅଳ୍ପ ଅନ୍ନ ଓ ପୋଟଳକୁ ଧୋଇକି ଦେଇଥିଲି । ବଡ଼ ଆଗ୍ରହରେ ଖାଇ ଆଙ୍ଗୁଠି ଚାଟୁଥାନ୍ତି । ଜାଣିସାରିଥିଲେ ସେଇ ହେଉଛି ତାଙ୍କର ଶେଷ ପ୍ରସାଦ ସେବନ । ମନେପଡ଼ିଗଲେ ଛାତି ଭିତରଟା ଫାଟି ଯାଉଛି ଆଖିରେ ଲୁହ ପୂରିଯାଇ ଚାରିଆଡ଼ ମୋତେ ଅନ୍ଧକାର ଲାଗୁଛି... ।

ପୁନାରେ ୭/୮ ଦିନର ରହଣି ଭିତରେ ମାଛଭଜା ଖାଇବାକୁ ମାଗିଥିଲେ ବି ହଳଦୀ ଓ ତେଲର ମିଶ୍ରଣ ସକାଶେ ଦେଇନଥିଲି । କେବଳ ସିଝା ହିଁ ଦେଉଥିଲୁ । ମା'ରେ ! ପାଟି ଅରୁଚି ଲାଗୁଛି କହିବାରୁ ଡାଳିମ୍ବ ମଂଜି ଓ ସେଉ ଦେଉଥିଲି । ତାକୁ ଆଡ଼ କରି ଥୋଇଦେଉଥିଲେ । ଯେମିତି ପୁଅ ମା' ପାଖରେ ରୁଷେ ।

ପୁନା ସହରରେ ସବୁ ଜିନିଷ ମହଙ୍ଗା । ଡାକ୍ତର କହିବା ଅନୁସାରେ ଇଶୁ ସବୁ ଆଣି ଖାଇବାକୁ ଦେଲେ କହୁଥିଲେ ମୋତେ ଏଠି ରଖି କାହିଁକି ଖର୍ଚ୍ଚାନ୍ତ ହଉଛୁ ! ମୋତେ ମୋ ଜାଗାରେ ଛାଡ଼ି ଦିଅ । ପ୍ରତ୍ୟେକ ଦିନ କ୍ୟାଲେଣ୍ଡରରେ ଗାର ପକାଉଥିବେ । କେବେ ଭୁବନେଶ୍ୱର ଯିବି ? ବାପାଙ୍କର ଏଇ ଅବସ୍ଥାରେ ଟ୍ରେନ୍ ବା ପ୍ଲେନ୍‌ରେ ଯିବା ଆସିବା ସମ୍ଭବ ନୁହେଁ ଜାଣି ଇଶୁ ଓ ମୁଁ ବୁଝାଇଥିଲୁ ଯେ ଦେହ ଯେତେ ଶୀଘ୍ର ଭଲ ହେବ ତମେ ସେତେ ଶୀଘ୍ର ଭୁବନେଶ୍ୱର ପଳାଇଯିବ । ସେ ଜାଣିସାରିଥିଲେ ଜୀବନରେ ଆଉ କେବେ ବି ଭୁବନେଶ୍ୱର ଆସିପାରିବେ ନାହିଁ । ତେଣୁ ଜୁଲାଇ ନ ତାରିଖରେ ମୋର ଭୁବନେଶ୍ୱରକୁ ବିଦାୟ ମୁହୂର୍ତ୍ତରେ ବାପା କହିଥିଲେ ମାଲୋ ! ତୁ ମୋର ବହୁତ ସେବା କଲୁ । ତୁ ମୋର ଏଇ ଜନ୍ମର ମା' !'' ଲକ୍ଷ୍ୟ କଲି ବାପାଙ୍କ ଆଖି ଲୁହରେ ଭରିଯାଉଥାଏ ଓ ହୃଦୟ ବାଷ୍ପରୁଦ୍ଧ ହୋଇଯାଉଥାଏ । ମୋତେ ପାଖରୁ ଛାଡ଼ିବାକୁ ତାଙ୍କର ଆଦୌ ଇଚ୍ଛା ନଥାଏ । ଚାକିରିରେ ଅବହେଳା ନ କରିବା ପାଇଁ ସବୁବେଳେ ସେ ପରାମର୍ଶ ଦେଉଥିଲେ ମଧ୍ୟ ସେଦିନ ମୋତେ ପାଖରେ ରହିବା ପାଇଁ କହିଥିଲେ । କର୍ତ୍ତବ୍ୟର ଦାୟବଦ୍ଧତାରେ ତଥାପି ମୁଁ ବାପାଙ୍କୁ ପୁନା ସହରର ମଗରପେଟା ଆପାର୍ଟମେଣ୍ଟରେ ଛାଡ଼ିଦେଇ ଚାଲି ଆସିଥିଲି । ବାଟ ଯାକ ଖାଲି ବାପାଙ୍କର ବିକଳ ଆଖି ଓ ମା'ରେ, ଆମ୍ଭା ମୋର ଡାକ ଶୁଭିଯାଉଥାଏ । ଘରେ ଆସି ପହଞ୍ଚି ୫/୬ ଥର ଫୋନ୍ କରିଥିଲି । ୧୨ ତାରିଖ ରାତି ୯ ଟା ୧୫ ରେ ବାପା କହିଥିଲେ-''ମା'ରେ ! ମୋ ଦେହ ଭଲ ଅଛି । ଏତେଥର ଫୋନ୍ କରି ମୋ ପାଗଳା ବାୟାକୁ କାହିଁକି ଖର୍ଚ୍ଚାନ୍ତ କରୁଛୁ ? ଲେଖା ଲେଖିରେ ସମୟ କାହିଁକି ବିତାଉନୁ । ଦରକାର

ହେଲେ ମୁଁ ଏପଟୁ ଫୋନ୍ କରିବି ।'' ସେଇ ଥିଲା ତାଙ୍କର ମୋ ପାଇଁ ଶେଷ ସ୍ନେହାପୋଦେଶ । ସେଇଦିନ ରାତିରେ ତାଙ୍କର ରକ୍ତସ୍ରାବ ହୋଇ ଚାଲିଥିଲା । ସାଙ୍ଗେ ସାଙ୍ଗେ ଇଶୁ ଜାହାଙ୍ଗୀର ହସ୍‌ପିଟାଲ ନେଇ ଚିକିତ୍ସା କରାଇଥିଲା । ଏକଥା ଜାଣିଲେ କାଳେ ମୁଁ ବ୍ୟସ୍ତ ହୋଇପଡ଼ିବି, ମୋ ପରିବାରର ଦାୟିତ୍ୱ ଠିକ୍ ଭାବେ ତୁଲାଇ ପାରିବି ନାହିଁ, ଧାଇଁଯିବି ବୋଲି ବାପାଙ୍କ ନିର୍ଦ୍ଦେଶରେ ଇଶୁ ମୋତେ ଲୁଚାଇଥିଲା । ମାଡ୍ରାସରେ ଥିବା ବଡ଼ଭାଇଠୁ ଖବର ଜାଣିଲା ମାତ୍ରେ ମୋ ସ୍ୱାମୀ ତୁରନ୍ତ ଯାଇ ଜାଣିପାରିଲେ ଯେ ବାପା ଆଉ ବେଶୀଦିନ ବଞ୍ଚିବେ ନାହିଁ । ଜୀବିତ ଅବସ୍ଥାରେ ବାପାଙ୍କୁ ସବୁଦିନ ମନଭିତରେ ରଖିବା ପାଇଁ ପଳାଇ ଆସିଥିଲେ । ୨୦ ତାରିଖ ବୁଧବାର ସକାଳେ ଏକ ଖରାପ ସ୍ୱପ୍ନ ଦେଖି ଧୈର୍ଯ୍ୟହରା ହୋଇ ବାପାଙ୍କ ସାଙ୍ଗରେ ପଦୁଟେ କଥା ହେବା ପାଇଁ ଇଶୁ ମୋବାଇଲ୍‌କୁ ରିଂଗ୍ କରିଥିଲି । ବାପାଙ୍କ ମୁହଁରେ ଅମ୍ଳଜାନ ମୁଖା ଲଗାଯାଇଥିବାରୁ ଫୋନ୍ ଦେବା ନିଷିଦ୍ଧ ଥିଲା । ତଥାପି ଇଶୁ ମୁହଁରୁ ନାନୀ ଫୋନ୍ କରିଛି ଶୁଣି ମୁଖା ଖୋଲି ଦେଇ ଛାତିରେ ଅସହ୍ୟ ଯନ୍ତ୍ରଣାକୁ ସହ୍ୟ କରି ମୋ ସହିତ ବାପା ଶେଷ କଥା ହୋଇଥିଲେ-''ମା ! ମୁଁ ଠିକ୍ ଅଛି । ମୋ ଦୁଇ ଭାଇ (ମୋ ଦୁଇ ଝିଅ)ଙ୍କ ଯତ୍ନ ନେଉଛୁ ନା ନାହିଁ । ମୋ ବାୟା ବାପା କଥା ବୁଝୁଥିବୁ । ତାଙ୍କୁ କାହିଁକି ଏଠାକୁ ପଠାଇଲୁ । ସେ ନିଜ ଦେହରୁ ରକ୍ତ କ୍ଷରଣ କରି ମୋତେ ଦେଇ ବଞ୍ଚାଇବାକୁ ଚେଷ୍ଟା କରୁଛନ୍ତି । ସେ ଚାରି ପୁଅଠୁ ବି ବଳିଗଲେ । କେବେ ତାଙ୍କ ମନରେ କଷ୍ଟ ଦବୁନି । ତୋତେ ମୋ ରାଣ । ମୁଁ ଶୀଘ୍ର ଭଲ ହୋଇଗଲେ ତୋ ପାଖକୁ ପଳାଇଯିବି । ତୁ ଯମା ବ୍ୟସ୍ତ ହେବୁନି ।''

ତଥାପି ମୋ ମନ ବୁଝି ନଥିଲା । ବଡ଼ଝିଅର ପରୀକ୍ଷା ଥିବାରୁ ତାକୁ ସ୍ୱାମୀଙ୍କ ପାଖରେ ଛାଡ଼ିଦେଇ ସାନଝିଅକୁ ଧରି ଦୌଡ଼ିଯାଇଥିଲି ଡାକ୍ତରଖାନାରେ ଜୀବନ ସହିତ ସଂଘର୍ଷ କରୁଥିବା ବାପାଙ୍କ ପାଖକୁ । ମୁଁ ପହଞ୍ଚିଲାବେଳକୁ ବାପା ଅର୍ଦ୍ଧକୋମା ଅବସ୍ଥାରେ । ଆଖି ଖୋଲି ନ ଦେଖିଲେ ବି ମୋ ସ୍ପର୍ଶରେ ସେ ଗୋଡ଼ ହଲାଇଥିଲେ, ତାଙ୍କର ବାମ ପାପୁଲି ମୋ ପାପୁଲି ଉପରେ ଲେଉଟେଇ ନେଇଥିଲେ । ବାପା ବାପା ଡାକରେ ସେ ଆଖିକୁ ଖୋଲିବା ପାଇଁ ଚେଷ୍ଟା କରିଥିଲେ ମଧ ମୋତେ ଆଉ ଦେଖିପାରି ନଥିଲେ ।

୨୫ ତାରିଖରେ ଡାକ୍ତର ଆମକୁ ସୂଚନା ଦେଇଥିଲେ ଯେ ବାପାଙ୍କର ଆଉ ଆଶା କମ୍, ୪୮ ଘଣ୍ଟା ମଧରେ ଚାଲିଯାଇପାରନ୍ତି । ଡାକ୍ତରଙ୍କ ନିରାଶ କଥା ଶୁଣି ଶେଷରେ ଭଗବାନଙ୍କ ପାଖରେ ଶରଣ ପଶିଥିଲୁ । ବାରମ୍ବାର ବଡ଼ଭାଇ ବାପାଙ୍କ ପାଖରେ ଗୁଣୁଗୁଣୁ ହୋଇ ହନୁମାନ ଚାଳିଶା ଗାନ କରୁଥିଲା, ବୋଉ, ମଝିଆ ଭାଇ ଓ ମୁଁ ଭଗବାନଙ୍କୁ ସ୍ମରଣ କରି ଚାଲିଥିଲୁ । କିନ୍ତୁ ଇଶୁ ଡାକ୍ତରଙ୍କ ପଛେପଛେ ଗୋଡ଼େଇ ଗୋଡ଼େଇ ନେହୁରା ହେଉଥାଏ ଯାହା ଚାହିଁବେ ତାହା ଦବୁ ଯେକୌଣସି ଉପାୟରେ ମୋ ବାପାଙ୍କୁ ବଞ୍ଚାଅ ।

ଭଗବାନ୍ ନିଷ୍ଠୁର । ଆମ ବିକଳ ଡାକ ଶୁଣିଲେନି । ନେଇଯାଇଥିଲେ ନିଜ ନାମଧାରୀ ସଖାକୁ ନିଜ ପାଖକୁ । ଧରଣୀ ମା ଏପରି ବିନୟୀ, ହୃଦୟବାନ୍ ଜ୍ଞାନୀପୁତ୍ରକୁ ହରେଇବାକୁ ଯାଉଥିବାରୁ ସକାଳୁ ସକାଳୁ ବୁକୁ ଫଟାଇ କାନ୍ଦିବା ଆରମ୍ଭ କରିଥିଲା । ତାରି ଲୁହ ପୁନା ସହରରେ ବାତ୍ୟା ଓ ବନ୍ୟା ହୋଇ ବୋହି ଯାଉଥିଲା । ୯ଟା ୫୦ ମିନିଟ୍‌ରେ ଜୀବନ ସାରା ସଂଗ୍ରାମରେ ରତ ଥିବା ମଣିଷଟି ସୁଦୂର ପୁନାରେ କାହାରିକୁ ଦେଖା ନଦେଇ ଲୁଚିକରି ବିଶ୍ରାମ ନେଇଥିଲେ । ଆଜି ମାଟିର ମତରରେ ମାଟିର ଦେହଧରି ମୋ ବାପା ନଥିଲେ ବି ଲକ୍ଷଲକ୍ଷ ହୃଦୟରେ ସମ୍ମାନିତ ସିଂହାସନ ଅଧିକାର କରି ବଞ୍ଚି ରହିଛନ୍ତି ଏବଂ ରହିଥିବେ ମଧ୍ୟ ।



# ସୁଦୂରର ସ୍ୱପ୍ନ

ଶୁଭଶ୍ରୀ ସୌମ୍ୟା ସାହୁ (ଟିକି)

"Most of us get washed away like
foot prints on the sands of time
but a few leave their mark behind
a crevice or rook that remains
untouched by the waves."

ବାପା ! ସମୟର ବାଲୁକାଶଯ୍ୟାରେ କେତେ ପାଦଚିହ୍ନ ପଡ଼ିଛି ଏବଂ ଲିଭିଛି, କିନ୍ତୁ ଆମ ସ୍ମୃତିର ବେଳାଭୂମିରେ ତୁମ ପଦଚିହ୍ନ ସେଇମିତି ଅମ୍ଳାନ ଓ ଅମଳିନ ହୋଇ ରହିଥିବ ନିରବଧି କାଳ । ତୁମେ ଥିଲ ସ୍ୱଚ୍ଛନୀର । ନଈ; ସେଇ ନଈର ତୁଠରେ ଆମେ ସବୁ ନିଜକୁ ଧୋଇ ମାଜି ସଫା ସୁନ୍ଦର ଓ ଚିକ୍କଣ କରୁଥିଲୁ । ଆମ ମନର ଯାବତ ମଇଳାକୁ ତୁମେ ତୁମ ଉଦାର ପଣରେ ମାଜିମୁଜି ଦେଇ ସଫା କରିଦେବା ପାଇଁ ସତେ ଯେମିତି ଜୀବନ ବ୍ୟାପୀ ପଣ କରିଥିଲ, ସେଥିପାଇଁ ସାଧନାରତ ଥିଲ । କିନ୍ତୁ ମୁଁ ଅପଦାର୍ଥ ତୁମ ମନ, ତୁମ ଚିନ୍ତା, ତୁମ ଚେତନା, ତୁମ ସାଧନା, ତୁମ ଯୁକ୍ତି ଓ ନିଷ୍ଠାକୁ କେତେ ବା ବୁଝିଥିଲି ଅବା ବୁଝିବାକୁ ଚେଷ୍ଟା କରିଥିଲି ? ସେ ପ୍ରଶ୍ନ ଏବେ ଏକାନ୍ତରେ ନିଜକୁ ପଚାରି ବସିଲେ ମୋତେ ଆହତ ହେବାକୁ ପଡ଼େ ଦୁଃଖରେ, ଅନୁଶୋଚନାରେ, ଗ୍ଲାନି ଓ ଅବସାଦରେ । ବାପା ! ତୁମେ ଥିଲାବେଳେ ତୁମେ ଆମ ପାଇଁ କେତେ ମୂଲ୍ୟବାନ ଥିଲ ସେ କଥାର ହିସାବ କରିବାର ଅବସର କେହି କେବେ ପାଇ ନଥିଲୁ । କିନ୍ତୁ ଆଜି ତୁମ ଅନୁପସ୍ଥିତି ପ୍ରତି ପଦଘାତରେ ଆମକୁ ସୂଚେଇ ଦେଇଯାଉଛି ତୁମ ଅମୂଲ୍ୟ ପଣିଆକୁ ।

ତୁମେ ସମ୍ପୂର୍ଣ୍ଣ ଜୀବନଟେ ଜୀଇଁବା ପାଇଁ ଚାହିଁଥିଲ ବାପା ! ଆମମାନଙ୍କ ପାଇଁ, ଅନ୍ୟମାନଙ୍କ ପାଇଁ, ପୁଣି ସମାଜ ପାଇଁ ଆହୁରି ଅନେକ କିଛି କରିବାକୁ । ଜୀବନର ଅର୍ଦ୍ଧାଧିକ କାଳ ଦୁଃଖ କଷ୍ଟ ପାଇପାଇ ଏ ଉତ୍ତର ବୟସରେ ଟିକେ ସୁଖଶାନ୍ତିରେ ନିରାମୟ ଜୀବନର ସ୍ୱାଦ ଉପଲବ୍ଧି କରିବାକୁ ଚାହିଁଥିଲ । କିନ୍ତୁ ନିଷ୍ଠୁର ନିୟତିକୁ ହୁଏତ ଏକଥା ମଂଜୁର ନଥିଲା । ମୃତ୍ୟୁ ଶଯ୍ୟାରେ ପଡ଼ି ରହି ମଧ ବଂଚିବାର ଯେଉଁ ନିଶା ତୁମ ଆଖିରେ ଭରି ରହିଥିଲା, ସେ କଥା ମୁଁ ନିଜ ଆଖିରେ ଦେଖିଛି ଆଉ ଅନୁଭବ କରିଛି ବାପା ! ମାସକ

ପାଇଁ ହେଉପଛେ, ଟିକିଏ ଭଲ ହେଇଗଲେ ତୁମେ ତୁମ କର୍ମକ୍ଷେତ୍ର (ଭୁବନେଶ୍ୱର)କୁ ଫେରିଆସି ଅଧା ରହିଯାଇଥିବା ଅଧୁରା କାମକୁ ସାରିଦେବା ପାଇଁ ସେଇଠି ସୁଦୂର ପୁନେ ସହର ଜାହାଙ୍ଗୀର ହସପିଟାଲର ଶହେ ଛତିଶ ନମ୍ବର ବେଡ଼୍‌ରେ ଶୋଇ ଶୋଇ ଆଖି ଖୋଲି ସ୍ୱପ୍ନ ଦେଖୁଥିଲ । ସେ ସ୍ୱପ୍ନ ତ ତୁମପାଇଁ ସୁଦୂରର ସ୍ୱପ୍ନ ଥିଲା ବାପା, ଯାହା କେବେ ପୂରଣ ହେବାର ଇ ନଥିଲା ।

ତୁମେ ସମଗ୍ର ଜୀବନ ବ୍ୟାପୀ ମୋ ପାଇଁ ଯେଉଁ ଦୁଃଖ ଦହନର ଦାବାଗ୍ନି ଭିତରେ ନିଜକୁ ଜାଳିଥିଲ, ତିଳତିଳ କରି ସାରିଥିଲ, କେବଳ ମୋ ଚଲାପଥକୁ ଆଲୋକିତ କରିବା ପାଇଁ ନିଜେ ଦୀପ ହେଇ ଜଳିଥିଲ, ସେ କଥା ମୁଁ ମୃତ୍ୟୁ ପର୍ଯ୍ୟନ୍ତ ମଧ ଭୁଲିପାରିବିନି ବାପା ! କିନ୍ତୁ ତୁମ ଅବଦାନର ପ୍ରତିଦାନରେ ମୁଁ ତୁମକୁ କିଛି ଦେଇପାରିଲିନି, ତୁମ ପାଇଁ କିଛି କରିପାରିଲିନି, ତୁମର କୌଣସି ଇଚ୍ଛାକୁ ପୂରଣ କରିପାରିଲିନି । ଏତିକି ଦୁଃଖ ମୋ ମରମତଳର ଗହନ ଗୋପନ ଯନ୍ତ୍ରଣା ହୋଇ ଚିରକାଳ ମୋତେ ଜାଳିବ । ଏ ଜନ୍ମରେ ତୁମ ଅଧୁରା ସ୍ନେହକୁ ଗଣ୍ଠିଧନ କରି ସାଇତି ରଖିଲି ଆର ଜନ୍ମରେ ତୁମକୁ ପୁଣି ଏଇ ରୂପରେ ପାଇ ସବୁଯାକ ସ୍ନେହ ସାଉଁଟି ନେବାକୁ । ଆଜି ତୁମ ମୃତ୍ୟୁ ବାର୍ଷିକୀ ଅବସରରେ ପ୍ରଭୁଙ୍କୁ ଏତିକି ମାଗୁଣି, ଆର ଜନ୍ମରେ ଆମେ ଦୁହେଁ ପୁଣି ଯେମିତି ଏଇ ମର୍ତ୍ତ୍ୟର ପିତା-କନ୍ୟା ରୂପରେ ନୁହେଁ, ପୁତ୍ର ଓ ଜନନୀ ଭାବରେ ଜନ୍ମ ନେବା । ଏ ଜନ୍ମରେ ପରସ୍ପର ପ୍ରତି ବାକି ରହିଯାଇଥିବା କର୍ତ୍ତବ୍ୟକୁ ସଂପୂର୍ଣ୍ଣ କରିବା ପାଇଁ । ଏ ଜନ୍ମରେ ତୁମ ପାଇଁ ମୁଁ ଯାହା କରିପାରି ନାହିଁ, ଆର ଜନ୍ମରେ କରିବାର ସୌଭାଗ୍ୟ ଲଭିବି ତ ! ତୁମେ ସେପୁରରେ ଥାଇ ମୋତେ ଆଶୀର୍ବାଦ କର ବାପା, ତୁମେ ମୋ ପାଇଁ ଦେଖିଥିବା ସ୍ୱପ୍ନ ପୂରା ହେଉ, ତୁମରି ଝିଅ ହୋଇ ତୁମ ସୁନାମ ରଖିବାର ଗୌରବ ମତେ ମିଳୁ ।

ତୁମର ହତଭାଗିନୀ ଟିକିମା' ।



# ମୋ ପ୍ରିୟ ବଡ଼ଭାଇ

## ସୁଧନ୍ୟା ନାଥ (ବଡ଼ ନାତୁଣୀ)

ମୋର ପ୍ରିୟ ବଡ଼ ଭାଇ ପ୍ରଫେସର ଡଃ ବାସୁଦେବ ସାହୁ, ବାଣୀବିହାର ଓଡ଼ିଆ ବିଭାଗର ଏକ ଦେଦୀପ୍ୟମାନ ଦୀପସ୍ତମ୍ଭ । ସେ ଅସରନ୍ତି ଜ୍ଞାନର ଗନ୍ତାଘର । ଓଡ଼ିଆ ସାହିତ୍ୟର ଜଣେ ସ୍ୱନାମଧନ୍ୟ ସାହିତ୍ୟିକ, କିନ୍ତୁ ମୋ ପାଖରେ ସେ ଜଣେ ଭାରି ସାଧାସିଧା ଭାଇଟିଏ । କଥାରେ, ଖାଇବାରେ, ପିନ୍ଧିବାରେ, ଚଳଣିରେ ଅତି ସାଧାସିଧା ଏଇ ମଣିଷ ଜଣକ ଯେ ଅନେକ କ୍ଷେତ୍ରରେ ଅନନ୍ୟ ଓ ଅସାଧାରଣ ଯେକେହି ତାଙ୍କ ସଂସ୍ପର୍ଶରେ ଆସିଛନ୍ତି କହିବେ ।

ଆମେ ଦୁଇଝିଅ ବୋଲି ବାପା ମା' କେବେ କେବେ ମନକଷ୍ଟ କଲେ ଭାଇ (ଅଜା) ମୋ ବାପା ମା'ଙ୍କୁ ବୁଝାଇ କହନ୍ତି-''ମୁଁ ପରା ତୁମ ଦୁହିଁଙ୍କର ବଡ଼ ପୁଅ, ଆଉ ଏମାନେ ମୋର ସାନ ଭାଇ ।'' ମୁଁ ହେତୁ ପାଇଲା ଦିନରୁ ଜାଣିଛି ଆମେ ତିନି ଭାଇଭଉଣୀ । ଅଜାଙ୍କୁ ଅଜା ବୋଲି ଡାକିଲେ ଶୁଣନ୍ତିନି, ଅଭିମାନ କରନ୍ତି । ତେଣୁ ସେ ମୋ ଦୃଷ୍ଟିରେ ବଡ଼ଭାଇ ।

ଭାଇଙ୍କ ସହ ମୋର ସଂପର୍କ ୧୨ ବର୍ଷର । ମା' ଦୂରରେ ଚାକିରୀ କଲାବେଳେ ଭାଇ ଓ ଆଇ ପାଖରେ ମୁଁ ସାତ ବର୍ଷ କଟାଇଥିଲି । ମା' ବାପାମାଙ୍କ ସହ ସିରିପୁରରେ ରହୁଥିଲେ ମଧ୍ୟ କେବେ ବି ଭାବି ପାରିନି ଯେ ଭାଇଠୁ ଦୂରେଇକି ରହିଛି ବୋଲି । କାରଣ ପ୍ରତ୍ୟେକ ଦିନ ସଂଧ୍ୟାବେଳେ ଆମେ ଭାଇଙ୍କ ପାଖକୁ ଯାଉ, ଭାଇଙ୍କଠାରୁ ପାଠ ବୁଝୁ, ସାଙ୍ଗ ହୋଇ ଟିଭି ଦେଖୁ ଓ ଏକାଠି ଖିଆପିଆ କରି ଫେରିଆସୁ । ପୁଣି ପ୍ରତ୍ୟେକ ଶନିବାରେ ଯାଇ ଭାଇଙ୍କ ପାଖରେ ରହିଯାଉ ଓ ରବିବାର ରାତିରେ ଆସୁ । ରାତିରେ ଭାଇଙ୍କ ବାମ ପାଖରେ ମୁଁ ଶୋଇ ତାଙ୍କ ଉପରେ ଗୋଡ଼ ହାତ ଲଦିଦିଏ । ମୁଁ ଗଡ଼ପଡ଼ ହେଲେ ଗୁଣୁଗୁଣୁ ଗୀତ ଗାଇ ତାଙ୍କର କଅଁଳ ସ୍ପର୍ଶରେ ମୋ ବାଳକୁ ସାଉଁଳାନ୍ତି ଯେ ସାଙ୍ଗେ ସାଙ୍ଗେ ମୋତେ ନିଦ ହୋଇଯାଏ ।

ଭାଇ ମୋର ସ୍ୱାସ୍ଥ୍ୟ ଭଲ ରହିବା ପାଇଁ ମୋତେ ସକାଳ ୬ଟାରେ ଉଠାଇ ଯୋଗ ଓ ବ୍ୟାୟାମ ଶିଖାନ୍ତି । ବୁଦ୍ଧିର ବିକାଶ ପାଇଁ ସବୁ ବିଷୟର ପାଠ ପଢ଼ାନ୍ତି । ବିଶେଷ କରି ଓଡ଼ିଆ ଓ ଇଂରାଜୀ ପ୍ରତି ଧ୍ୟାନ ଦିଅନ୍ତି । ଭାଇ ଏମିତି ପଢ଼ାଉଥିଲେ ଯେ ଦ୍ୱିତୀୟଥର ଆଉ

ବହି ଖୋଲିବାର ଦରକାର ନଥିଲା । ସବୁ ମୋ ମସ୍ତିଷ କମ୍ପ୍ୟୁଟରରେ ଲିପିବଦ୍ଧ ହୋଇଯାଉଥିଲା । ଯେତେ ଦେହ ଖରାପ ଥିଲେ ମଧ ସେ ସବୁବେଳେ ଚୌକି ଉପରେ ବସି କ'ଣ ନା କ'ଣ ଲେଖନ୍ତି, ନହେଲେ ମା'କୁ ଓ ମୋତେ ପଢ଼ାନ୍ତି । ଟିକିଏ ଫୁରସତ୍ ପାଇଲେ ଆମ ଦୁଇ ଭଉଣୀଙ୍କୁ କାନ୍ଧରେ ବସାଇ ନାଚନ୍ତି ।

ଭାଇଙ୍କର ପ୍ରତ୍ୟେକ ନୀତି, ଉପଦେଶ ଓ ଉତ୍ସାହର ବାଣୀକୁ ସ୍ମରଣ କରି କାର୍ଯ୍ୟ କରିବା ପାଇଁ ଯେତେ ଚେଷ୍ଟା କଲେ ବି, ବିଶ୍ୱାସ କରିପାରୁନି ଯେ ଭାଇ ତାଙ୍କର ସୁଧୁନ୍, ସୁପୁନ୍ ଓ ସାତ୍ତ୍ୱିକ ତିନି କୁନି କୁନି ଭାଇଙ୍କୁ ଛାଡ଼ିଦେଇ କିପରି ନିଶ୍ଚିତରେ ସୁଦୂର ପୁନା ସହରରେ ଶୋଇଯାଇଛନ୍ତି । ମୋର ମନ୍‌ଡ଼େ ଟେଷ୍ଟ ଥିବା ହେତୁ ମୁଁ ପୁନା ଯାଇପାରି ନଥିଲି କି ଭାଇଙ୍କୁ ଶେଷ ଦର୍ଶନ କରିପାରି ନଥିଲି । ତେଣୁ ମୋତେ ଲାଗୁଛି ମୋର ଭାଇ ମୋ ପାଖେ ପାଖେ ଘୂରି ବୁଲୁଛନ୍ତି ଓ ମୋତେ ପ୍ରତ୍ୟେକ ମୁହୂର୍ତ୍ତରେ ଭଲ ଡାକ୍ତରାଣୀଟିଏ ହେବା ପାଇଁ ପରାମର୍ଶ ଦେଉଛନ୍ତି । କିନ୍ତୁ ଅନୁଭବ କରୁଛି ଏବେ କିଏ ମୋର ଶରୀରର ଉନ୍ନତି ପାଇଁ ବିଶେଷ ତତ୍ପରଶୀଳ ହୋଇ ମୋତେ ଫୋନ୍ ମାଧ୍ୟମରେ ସକାଳ ୬ଟାରେ ଉଠାଇବ ! କିଏ ମୋତେ ପାଠ ପଢ଼ିବା ପାଇଁ ଉତ୍ସାହ ଓ ପ୍ରେରଣା ଭରିଦେବ !

ଗତ ପାଞ୍ଚବର୍ଷ ହେଲା ମା'ଠାରୁ ଭାଇଙ୍କର ଦେହ ଖରାପ କଥା ଶୁଣି ଭାଇଙ୍କୁ ଠିକ୍ ସମୟରେ ଔଷଧ ଦେବା କାର୍ଯ୍ୟଟି ମୁଁ କରିଆସୁଥିଲି । ଭାଇଙ୍କୁ ଔଷଧ ଦେବା ପାଇଁ ଆମ ଦୁଇ ଭଉଣୀ ମଧ୍ୟରେ ବେଳେବେଳେ ଟଣାଓଟରା ମଧ ଲାଗିଯାଉ । ଯେଉଁଦିନ ଆମେ ଅଜାଙ୍କ ପାଖକୁ ଯାଇନପାରୁ ସେଦିନ ଫୋନ୍‌ରେ ଔଷଧ ଖାଇବା ପାଇଁ ସୂଚେଇ ଦେଉଥିଲୁ । ତାଙ୍କର ପ୍ରତ୍ୟେକ ଔଷଧର ନାମ ମୋର ମୁଖସ୍ତ ଥିଲା । ମୋ ବଡ଼ଭାଇଙ୍କର ବିରାଟ ଆଶା ଥିଲା ମୋତେ ଡାକ୍ତରାଣୀ ରୂପରେ ଦେଖିବା ପାଇଁ । ତେଣୁ ମୋର ପାଠ ପଢ଼ାପଢ଼ି ପ୍ରତି ଯତ୍ନଶୀଳ ଥିବା ସଂଗେସଂଗେ ମୋତେ ବିନୟୀ ଓ ସହିଷ୍ଣୁ ହେବା ପାଇଁ ବହୁ ଗଳ୍ପ ମାଧ୍ୟମରେ ନୀତି ଉପଦେଶ ଦେଉଥିଲେ ।

ମୁଁ ମା'କୁ କୌଣସି କାରଣରୁ ଜବାବ୍ ଦେଲେ, ବଡ଼ଭାଇ କହନ୍ତି- ''ସୁଧୁନ୍ ! ଜ୍ୟୋତିଷମାନେ କହୁଛନ୍ତି- ମୁଁ ପୂର୍ବଜନ୍ମରେ ଗୁରୁଙ୍କୁ ଜ୍ଞାନରେ ପରାସ୍ତ କରିଥିବାରୁ ତାଙ୍କର ଅଭିଶାପ ପାଇ ଏଇ ଜନ୍ମର ବହୁ ବାଧାବିଘ୍ନର ସମ୍ମୁଖୀନ ହେଉଛି । ତୁ କେବେ କାହା ମନରେ କଷ୍ଟ ଦେବୁନି । ସମସ୍ତଙ୍କୁ ବିନୟ ବଚନ କହିବୁ । ତୋ ''ସୁଧନ୍ୟା'' ନାମର ସାର୍ଥକ କରିବୁ ।''

ମୋ ପ୍ରିୟ ବଡ଼ଭାଇ ଆଉ ନାହାନ୍ତି । ଏହାହିଁ ନିଷ୍ଠୁର ସତ୍ୟ । କିନ୍ତୁ ମୋ ଭାଇ ମୋର- ସେବେ ଥିଲେ, ଆଜି ଅଛନ୍ତି-ଏମିତି ମୋ ପାଇଁ ଚେତନାର ଅତି ଲୋଭନୀୟ ସଂବିତ୍‌ଟିଏ ହୋଇ ରହିଥିବେ ଯୁଗଯୁଗ ପାଇଁ ।

# ହେ ପିତା ! ତୁମେ ଆସୁଥାଅ ସ୍ୱପ୍ନରେ

ସଂବିତ୍ କୁମାର ସାହୁ(ପୁଅ)

ହେ ପିତା ! ମୋର ପରମାରାଧ ! ଦିବ୍ୟ ଆତ୍ମା ତୁମର ଅମୃତର ଚିରନ୍ତନ ସ୍ରୋତରେ କ୍ରୀଡ଼ା କରୁଛି ! ଏ ମୃତ୍ୟୁମୟ ମର୍ତ୍ତ୍ୟରେ ବେଶୀଦିନ ରହି ସମ୍ଭାବ୍ୟ ଯନ୍ତ୍ରଣାରେ ଘାଣ୍ଟି ହୋଇଥାନ୍ତେ କାହିଁକି ? କାହାରି ସେବା ପାଇବାବେଳେ ଅନୁଗ୍ରହ ପାଉଥିବାର ଶୋଚନାରେ ସଢ଼ିଥାନ୍ତ କାହିଁକି ? ଚିରକାଳ ଅନ୍ୟମାନଙ୍କୁ 'ଆହା' ପଦ ଶୁଣାଇଛ । କାହାରିଠାରୁ କାହିଁକି 'ଆହା' ପଦ ଶୁଣିଥାନ୍ତ ରୋଗ ବାଧିକାରେ ପଡ଼ିପଡ଼ି । ଦିବ୍ୟଧାମରେ ଦେବତା ଗହଣରେ କେଡ଼େ ଖୁସିରେ ଅଛ ! ବେଳେବେଳେ ଅଦେହରେ ଓହ୍ଲାଇ ଆସୁଛ ଏ ଅଭାଗା ପୁଅ ପାଇଁ । ସ୍ୱପ୍ନରେ ସଂପୂର୍ଣ୍ଣ କବଳିତ କରିଦେଉଛ ଏଇ ପୁତ୍ରହରା ବାପାର ନିଖିଳ ଚେତନାରେ । ଗେଟ୍ ପାଖରୁ ଡାକୁଛ-"ବାପା ...ରେ ! ଜୀବନ ମୋର ।" ତମେ ଏଇଭଳି ଆସୁଥାଅ । ସ୍ୱପ୍ନରେ ହେଉପଛେ ମୁଁ ତୁମକୁ ଦେଖୁଥାଏ । ତୁମର ଶ୍ରୀ ତୁଣ୍ଡରୁ ଅମୃତବାଣୀ ଶୁଣୁଥାଏଁ ।

ମୁଁ ଜାଣେନା, ତମେ ଦେଇଥିବା ଜୀବନର ମନ୍ତ୍ରକୁ ମୁଁ କେତେଦୂର ସାକାର କରିବି ! ତମେ ଅମୃତର ଅନନ୍ତ ଉତ୍ସ, ପ୍ରଜ୍ଞାର ପ୍ରକାଣ୍ଡ ପାହାଡ଼, ମାନବିକତାର ମହାନ୍ ମହୋଦଧି, ସୌଜନ୍ୟର ସୁବିସ୍ତୀର୍ଣ୍ଣ ସୈକତ ! ତମେ ଅତୀତ ମାତ୍ର ତମର ସ୍ମୃତି ମୋ ହୃଦୟରେ ଜୀବନ୍ତ ଆଜିପାଇଁ, କାଲିପାଇଁ ଓ ସବୁଦିନ ପାଇଁ ।



# ଅଜା ଭାଇ

## ସୁପୁନ୍ (ସାନ ନାତୁଣୀ)

ଅଜାଭାଇ ! ତୁମେ ମୋତେ ଛାଡ଼ି କେଉଁଠାକୁ ଚାଲିଗଲ ? ମୁଁ ତ ଥିଲି ତମର ସବୁଠୁ ଅଝଟିଆ କାନ୍ଦୁରୀ ନାତୁଣିଟିଏ । ତମେ ମୋତେ ଗୀତ ଗାଇ, ଚନ୍ଧ କରି ନଚେଇ ବୋଧ କରୁଥିଲ । ଏବେ ତୁମେ କେଉଁଠି ଅଛ ? ଶୀଘ୍ର ମୋ' ପାଖକୁ ଆସ । ମୁଁ ଆଉ ଦୁଷ୍ଟାମୀ କରିବିନି ।

ମୋ ଗୀତ ଶୁଣିଶୁଣି ମୋ ପାଖରେ ନିଦରେ ଶୋଇପଡୁଥିଲ ! ଏବେ ରାତି ହେଲେ କେମିତି ଏକୁଟିଆ ଶୋଉଚ । ନାନୀ କହୁଚି- ''ତୁ ଦୁଷ୍ଟାମୀ କରିବାରୁ ଅଜା ଭାଇ ରାଗିକି ଛାଡ଼ି ପଳାଇଗଲେ । ଆଉ କେବେ ଆମ ପାଖକୁ ଆସିବେନି ।'' ସତରେ କ'ଣ ଭାଇ ଆଉ ଆସିବନି ! ମୋର ବିଶ୍ୱାସ ତୁମେ ମୋ ଉପରେ କେବେ ବି ରାଗି ନଥିବ । ତୁମେ ନିଶ୍ଚୟ ଆସିବ । ରହୁଛି ତମ ଅପେକ୍ଷାରେ । ଇତି

ତୁମର ଗେହ୍ଲା ନାତୁଣୀ



# ସ୍ମୃତି-ପୁଷ୍ପ

**ଡକ୍ଟର ଗଙ୍ଗାଧର ବଳ**

ବାସୁଦେବ ଚାଲିଗଲା ମରାଠା ମଣ୍ଡଳେ
ଦୀର୍ଘକାଳ ଭୋଗି ଭୋଗି ରୋଗର ଯନ୍ତ୍ରଣା ।
ଓଡ଼ଗାଆଁ ରଘୁନାଥ ଅଞ୍ଚଳ ସୁରଭି
ବିସ୍ତାରୁଥିଲା କାନନ, ଶିଖରୀ ଶିଖରେ ।
ସେ ତ ନୁହେଁ ଦ୍ୱାପରର ବସୁଦେବ-ସୁତ,
କିନ୍ତୁ ନାମ ବହେ ପୌରାଣିକୀ ବାସୁଦେବ ।
ଅଗଣିତ ଛାତ୍ରଗଣେ ବାସୁଦେବ ଭିନ୍ନ,
ସଦା ଅବନତ ଗୁରୁ ଗୁର୍ବୀଙ୍କ ପୟରେ ।
ବହୁ ଗ୍ରନ୍ଥ ଅଧ୍ୟୟନେ ଥିଲା ରୁଚି ତାର,
ଅଭିମାନ ସେଥିପାଇଁ ନଥିଲା ତା' ପ୍ରାଣେ;
କୃତଜ୍ଞତା ଭାରେ ଅବନତ ଥିଲା ସଦା
ଫଳଭାରେ ଅବନତ ଯଥା ତରୁ ରାଜି ।
ଅଧ୍ୟୟନ, ଅଧ୍ୟାପନା ଥିଲା ବ୍ରତ ତା'ର
ଶିଷ୍ୟ-ହୃଦେ କାଟିଥିଲା ରେଖା ଚିରନ୍ତନୀ ।
ଜଗନ୍ନାଥେ ମତି (ଭକ୍ତି) ତା'ର ଥିଲା ଅବିଚଳ।
ପୂତ ପଦ ପ୍ରାନ୍ତେ ସମର୍ପି ସାଧନା-ସୁମନ,
'ଓଡ଼ିଆ ସାହିତ୍ୟେ ଶ୍ରୀ ଜଗନ୍ନାଥ ଚେତନା'
ଛାତ୍ର, ଭକ୍ତଙ୍କର ସେତ ହୃଦୟର-ହାର ।
ରସବିଦ୍, ଭାଷାବିଦ୍ ନାମେ ବାସୁଦେବ
ନମସ୍ୟ ତୁମେ ହେ ଚିର ଶିଷ୍ୟର ଅନ୍ତରେ ।
ମର୍ତ୍ତ୍ୟଲୀଳା ତେଜି ବାସୁ ଗଲ ଚାଲି ଧୀରେ,
ନ ଦେଖିବି ଆଉ ତୁମ ସ୍ମିତ-ସ୍ନିଗ୍ଧ-ମୁଖ ।
ଶାନ୍ତି ଲଭୁ ଆତ୍ମା ତୁମ ସେଇ ଦିବ୍ୟ ଲୋକେ,
ପରମାତ୍ମା ପଦ ପ୍ରାନ୍ତେ ଏତିକି ପ୍ରାର୍ଥନା ।

ଗାୟତ୍ରୀ କୃପା, ନୀଳାଦ୍ରିବିହାର
ନୟାବଜାର, କଟକ-୪

# ମୁଁ ସ୍ୱର୍ଗରୁ କହୁଛି

ଗନ୍ଧର୍ବ ଚରଣ ବେହେରା

ହେ ମୋର ପ୍ରିୟ ସନ୍ତାନଗଣ !
ହୁଅ କିମ୍ବା ଆନମନା
ମୋ ବିଚ୍ଛେଦ ହୃଦୟେ ସୁମରି,
ଶାଶ୍ୱତ ଡୋରୀରେ ବନ୍ଧା
ଆମର ଏ ସମ୍ପର୍କର ଅତୁଟ ବନ୍ଧନ୍
କାଳ ଯାହା ନ ପାରେ ତୁଟାଇ
ଅଛି କେଉଁ ଶକ୍ତି ଅବା ସମଗ୍ର ବିଶ୍ୱରେ
ପୂର୍ଣ୍ଣଚ୍ଛେଦ ଟାଣିଦେବ ଅଚ୍ଛେଦ୍ୟ ରଜ୍ଜୁରେ ?

ମିଳନ ବିଚ୍ଛେଦ ଯେଣୁ ବିଧିର ବିଧାନ,
ସମୟ ତା' ପୂର୍ବ ନିର୍ଦ୍ଧାରିତ,
ହର୍ଷ ଓ ବିଷାଦ
ସେହି ନିର୍ଘଣ୍ଟର ଖାଲି ଘଟଣା ପ୍ରବାହ;
ଉଦ୍‌ବିଗ୍ନତା କାମ୍ୟ ନୁହେଁ, କାମ୍ୟ ଉଦାରତା,
ଚିରନ୍ତନ ସତ୍ୟ ହେତୁ ନୁହଁ ବିଚଳିତ ।

କାମନା ବାସନା ସବୁ ଜୀବର ବିକାର
ଆସକ୍ତି ଓ ଉଦ୍‌ବେଗ ତ ତାର ବିଷଫଳ
ଶରୀର ରଥେ ଆରୁଢ଼ ନିର୍ଲିପ୍ତ ଏ ଆତ୍ମା
ତା' ସହ ଜଡ଼ିତ ଓ ଅନୁବନ୍ଧିତ ଥିଲା
କେବଳ କର୍ମ ଓ ପ୍ରଗତି ପାଇଁ, ଲୀଳା ପାଇଁ,
ଯେ ପର୍ଯ୍ୟନ୍ତ ଥିଲା ତାହା କର୍ମ ଉପଯୋଗୀ ।

କିନ୍ତୁ, ଭଗ୍ନ ଆଉ ବିଦୀର୍ଣ୍ଣ ରଥରେ
ଆରୋହଣ କି ସୁଖର ? ଅବା କି କାର୍ଯ୍ୟର ?
ମୃତ୍ୟୁ ! ମହାନିଦ୍ରା !!
ନୁହେଁ କେଭେ ଭୟର କାରଣ ।

କେତେ ମନୋହର ତା' ସାଦର ସମ୍ଭାଷଣ !
କେଡ଼େ ଆକର୍ଷଣୀୟ ତା' ଆବାହନୀ ପଟୁଆର !
ଅପୂର୍ବ ତା' ଆଲୋକ ସମ୍ଭାର ।
ସ୍ୱାଗତିକା ସଂଗୀତର ମୂର୍ଚ୍ଛନା ଅନନ୍ୟ,
ଉପେକ୍ଷା କରିବା ନୁହେଁ ସମ୍ଭବ ବ୍ୟାପାର ।

ନା, ନା, ଅସମ୍ଭବ...
ପ୍ରଲୁବ୍ଧ ମୁଁ ସମ୍ମୋହିତ, ଛାଡ଼ି ଭଗ୍ନ ରଥ
ତା ସୁରମ୍ୟ ସୁଶୋଭିତ ଦିବ୍ୟ ରଥପରେ
ନିଃଶଙ୍କାରେ କଲି ଆରୋହଣ,
ସୁଶୀତଳ କରସ୍ପର୍ଶେ ତାର
କି ଅପୂର୍ବ ସିହରଣ ଆହା,
ଭରିଯାଏ ମର୍ମେ ମର୍ମେ ମୋର,
ଆଶ୍ଚର୍ଯ୍ୟ, ଆନନ୍ଦମୟ, ଉଦ୍‌ଫୁଲ୍ଲିତ, ପୁଲକିତ,
ପ୍ରକାଶ ତା' ଅସମ୍ଭବ
ସେଥିପାଇଁ ଲୋଡ଼ା ଏକ ନୂତନ ଭାଷାର !

ଏ ରାଇଜେ ମୁଁ ସ୍ୱୟଂ ସମ୍ପୂର୍ଣ୍ଣ,
ନାହିଁ ଏଠି କିଛି ବି ନ'କାର
ଲୋଡ଼ା ନାହିଁ ଐଶ୍ୱର୍ଯ୍ୟ, ବିଭବ
ସବୁ ପରିପୂର୍ଣ୍ଣ ଯେଣୁ କିବା ଲୋଡ଼ା ଆଉ ଅଧିକାର ?
ଏଠି ଖାଲି ପୂର୍ଣ୍ଣ ଆଉ ପୂର୍ଣ୍ଣ
ପୂର୍ଣ୍ଣରୁ ପୂର୍ଣ୍ଣର ବିୟୋଗରେ ବି ସମ୍ପୂର୍ଣ୍ଣ ।

ହେ ପ୍ରାଣପ୍ରିୟା ପତ୍ନୀମୋର !
ମୂର୍ତ୍ତିମନ୍ତ ପ୍ରତୀକ ନିଃସ୍ୱାର୍ଥ ସେବାର !
ମୋ ଭାବନାରେ କେବେ ନ ହୁଅ ଚିନ୍ତିତା;
ମୋ ଅଖଣ୍ଡ ନିସ୍ପନ୍ଦ ଅମୃତ ପ୍ରବାହରେ
ତୁମ ଚିନ୍ତା ସୃଷ୍ଟି କରେ
ଅଲୋଡ଼ା ସ୍ପନ୍ଦନ ଆଉ ତରଙ୍ଗ ସ୍ୱାର୍ଥର ।
ହେ ମୋର ଧରାବାସୀ ବନ୍ଧୁବର୍ଗ ଆତ୍ମୀୟ ସୋଦର !

ସଖ୍ୟ, ଆତ୍ମୀୟତା
ନ ହୁଏ ବିଲୀନ ମରଦେହ ବିଲୟରେ;
ବନ୍ଧୁତା ଅମର,
ଆତ୍ମା ସହ ଆତ୍ମାର ସମ୍ପର୍କ
ଭୁଲିବ କେମିତି ।
ତଥାପି..., ନ ହୁଅ ବ୍ୟଥିତ ବନ୍ଧୁ !
ଘୋଷଣା ମୁଁ କରଇ ସ୍ୱର୍ଗରୁ
ମୁକ୍ତ ଆଉ ନିର୍ଲିପ୍ତ କଣ୍ଠରେ ।



# ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

## ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)

ଜନମ ମରଣ ସତ୍ୟ ଚିରନ୍ତନ
ସୃଷ୍ଟି, ସ୍ଥିତି, ଲୟ ସମ
ସମୟର ଚକ୍ର ଘୂରୁଛି ନିରତ
ବିଚିତ୍ରବିଧି ନିୟମ । ୧

ଅନେକ ଜନ୍ମର ପୂଣ୍ୟ ଫଳେ ଜୀବ
ମାନବ ଜନ୍ମ ଲଭେ
ପୂର୍ବ ଜନ୍ମାର୍ଜିତ କୃତ କର୍ମଫଳ
ଭୋଗ କରେ ଏହି ଭାବେ । ୨

ଅଭିନୟ ମଞ୍ଚ ଅଟେ ଏ ଜଗତ
ଅଭିନେତା ଅଟେ ଜୀବ
ସାରି ନିଜ ନିଜ ଅଭିନୟ ସର୍ବେ
ଫେରିଯାନ୍ତି ପୂର୍ବ ଠାବ । ୩

ଫେରନ୍ତି ସରବେ କାଳ ବଳେ ଦିନେ
ତଥାପି ମଣିଷ ଝୁରେ
ସ୍ନେହ, ମମତା ଓ ମୋହ, ମାୟା ଭୁଲି
ନପାରି ବିକଳ ସୁରେ । ୪

ଅତୀବ ଗରିବ ପରିବାରେ ଜନ୍ମ
କଠୋର ସାଧନା ଫଳେ
ଉଚ୍ଚଶିକ୍ଷା ଲଭି ଉଚ୍ଚ ଆସନରେ
ବସିଥିଲ ଭାଗ୍ୟବଳେ । ୫

ଭାଷାତତ୍ତ୍ୱବିଦ୍ ରୂପେ ଉତ୍କଳର
ସର୍ବଶ୍ରେଷ୍ଠ ସମ୍ମାନରେ
ବାଣୀବିହାରର ଓଡ଼ିଆ ବିଭାଗେ
ଥିଲ ମୁଖ୍ୟ ଆସନରେ । ୬

ଶତଶତ ଶିକ୍ଷା ନବୀଣ ଗଢ଼ିଛ
ଜୀବନେ ସୁଶିକ୍ଷା ଦେଇ
ଅତୀବ ସରଳ ନିରାଡ଼ମ୍ବର
ଜୀବନ ଅଛି ବିତାଇ । ୭

ଅଫେରା ରାଇଜେ ଚାଲିଗଲା ସିନା
"ବାସୁଭାଇ" ଛାଡ଼ି ତୁମେ
ତୁମ ସ୍ମୃତି ସଦା ମାନସ ପଟରେ
ଅମ୍ଳାନ ରଖିବୁ ଆମେ । ୮

ପ୍ରଥମ ବାର୍ଷିକ ସ୍ମୃତି ସ୍ମାରକୀର
ଶ୍ରାଦ୍ଧ ଦିବସରେ ଆଜି
ଆତ୍ମାର ସଦ୍‌ଗତି ପାଇଁକି ପ୍ରାର୍ଥନା
ନୟନୁ ନିର ବରଷି । ୯

ପ୍ରଭୁ ଦୟାମୟ ହୁଅନ୍ତୁ ସହାୟ
ତୁମ ପରିବାର ଜନେ
ଅନୁଗାମୀ ହୋଇ ତୁମ ଆଦର୍ଶରେ
ଯଶ ଲଭନ୍ତୁ ଜୀବନେ । ୧୦



ବାଣୀ ନିକେତନ
ଓଡ଼ଗାଁ, ନୟାଗଡ଼

# ଲୋତକ ଅର୍ଘ୍ୟନିଅ

ପ୍ରଫୁଲ୍ଲ ମାଝି

ନାଚୁଥିଲା ଯେବେ ଉନ୍ମତ୍ତା ହୋଇ ଧରାରେ ବରଷା ରାଣୀ
ଚାଲିଗଲ ତୁମେ ଦୂରେ ବହୁଦୂରେ ବେଦନାର ରେଖାଟାଣି
ବାହୁଡ଼ା ବିଜୟ ରଚିଲ କିପରି ଅବେଳରେ କୁହ କୁହ
ଭରିଦେଇ ଗଲ ସବୁରି ଆଖିରେ ଦୁଃଖର ଅସରା ଲୁହ ।

ଶିବାଜୀର ମାଟି ସୁଦୂର ମରାଠା ପୁନାରେ ଜଳିଲା ଜୁଇ
ସତେ ଅବା କାଳ ଚାହିଁ ରହିଥିଲା ନେବାକୁ ମଶାଣି ଭୂଇଁ ।
ମନେପଡ଼ିଯାଏ ହଜିଲା ଦିନର ଯେତେ ମଧୁମୟ ସ୍ମୃତି
କବିତା ଆସର, ବାଣୀଆଲୋଚନା ଜୀବନର ଅନୁଭୂତି ।

ଦେବ ପୁରୁଷ ହେ ! ବାସୁଦେବ ଥିଲ ଶାନ୍ତ ଶୀତଳ, ଧିର
ଛାତ୍ରବତ୍ସଳ, ଗୁଣ ଅନୁରାଗୀ, କୋମଳ ମହତ ଗୀର ।
କୃଷ୍ଣାବୟବ ଦୀର୍ଘମଣିଷ ବାଗ୍ମୀ ବିବେକବାନ
ମୁଖ ମଣ୍ଡଳରୁ ବାରି ହେଉଥିଲା ମହତ ଲକ୍ଷଣମାନ ।

ବାଣୀବଗିଚାର କୁସୁମ ତୁମେତ ଅମଳିନ ବାସ ଭରା
ବାଣୀବିହାରରେ ତୁମ ପଦଚିହ୍ନ ଏବେ ବି ଝଟକେ ପରା ।
ପୁଣ୍ୟ ପ୍ରାଣ ବୋଲି ଈଶ୍ୱରଅବା ନେଲେକି ସାଦରେ ଡାକି
ଚଲାପଥ କାହିଁ ନଥିଲାତ ସରି, ଥିଲାତ ଅନେକ ବାକି ।

ଆସିବା, ଯିବା ତ ଲାଗିଅଛି ଭବେ ନିୟତିର ଏଇ ଖେଳ
ସେଇପଥେ ଦିନେ ସଭିଏଁ ଚଳିବେ ଯେବେ ଆସିବ ଯାଏ ବେଳ ।
କିଏ ବା ରହିବ ବିଶ୍ୱ ବୁକୁରେ ରୋଧିବ କାଳର ଗତି
କାଳପାଶ ଧରି ନିଷ୍ଠୁର ହସ ହସୁଅଛି ପ୍ରେତ ପତି ।

ମୃତ୍ୟୁ ଏକା ସତ୍ୟ ଅନିତ୍ୟ ସଂସାରେ ଜୀବ ତ ନିଶ୍ଚୟ ଯିବ
ଅଜର, ଅମର ହୋଇ ଅବା କିଏ ସଂସାରେ ରହିଥିବ ।

ଶଇଶବ, ବାଲ୍ୟ, କୈଶୋର, ଯୌବନ, ପ୍ରୌଢ଼ାଦି ବୟସ ଦେଇ
ଶେଷେ ଲଭିଥାଏ ବାର୍ଦ୍ଧକ୍ୟଦଶା, ଫେରେ କର୍ମଫଳ ନେଇ ।

ମାଟିର ଶରୀର ମାଟିରେ ମିଶିବା ନୁହେଁ ଆଶ୍ଚର୍ଯ୍ୟ କଥା
ମୋହ ଗ୍ରସ୍ତନର ସବୁଜାଣି କିନ୍ତୁ ହୃଦୟେ ପୋଷଇ ବ୍ୟଥା ।
ପ୍ରଜ୍ଞାଶୀଳହେ ବାସୁଦେବ ତୁମ ଭାଷାତତ୍ତ୍ୱର ଜ୍ଞାନ
ତୁମକୁ ରଖିବ ଚିରଦିନ ପାଇଁ ଭବେ କରି ମହିୟାନ ।

ପାର୍ଥିବ ତୁମ କଳେବର ସିନା ନେଇଗଲା କ୍ରୁର କାଳ
ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ୍ ରହିଥିବ କାଳକାଳ ।
ସ୍ୱର୍ଗରେ ଥାଇ ସ୍ୱର୍ଗ ଦୂତ ହେ ଶୁଭାଶିଷ ରାଶି ଦିଅ
ବେଦନା ବିଧୂର ସନ୍ତାନଟିର ଲୋତକ ଅର୍ଘ୍ୟନିଅ ।



ନିଉ କଲୋନୀ, ଶିଖରପୁର
ତଳସାହି, କଟକ-୭୫୩୦୦୩



ମହାଯାତ୍ରାରେ ମହାନାୟକ